# ସେକାଳ, ଏକାଳ, ଅନ୍ୟକାଳ

ଲେଖକ
**ଶ୍ରୀ ଯମେଶ୍ୱର ତ୍ରିପାଠୀ**
ତ୍ରିପାଠୀ ଭବନ, ହସ୍‌ପିଟାଲ ରୋଡ୍‌, ଆଠଗଡ଼ (କଟକ)
ସ୍ୱତ୍ୱାଧିକାରଣୀ
**ଶ୍ରୀମତୀ ତିଳୋତ୍ତମା ତ୍ରିପାଠୀ**

ପ୍ରକାଶକ
**ଶ୍ରୀ ଗୋବିନ୍ଦଚରଣ ପାତ୍ର**
ଓଡ଼ିଶା ବୁକ୍‌ ଷ୍ଟୋର, ବିନୋଦ ବିହାରୀ
କଟକ-୭୫୩୦୦୨

ପ୍ରଥମ ପ୍ରକାଶ—୧୯୭୯

ପ୍ରଚ୍ଛଦ
**ଶ୍ରୀ ଅସୀତ ମୁଖାର୍ଜୀ**

ମୁଦ୍ରଣ :
**ଗୀତାଞ୍ଜଳି ପ୍ରେସ, କଟକ**

ମୂଲ୍ୟ :
ସାଧାରଣ—**ପନ୍ଦର ଟଙ୍କା**
ସୁଶୋଭନ ସଂସ୍କରଣ—**ଅଠର ଟଙ୍କା**
( ସୁଦୃଢ଼ ବନ୍ଧାଇ )

**SEKALA EKALA ANYAKALA**

*Written by :*
**Sri Jameswar Tripathi**
*Published by :*
Sri Govindcharan Patra
**ORISSA BOOK STORE**
Binod Behari, Cuttack-753002

*Printed at :*
**Gatanjali Press**
*Price :*
**Rupees Fifteen** only
Delux **Rupees Eighteen** only



**Education without character**
**Science without humanity**
**Politics without principle**
**And**
**Commerce without morality**
**Are useless and dangerous.**

ବାବା,

ସମଗ୍ର ବିଶ୍ୱ ପ୍ରତି ଆପଣଙ୍କର ମହାନ୍ ବାଣୀକୁ ମୁଁ କେବଳ ଏହି ପୁସ୍ତକରେ କୀର୍ତ୍ତନ କରୁଛି ମାତ୍ର ।

ସାଇ-ଚରଣାଶ୍ରିତ
**ଯମେଶ୍ୱର**



ତ୍ୱାଂ ବିଶୋ ବୃଣତାଂ ରାଜ୍ୟାୟ
ତ୍ୱାମିମାଃ ପ୍ରଦିଶଃ ପଂଚ ଦେବୀଃ ।
ବର୍ଷ୍ମନ୍ ରାଷ୍ଟ୍ରସ୍ୟ କକୁଦି ଶ୍ରୟସ୍ୱ
ତତୋ ନ ଉଗ୍ରୋ ବି ଭଜା ବସୂନି ।

(ଅଥର୍ବ । ପଞ୍ଚପ୍ରଦିଶଃ । ତ୍ରିଷ୍ଟୁପ୍)

—ହେ ଶାସକ ! ତୁମେ ବଳପୂର୍ବକ ଶାସନଗାଦି ଅଧିକାର କରି ନାହଁ ଅଥବା ତୁମର ଅନିଚ୍ଛା ସତ୍ତ୍ୱେ କେହି ତୁମକୁ ପ୍ରବଞ୍ଚନା କରି ରାଜସିଂହାସନ ଦେଇ ନାହାନ୍ତି । ପ୍ରଜାରଞ୍ଜନ ପାଇଁ ତୁମର ଯଥେଷ୍ଟ ଶକ୍ତି ଓ ଇଚ୍ଛା ଅଛି । ପ୍ରଜାଙ୍କର ସ୍ୱୀକୃତି ପାଇ ଇଚ୍ଛାପୂର୍ବକ ତୁମେ ଶାସନଭାର ଗ୍ରହଣ କରିଅଛ । ରାଷ୍ଟ୍ରର ବିଭିନ୍ନ ପ୍ରତିନିଧିମୂଳକ ପ୍ରଜାସଭା ତୁମର ସଦ୍‌ଗୁଣ ପାଇଁ ସମର୍ଥନ କରନ୍ତି ।

ହେ ଶାସକ ! ତୁମେ ରାଷ୍ଟ୍ର ମଧ୍ୟରେ ସର୍ବଶ୍ରେଷ୍ଠ ଆସନ ଗ୍ରହଣ କରି ତାହାର ଶିରୋମଣି ହୋଇଅଛ । ତାହାର ପ୍ରଥମ ଓ ପ୍ରମୁଖ ନାଗରିକ ହୋଇଅଛ । ରାଜସିଂହାସନର ମର୍ଯ୍ୟାଦା ରକ୍ଷା କରି ତାହାକୁ ସୁଶୋଭିତ କର । ରାଷ୍ଟ୍ରଭାର ବହନ କରିବା ନିମନ୍ତେ ଯଥାଯୋଗ୍ୟ ରାଜଶକ୍ତି ବୃଦ୍ଧିକର ।

ହେ ଶାସନକର୍ତ୍ତା ! ଶାସନଭାର ଗ୍ରହଣ କରିସାରି ତୁମେ ଶତ୍ରୁ ମିତ୍ର ଓ ନିଜ-ପର ଭାବ ତ୍ୟାଗ କର । ନିରପେକ୍ଷ ଓ ଦୃଢ଼ ହୁଅ । ରାଷ୍ଟ୍ରବସ୍ତୁର ସୁବଣ୍ଟନ ପାଇଁ କଟିବଦ୍ଧ ହୁଅ । ସମ୍ପତ୍ତିର ଉତ୍ପାଦନ ବୃଦ୍ଧି କରି ରାଷ୍ଟ୍ରର ଅଭାବ ଦୂର କର । ରାଷ୍ଟ୍ରୀୟ ସମ୍ପତ୍ତିର ବୃଦ୍ଧି ସଙ୍ଗେ ସଙ୍ଗେ ତାହାର ଉପଭୋଗରେ ଯେପରି ବିଷମତା ଜାତ ନ ହୁଏ ସେଥିପ୍ରତି ନ୍ୟାଯ୍ୟୋଚିତ ପନ୍ଥା ଅବଲମ୍ବନ କର । ଦେଶର ବୈଶ୍ୟବର୍ଗ ନିଜକୁ ରାଷ୍ଟ୍ରୀୟ ସମ୍ପତ୍ତିର ନ୍ୟାସ ରକ୍ଷକ ଓ ପରିଚାଳକ ବୋଲି ହୃଦୟଙ୍ଗମ କରନ୍ତୁ । କାରଣ ରାଷ୍ଟ୍ରର ସମସ୍ତ ପ୍ରାଣୀଙ୍କର ଅନ୍ନସଂସ୍ଥାନ କରିବା ସେମାନଙ୍କର ପବିତ୍ର କର୍ତ୍ତବ୍ୟ ଓ ଦାୟିତ୍ୱ ।

—ଅଥର୍ବ ବେଦ ସୌରଭ (ପୃଷ୍ଠା ୭୮)

## ଏତକ ପଢ଼ନ୍ତୁ—

ଆନ୍ତର୍ଜାତିକ ସାହିତ୍ୟର ଧାରାକୁ ଅନୁସରଣ କରି ଓଡ଼ିଆ ସାହିତ୍ୟରେ ମଧ୍ୟ ଗତ ଦଶକ ମଧ୍ୟରେ କୌଣସି ଉଲ୍ଲେଖଯୋଗ୍ୟ ଉପନ୍ୟାସ ଲକ୍ଷିତ ହୋଇ ନାହିଁ । ଯେଉଁମାନେ ସୁପ୍ରତିଷ୍ଠିତ ଏବଂ ସୁପ୍ରସ୍କୃତ ଔପନ୍ୟାସିକ ସେମାନଙ୍କର ଲେଖନୀ ପୂର୍ବଭଳି ଆଉ ଚଳଚଞ୍ଚଳ ହେଲା ପରି ଅନୁଭୂତ ହେଉ ନାହିଁ । ସତେ କ'ଣ ସାହିତ୍ୟରେ ଉପନ୍ୟାସ କ୍ଷେତ୍ରରେ ଏକ ସଙ୍କଟ ଆସି ପହଞ୍ଚିଛି ? ଗତ କେତେଗୋଟି ଦଶକ ମଧ୍ୟରେ ପାଠକ ସଂସାର ସହିତ ପ୍ରଚଳିତ ଉପନ୍ୟାସ ସଂସାରର ଏକ ବିଚ୍ଛିନ୍ନତାବୋଧ ଗଢ଼ିଉଠୁଛି ବୋଲି ଜଣାପଡ଼ୁଥିଲା । ସାହିତ୍ୟର ଆଉ କେତୋଟି ବିଭାଗରେ ମଧ୍ୟ ଏହି ବିଚ୍ଛିନ୍ନତାର ପ୍ରାଚୀର ଅତ୍ୟନ୍ତ ସଚେତନତାର ସହିତ ନିର୍ମାଣ କରିବା ପାଇଁ ଉତ୍ସାହିତ କରାଯାଉଥିଲା ପରି ! ବିଜ୍ଞାନ ବଳରେ ଆଜି ମନୁଷ୍ୟସମାଜ ମଧ୍ୟରେ ବ୍ୟାପକ ଯୋଗାଯୋଗ ବ୍ୟବସ୍ଥା ସମ୍ଭବ ହୋଇଛି । ଏକ ବୃହତ୍ତର ସାମାଜିକ ଜୀବନର ଆଭିମୁଖ୍ୟକୁ ବହନ କରି ଦିନେ ଉପନ୍ୟାସ ସାହିତ୍ୟର କେବଳ ଅଭ୍ୟୁଦୟ ହେଲା ନାହିଁ, ଉପନ୍ୟାସ ଏକ ପ୍ରଭାବଶାଳୀ ଅଭିବ୍ୟକ୍ତି ଭାବରେ ପ୍ରାଣପ୍ରତିଷ୍ଠା କଲା । ଦୁଃଖର କଥା, ସାମାଜିକ ଜୀବନରେ ଜୀବନର ସେହି ବିଶାଳତର ଏବଂ ଅଙ୍ଗାଙ୍ଗୀ ଦୃଷ୍ଟିକୋଣ ଆଜି ଦୁର୍ବଳ ହୋଇପଡ଼ିଛି । ବ୍ୟକ୍ତିସ୍ୱାତନ୍ତ୍ର୍ୟବାଦୀ ସ୍ୱାର୍ଥାନ୍ୱେଷୀ ଚିନ୍ତାଧାରାରେ ଜାଗତିକ ସଭ୍ୟତା ମୁହ୍ୟମାନ ହୋଇ ଏକ ଅବାଞ୍ଛିତ ଦିଗରେ ଅବାରିତ ଭାବରେ ଗତି କରି ଚାଲିଛି । ଏହିଭଳି ସମାଜରେ ଏକ ପ୍ରାଣବନ୍ତ, ମହିମାବନ୍ତ ଏବଂ ପ୍ରଭାବଶାଳୀ ଉପନ୍ୟାସ ରଚିତ ହେବା ନିଶ୍ଚୟ ବିଡ଼ମ୍ବନା କହିଲେ ଚଳେ । ଆନ୍ତର୍ଜାତିକ ପାଣିପାଗ ନ ବଦଳିଲେ, କିମ୍ବା ସାଂପ୍ରତିକ ଯୁବମାନସ ସେହି ପ୍ରତିକ୍ରିୟାସମୂହରୁ ମୁକ୍ତ ରହି ଏକ ମମତାବୋଧ ଜୀବନର ଜୟଯାତ୍ରା ଆରମ୍ଭ ନ କଲେ ପୂର୍ବଭଳି ବୃହତ୍ତର ସମାଜରେ ସମ୍ଭବ ହେଉଥିବା କଳାଗତ ବୈଭବ ସମ୍ଭବ ହେବ କିପରି ?

ଉପନ୍ୟାସ ସାହିତ୍ୟର ଏହିପରି ଅବସାଦ ମୁହୂର୍ତ୍ତରେ ଓଡ଼ିଆ ସାହିତ୍ୟରେ ଯେଉଁ କେତେ ଜଣ ନିରବଚ୍ଛିନ୍ନ ଭାବରେ ଉପନ୍ୟାସ ଲେଖି ଚାଲିଛନ୍ତି, ସେମାନଙ୍କ ମଧ୍ୟରେ "ସେକାଳ, ଏକାଳ, ଅନ୍ୟକାଳ" ଉପନ୍ୟାସର ଲେଖକ ଅନ୍ୟତମ । ଅତୀତରେ ସେ ଅନେକଗୁଡ଼ିଏ ସୁଖପାଠ୍ୟ ଉପନ୍ୟାସ ରଚନା କରି ଯଶସ୍ୱୀ ହୋଇଅଛନ୍ତି । ଶ୍ରୀ ଯଜ୍ଞେଶ୍ୱର ତ୍ରିପାଠୀଙ୍କର ଆଲୋଚ୍ୟ ଗ୍ରନ୍ଥଟି ଏକ ଭିନ୍ନ ସ୍ୱାଦର

ଉପନ୍ୟାସ । ଏହି ଉପନ୍ୟାସରେ ଚଳନ୍ତି ଇତିହାସ ଓ ରାଜନୀତିର ବହୁ ଚିତ୍ର ପରିବେଷିତ ହୋଇଅଛି । ଅଥଚ ଇତିହାସ ଅଥବା ରାଜନୀତିର ଚିତ୍ର ଅଙ୍କନ କରିବା ଲେଖକଙ୍କର ଉଦ୍ଦେଶ୍ୟ ନୁହେଁ । ଯୁଗଧର୍ମକୁ ବହନ କରି ଗଢ଼ିଉଠିଥିବା ବିକଳ ସାମାଜିକ ଜୀବନର ବହୁ ଘାତ-ପ୍ରତିଘାତ ସେ ରୂପାୟିତ କରିଛନ୍ତି, ଅଥଚ ଚଳନ୍ତ୍ରିକାର ଆଲୋକଚିତ୍ର ଗ୍ରହଣ ମଧ୍ୟ ତାଙ୍କର ଲକ୍ଷ୍ୟ ନୁହେଁ । ଏହି ଉପନ୍ୟାସରେ ଆମରି ଆଖିଆଗରେ ଅତ୍ୟନ୍ତ ନିର୍ମମ ଭାବରେ ଘଟିଯାଉଥିବା ଅନେକ ଶକ୍ତିଶାଳୀ ଅଥଚ ଅରୁଚିକର ଘଟଣାବଳୀ ବର୍ଣ୍ଣିତ ହୋଇଥିଲେହେଁ ଲେଖକ ଭବିଷ୍ୟତର ଉଜ୍ଜ୍ୱଳ ସମ୍ଭାବନାର ସଙ୍କେତ ଦେଇଛନ୍ତି । ମଣିଷର ଯାବତୀୟ ଅବ୍ୟାପାର ସତ୍ତ୍ୱେ ସେ ମଣିଷ ଜାତି ଉପରୁ ଆସ୍ଥା ହରାଇ ନାହାନ୍ତି ।

ପାରମ୍ପରିକ ଓଡ଼ିଆ ଉପନ୍ୟାସ ପରି 'ସେକାଳ, ଏକାଳ, ଅନ୍ୟକାଳ'ର ନାୟିକା କୌଣସି ଅଭିଜାତବଂଶଜା ନୁହେଁ, ମଧ୍ୟବିତ୍ତ ବାବୁଗୋଷ୍ଠୀର ଦୁଲାଳୀ ନୁହେଁ ଅଥବା ପଲ୍ଲୀମହଲର ଅନ୍ତଃପୁରବାସିନୀ ମଧ୍ୟ ନୁହେଁ । ସେ ହେଉଛି ଆମରି ସମାଜରେ ଆତଜାତ, ସାଧାରଣ ସମାଜର ଆଖିରେ ଅବହେଳିତା ଏବଂ ପରିତ୍ୟକ୍ତା ଜଣେ ହରିଜନ ମହିଳା । 'କୁନ୍ତଳା' ପରି ଦୁଃଖିନୀ ନାରୀ ବିରଳ କହିଲେ ଚଳେ । ପିଲାକାଳୁ ସେ ବାପଛେଉଣ୍ଡ । ବାପ ପେଟ ପୋଷିବା ପାଇଁ କେଉଁ ଦୂର ଦେଶକୁ ଯାଜନ ଖଟି ଯାଇଥିଲା, ଆଉ ଫେରି ନାହିଁ । କାନ୍ଦି କାନ୍ଦି କୁନ୍ତଳାମା' 'ସାରିଆ' ଆଖିରୁ ପାଣି ମରିଗଲା । ତଥାପି ସେ ଆଶାଧରି ବଞ୍ଚିରହିଲା ଆଉ ପାଞ୍ଚଜଣ ଦୁଃଖୀ ଲୋକଙ୍କ ପରି । ପରଦୁଆରେ ଖଟି କୁନ୍ତଳାକୁ ସେ ମଣିଷ କରି ଗଢ଼ିଲା । କୁନ୍ତଳାର ଜୀବନରେ ଦିନେ ଆସିଲା ଯୌବନର ଲହଡ଼ି । ତାରି ରୂପର ଇନ୍ଦ୍ରଜାଲ ଭିତରେ ପାଲୁଣୀ ସାହିର ଆଉ ପାଞ୍ଚ ଜଣ ଝିଅ ବାହୁନି ମରୁଥିଲେ । ଏହି କାଳରେ ଅଗ୍ନୃନକ ଆସିଲା ଗାନ୍ଧି-ଆନ୍ଦୋଳନ । ସମାଜରୁ ଛୁଆଁ ଅଛୁଆଁ ଭେଦଭାବ ଦୂର କରିବା ପାଇଁ ଆନ୍ଦୋଳନ ଆରମ୍ଭ ହୋଇଗଲା । ହରିଜନ ବସ୍ତିରେ ନୂଆ ଜୀବନ ଖେଳିଗଲା । ଏହି ଆନ୍ଦୋଳନର ପ୍ରତୀକ ଭାବରେ ଲେଖକ ଉପନ୍ୟାସର ନାୟକ ଦୁଷ୍ମନ୍ତକୁ ନିର୍ବାଚନ କରିଛନ୍ତି । ଦୁଷ୍ମନ୍ତପରି ନିର୍ମଳ-ଚରିତ୍ର, ଦେଶସେବୀ, ସଂସ୍କାରକ ଯୁବକ ଗାନ୍ଧିଯୁଗର ଭାରତବର୍ଷରେ କେତେ ଆଶା ଆଶ୍ୱାସନାର ସଞ୍ଚାର କରିଥିଲେ । ମନେହେଲା, ସତେ ଯେପରି ସବୁ କିଛି ଓଲଟ ପାଲଟ ହୋଇଯିବ । ଯୁଗଯୁଗର କଳଙ୍କମୁକ୍ତ ସମାଜରେ ମଣିଷ ହେବ ସୁଖୀ ଏବଂ ସୌଭାଗ୍ୟଶାଳୀ ।

କୁନ୍ତଳାର ଭାଗ୍ୟରେ କିନ୍ତୁ ଅବ୍ୟାପାର ଲେଖା ହୋଇ ରହିଥିଲା । ଆଦର୍ଶପ୍ରାଣ ଦୁଷ୍ମନ୍ତର ମନମତାଣିଆ ମିଳାମିଶା ଭିତରେ କୁନ୍ତଳା ଯେପରି ନିଜକୁ

ଖୋଜି ପାଇଲି ନାହିଁ । ତାର ରକ୍ତରେ ଖେଳିଲା ନୂଆ ଜୀବନର ଛୁଆଁ । ପରିଣତିକୁ କଳ୍ପନା କରିବାର ବୟସ ତାର ଆସି ନ ଥିଲା । ସେ ମହାଭାରତର ଋଷିକୁମାରୀ ସରଳା ଶକୁନ୍ତଳା ପରି ଦୁଷ୍ମନ୍ତଙ୍କର ପ୍ରେମଫାଶରେ ଆତ୍ମସମର୍ପଣ କଲି । ସେ ହେଲି ଅନ୍ତଃସତ୍ତ୍ୱା । କୌଣସି ସାମାଜିକ ସ୍ୱୀକୃତି ନ ଥାଇ ସେ ବିମଳ ହୃଦୟରେ ନିଜର ମନର ମଣିଷ ଦୁଷ୍ମନ୍ତଙ୍କୁ ଦେହ ଓ ମନ ଅର୍ପଣ କରିଦେଲି । ଅଗ୍ନିକ ଦୁଷ୍ମନ୍ତ ଅନ୍ତର୍ହିତ ହୋଇଗଲା । ବିଷୟ ଓ ଐଶ୍ୱର୍ଯ୍ୟ ମଧ୍ୟରେ ପ୍ରେମିକା ପ୍ରତି ତାର ସମସ୍ତ ପ୍ରତିଶ୍ରୁତି ପ୍ରହେଳିକାରେ ପରିଣତ ହୋଇଗଲା । ଠିକ୍ ମହାରାଜା ଦୁଷ୍ମନ୍ତ ଯେପରି ରାଜସୁଖ ମଧ୍ୟରେ ଋଷିକୁମାରୀ ଶକୁନ୍ତଳାଙ୍କୁ ଚିହ୍ନିପାରି ନ ଥିଲେ, ଗ୍ରହଣ ମଧ୍ୟ କଲେ ନାହିଁ ।

ହତଭାଗିନୀ କୁନ୍ତଳା ହେଲି ପତିତା । ସମାଜ ଆଖିରେ ଲାଞ୍ଛିତା ଏବଂ ଅପମାନିତା କୁନ୍ତଳା ପତିତା ହେଲା, ଅସତୀ ହେଲି ନାହିଁ । ସାରାଜୀବନ ସେ ତାର ମନର ମଣିଷ ଦୁଷ୍ମନ୍ତଙ୍କୁ ହୃଦୟ-ସିଂହାସନରେ ଅତ୍ୟନ୍ତ ଆଦରରେ ବସାଇ ଆରାଧନା କରୁଥିଲି । ତାର ପ୍ରଣୟର ସଙ୍କେତ 'ଭରତ'କୁ ମଣିଷ କରିବା ପାଇଁ ସେ ହୋଇଥିଲି ଆଜୀବନ ବ୍ରତଚାରିଣୀ । ସମାଜର ଲାଲ ଆଖିଆଗରେ ସେ ହାରି ମାନି ନ ଥିଲା । ମୁକୁଳା ଯୌବନର ଦେହଦାହ ଭୋଗ କରି କରି ସେ ଏକ ନୂଆ ବ୍ୟକ୍ତିତ୍ୱରେ ରୂପାନ୍ତରିତ ହୋଇଥିଲି । ଦୁଷ୍ମନ୍ତ ହେଲି ପ୍ରତାରକ, ଶୋଷକ ଏବଂ ପ୍ରବଞ୍ଚକ । ସ୍ୱାଧୀନତାର ପରକାଳରେ ଗାନ୍ଧିଯୁଗର ମଣିଷର ଯେଉଁ ବିକଳ ପରିଣତି, ଲେଖକ ଅତ୍ୟନ୍ତ ସାର୍ଥକ ଭାବରେ ଦୁଷ୍ମନ୍ତ ଜୀବନରେ ତାହା ଚିତ୍ରଣ କରିଛନ୍ତି । ଦୁଷ୍ମନ୍ତ ଲୋକପ୍ରତିନିଧି ମନ୍ତ୍ରୀ ହିସାବରେ ସୁଖ, ସମ୍ଭୋଗ ଏବଂ ସୌଭାଗ୍ୟର ଅଧିକାରୀ ହୋଇ କପଟ ଆଦର୍ଶ ଏବଂ ନୈତିକ ମନୁଷ୍ୟକୁ ପଦେ ପଦେ ହତ୍ୟା କରି ଚାଲିଥିଲେ, ଜନସେବା ନାମରେ କପଟ ଆତ୍ମସୁଖ, ଆତ୍ମପ୍ରଚାର ଏବଂ ଆତ୍ମାଭିମାନର ମାୟାଜାଲ ସୃଷ୍ଟି କରି ଜନସାଧାରଣଙ୍କୁ ବିଭ୍ରାନ୍ତ କରୁଥିଲେ, ଏସବୁର ଚିକିନିଖି ବିବରଣୀ ଦୁଷ୍ମନ୍ତଙ୍କ ଜୀବନରେ ପ୍ରତିଫଳିତ ହୋଇଛି । ସାଂପ୍ରତିକ କାଳର ଇତିହାସର ତାହା ହିଁ ବିକଳ ପରିଣତି । ଗାନ୍ଧି-ଆନ୍ଦୋଳନ ଯୁଗରେ ମଣିଷ ଯାହା ଗଢ଼ିଥିଲା, ତାହା ହୋଇପାରିଲା ନାହିଁ । ରକ୍ଷକମାନେ ଭକ୍ଷକ ହୋଇ ସମାଜଜୀବନକୁ ବିଡ଼ମ୍ବିତ କରିଦେଲେ । ତେବେ ଏହିପରି ଅନ୍ଧକାର ପରିବେଶରେ କୁନ୍ତଳାର ସାଧନା ଥିଲା ଆଲୋକର ବର୍ତ୍ତିକା ପରି । କୁନ୍ତଳାର ପରିଚୟ କେବଳ ନ ଥିଲା ନରିପୁର ଗ୍ରାମର ଗ୍ରାମସେବିକା ଭାବରେ, ସେ ଥିଲା ସମସ୍ତ ଗ୍ରାମର ଅତ୍ୟନ୍ତ ଆପଣାର । ସ୍ନେହ, ସେବା ଏବଂ ମମତାର ବନ୍ଧନରେ ସମସ୍ତ ଗାଆଁଟି ଯେପରି କୁନ୍ତଳା ପାଖରେ ଏକାଠି ହୋଇ ଯାଇଥିଲା । କେହି

ଯଦେ ପରିବର ନଥିଲେ କୁନ୍ତଳାର ଜନ୍ମଜାତକ କମ୍ବା ଅଜ୍ଞାତ ଜୀବନର ବିକଳ ଇତିହାସ ।

ପ୍ରସଙ୍ଗକ୍ରମେ ଲେଖକ ଦୁଷ୍ମନ୍ତଙ୍କ ପିତା ଜମିଦାର ଦଶରଥ ପଟ୍ଟନାୟକ, ଗୁମାସ୍ତା ନର ମହାନ୍ତି ଏବଂ ସାହୁକାର ଗିଜୁ ସାହୁର 'ମହାଲକ୍ଷ୍ମୀ ଭଣ୍ଡାର' ଚିତ୍ରଣ ଛଳରେ ପ୍ରାକ୍-ସ୍ୱାଧୀନତା କାଳର ସାମାଜିକ ଜୀବନର ସୂଚନା ଦେଇଛନ୍ତି । ଜମିଦାର ଦଶରଥ ଥିଲେ ବିଦେଶୀ ସରକାରଙ୍କର ଅନୁଗତ ସେବକ । ତେଣୁ ରାୟବାହାଦୁର ଉପାଧିରେ ଭୂଷିତ ହୋଇଥିଲେ । ବିଦେଶୀ ସରକାରଙ୍କ ପ୍ରିୟପାତ୍ର ହୋଇ ସେ ସମଗ୍ର ଗ୍ରାମରେ ନିରଙ୍କୁଶ ଆଧିପତ୍ୟ ବଜାୟ ରଖିଥିଲେ । କ୍ରମେ ସ୍ୱାଧୀନତା ପରେ ଗ୍ରାମ୍ୟ ଜୀବନରେ ସଭ୍ୟତାର ଢେଉ ଖେଳି ଗଲା । କ୍ରମେ କ୍ରମେ ପଲ୍ଲୀଜୀବନ ନାଗରିକ ଜୀବନ ପ୍ରତି ପ୍ରଲୁବ୍ଧ ହୋଇଉଠିଲା । ମାତ୍ର ଏହି ପୋଷାକ ପରିବର୍ତ୍ତନ ମଧ୍ୟରେ ତଳିଆଲୋକେ ଦାରିଦ୍ର୍ୟର ସୀମାରେଖା ତଳେ ଅଧିକ ପ୍ରବଞ୍ଚିତ ଏବଂ ଶୋଷିତ ହେବାକୁ ଲାଗିଲେ । ଗୋରା ଶାସନ ବଦଳରେ ସ୍ୱଦେଶୀ ଶାସନ, କଳାଲୋକଙ୍କର ଶାସନ ଆସିଲା । ତଥାପି ଶାସନର ରାହୁ ସରଳ ଲୋକଜୀବନକୁ ଶୋଷଣ କରି ଗଲା । ଏ ଯୁଗର ଶାସକଗୋଷ୍ଠୀର ନିର୍ମମ ଆଚରଣ ଓ ଛଳନାର ମୁଖାକୁ ଲେଖକ ଅତ୍ୟନ୍ତ ସଫଳତାର ସହିତ ଉଦ୍‌ଘାଟନ କରି ଦେଇଛନ୍ତି । ଦଶରଥଙ୍କ ଚରିତ୍ର ପାଠ କଲାବେଳେ ପାଠକ ବେଳେ ବେଳେ ଫକୀରମୋହନଙ୍କ 'ମଙ୍ଗରାଜ' ଚରିତ୍ରକୁ ସ୍ମରଣ କରିଥାଏ । ଧର୍ମପରାୟଣା ପଟ୍ଟନାୟକଗୃହିଣୀ ଯଶୋଦାଙ୍କ ମଧ୍ୟରେ ପାଠକ "ଛମାଣ ଆଠ ଗୁଣ୍ଠ"ର ସାଆନ୍ତାଣୀଙ୍କର ଉପସ୍ଥିତି ଉପଲବ୍ଧି କରିଥାଏ ।

ଆଲୋଚ୍ୟ ଉପନ୍ୟାସରେ "ଲୋଚନ ସାର"ଙ୍କର ଅବତାରଣା ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ । ସେ ଥିଲେ ଜଣେ ସଂସ୍କାରମୁକ୍ତ ଆଦର୍ଶ ଶିକ୍ଷକ । ଗରିବର ଆଶା ଓ ଆଶ୍ୱାସନାର ସେ ଥିଲେ ମୂର୍ତ୍ତିମନ୍ତ ପ୍ରକାଶ । ସମାଜଜୀବନରେ ଲୋଚନ ସାରଙ୍କର ସାଧନା ଏବଂ ଏକନିଷ୍ଠ ଆଦର୍ଶପ୍ରାଣତା ସମାଜରେ ବହୁ ପଥହରାଙ୍କୁ କୂଳକିନାରାରେ ଠାଇ କରିଦିଏ, ଅବିଶ୍ୱାସ ଓ ପ୍ରବଞ୍ଚନାରେ ବିଦଳିତ, ବିକଳ, ଅବହେଳିତ ଲୋକେ ତାଙ୍କର ଭରସାରେ ବାଟ ଚାଲନ୍ତି; କୁନ୍ତଳା, ସାରିଆ ପରି ହତଭାଗିନୀମାନେ ନୂଆ ଜୀବନର ସାହାରା ପାଆନ୍ତି । ମୋଟ ଉପରେ ଆଗାମୀ ଯୁଗର ବାର୍ତ୍ତାବହ ଭାବରେ ଲେଖକ "ଭରତ" ଚରିତ୍ର ମଧ୍ୟରେ ଯେଉଁ ସ୍ୱପ୍ନ ରଚନା କରିଛନ୍ତି, ସେ ମଧ୍ୟ ଏହି ଲୋଚନ ସାରଙ୍କର ଅପୂର୍ବ ସମ୍ଭାବନାର ପୂର୍ତ୍ତି ବିକାଶ କହିଲେ ଅତ୍ୟୁକ୍ତି ହେବ ନାହିଁ । ଲୋଚନ ସାରଙ୍କର ବ୍ୟକ୍ତିତ୍ୱ ମଧ୍ୟରେ ଲେଖକ ଏହି ପ୍ରାଚୀନ ସଂସ୍କୃତିସେବିତ ସମାଜର ଅନ୍ତର୍ନିହିତ ସୌନ୍ଦର୍ଯ୍ୟକୁ ରୂପାୟିତ କରିଛନ୍ତି ।

ଉପନ୍ୟାସର ଭାଷା ଓ ଶୈଳୀ ଅତ୍ୟନ୍ତ ହୃଦୟଗ୍ରାହୀ । ସାମାଜିକ ଆଦର୍ଶ ଓ ଆଭିମୁଖ୍ୟକୁ ରୂପାୟନ କାଳରେ ଲେଖକ ଅତ୍ୟନ୍ତ ଚମତ୍କାର୍ଯ୍ୟକ ଭାବରେ ପୁରାଣ ଓ ଇତିହାସର ବହୁ ରୋମାଞ୍ଚକର କାହାଣୀର ଅବତାରଣା କରିଛନ୍ତି । ନାନା ଢଗ, ଢମାଲି ଏବଂ ପୌରାଣିକ ପ୍ରବଚନ ମାଧ୍ୟମରେ ପ୍ରକାଶଭଙ୍ଗୀ ଯେତିକି ସାବଲୀଳ, ସେହି ପରିମାଣରେ ପ୍ରଭାବଶାଳୀ ହୋଇ ପାରିଛି । ବହୁ ସ୍ଥଳରେ ଲେଖକ ସାଧାରଣ ଲୋକଙ୍କର ଚଳନ୍ତି ଭାଷାକୁ ଛଡ଼ାଇଆଣି ସାହିତ୍ୟକ ମର୍ଯ୍ୟାଦା ଆରୋପ କରିଛନ୍ତି । ଉଦାହରଣ ସ୍ୱରୂପ ଭୃତୁଭୃତୁ ମୁଣ୍ଡ, ଅପରିଚ୍ଛନ୍ନିଆ ପୋଷାକ, ଚିହ୍ନା ପରିଚନ, ରୋଗ ବଇରାଗ, ପଜମାଉଁସରେ ପୋକ, ବାହାପିଆ ଭାସକୁଣ୍ଡି କଥା, କାକର ଚପୁଡ଼ିଲେ କ'ଣ ଘଡ଼ା ପୂରିବ, ନଚପର ପ୍ରଭୃତି ଉଲ୍ଲେଖ କରାଯାଇପାରେ ।

ଚରିତ୍ରମାନଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଅତ୍ୟନ୍ତ ଆକର୍ଷଣୀୟ ହେଲେହେଁ ବେଳେବେଳେ ମନେ ହୋଇଥାଏ, "ନର୍ମଦା" ପରି ଦୁଃଖିନୀ ଝିଅମାନଙ୍କର ମନର କଥା ଆଉ କିଛି କହିଥାଆନ୍ତେ କି ? ଆଦର୍ଶର ବ୍ୟାମୋହ ମଧ୍ୟରେ କାବ୍ୟନାୟିକା କୁନ୍ତଳାର ସାଧନାର ଇତିବୃତ୍ତ ପଢ଼ିଲାବେଳେ ପାଠକ ଖୋଜି ବୁଲୁଥାଏ ସେଇ ମାନସୀ ରାଧାର ମନଗହ୍ୱରରେ ଅପାଶୋରା ଅତୃପ୍ତ ପ୍ରଣୟଲୀଳାର ଲୁଚକାଳି ଖେଳ । ଦୁଃଖିନୀର ମର୍ମବେଦନା ପରି ତାହା ହୁଏତ ଗୁମ୍ଫିତ ହୋଇ ପାଠକପ୍ରାଣକୁ ଅଧିକ ଉଚ୍ଚାଟ କରିଛି ।

ଏହି ଉପନ୍ୟାସରେ ମନୁଷ୍ୟ ଭାଗ୍ୟବାଦୀ ହୋଇଥିଲେହେଁ ସେ ପରାସ୍ତ ସୈନିକ ନୁହେଁ । ଭାଗ୍ୟ ଓ ଭଗବାନ ମଧ୍ୟରେ ମନକୁ ଆନ୍ଦୋଳିତ କରି ସେ ନୈରାଶ୍ୟବାଦକୁ ଅସ୍ୱୀକାର କରି ଚାଲିଛି । ଲେଖକ ଏକ ମହତ୍ତର ଉଚ୍ଚତର ଜୀବନାଦର୍ଶ ପ୍ରତି ବ୍ୟାକୁଳ ହୋଇ କାମନା କରିଛନ୍ତି—"ଦୁନିଆଁରେ ମଣିଷ ହୋଇ ଜନ୍ମ ହୋଇଛେ । ମଣିଷ ପରି ବଞ୍ଚିବା । ପଶୁ ପରି ଗଣ୍ଡେ ଖାଇପିଇ ମରିବା ପାଇଁ ବଞ୍ଚିବା ନାହିଁ । ଯଦି ବଞ୍ଚିବା ତେବେ ଜୀଇଁବା ପାଇଁ ।"

ସମଗ୍ର ଉପନ୍ୟାସରେ ଲେଖକ ଯେଉଁ ଜୀବନାନୁଭୂତିର ସନ୍ଧାନ ଦେଇଛନ୍ତି, ସେଥିରେ ପାଠକପ୍ରାଣ ଅତ୍ୟନ୍ତ ଆନ୍ତରିକ ଭାବରେ ଲୋଡ଼ି ବୁଲୁଥାଏ, "ଆଉ କିଛି କହିଥାଆନ୍ତେ କି ?" ତଥାପି ଏ କଥା ସ୍ୱୀକାର୍ଯ୍ୟ ଯେ 'ସେକାଳ, ଏକାଳ, ଅନ୍ୟକାଳ' ଚଳନ୍ତି ଦଶକର ଏକ ସାର୍ଥକ ଉପନ୍ୟାସ ।

ପ୍ରାଧ୍ୟାପକ ପଠାଣି ପଟ୍ଟନାୟକ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ

●

# ମୋ ନିଜ କଥା

**ସେ କାଳର** ଗପଟିଏ । ଛାନ୍ଦୋଗ୍ୟ ଉପନିଷଦର । ଗୌତମ ଋଷିଙ୍କ ଆଶ୍ରମରେ ସତ୍ୟକାମ ନାମକ ଏକ ବାଳକ ବିଦ୍ୟା ଶିକ୍ଷା ପାଇଁ ପହଞ୍ଚିଲେ । ପ୍ରଚଳିତ ପ୍ରଥା ଅନୁସାରେ ଗୌତମ ବାଳକଟିର ବଂଶପରିଚୟ ଜାଣିବାକୁ ଇଚ୍ଛା କଲେ ।

ସତ୍ୟକାମ ନମ୍ର ଭାବରେ କହିଲେ, "ଆଜ୍ଞା, ମୁଁ ମୋର ଜନକଙ୍କୁ ପିଲାଦିନରୁ ଦେଖି ନାହିଁ । ମାତାଙ୍କୁ ଯେତେବେଳେ ମୋର ପିତାଙ୍କ ବିଷୟରେ ପ୍ରଶ୍ନ କରିଥିଲି, ସେତେବେଳେ ସେ ନୀରବ ରହିଲେ । କିଛି ସମୟ ନୀରବ ରହିଲା ପରେ ସେ ଏତିକି କହିଲେ—ମୋ ନାମ ଓ ତୋ ନାମକୁ ମିଶାଇ ତୁ ତୋର ପରିଚୟ ଦେବୁ—ସତ୍ୟକାମ ଜାବାଳ ।"

ଗୌତମ ସତ୍ୟକାମଙ୍କର ନିର୍ଭୀକ ସତ୍ୟ ଭାଷଣରେ ମୁଗଧ ହୋଇ କହିଲେ, "ତୁମର ମାତା ଜାବାଳ ଯେଉଁ ନିଷ୍ପତ୍ତି ନେଇଛନ୍ତି ତାହା ବାସ୍ତବିକ୍ ପ୍ରଶଂସନୀୟ । ବିନା ଦ୍ୱିଧାରେ ଯିଏ ସତ୍ୟ ପ୍ରକାଶ କରିପାରେ, ସେ ବ୍ରାହ୍ମଣଠାରୁ ଉଚ୍ଚରେ । ତେଣୁ ତୁମକୁ ଶିଷ୍ୟରୂପେ ଗ୍ରହଣ କରିବାରେ ମୋର କୌଣସି ଆପତ୍ତି ନାହିଁ । ତୁମେ ବର୍ତ୍ତମାନ ଜଙ୍ଗଲକୁ ଯାଇ ହୋମ ପାଇଁ ସମିଧ ସଂଗ୍ରହ କର ।"

**ଏ କାଳର** ଏ ଗପଟି । କୁନ୍ତଳା ପାଲୁଣୀ ତାର ପୁଅ 'ଭରତ'ର ସାମାଜିକ ସ୍ୱୀକୃତି ପାଇଁ ଯେତେବେଳେ ବ୍ୟଗ୍ର ହୋଇଉଠିଛୁ, ସେତେବେଳେ ତାହାର ଶିକ୍ଷକ ଲୋଚନ ମାଷ୍ଟ୍ରେ କହିଲେ, "ଯେଉଁ ମଣିଷ ବିଶ୍ୱାସରେ ବିଷ ଦିଅନ୍ତି, ସେମାନେ ଚଣ୍ଡାଳ ସଙ୍ଗେ ସମାନ । ଆଚରଣଦ୍ୱାରା ଚଣ୍ଡାଳ ମଧ୍ୟ ବ୍ରାହ୍ମଣ ସହିତ ଗଣ୍ୟ ହୁଏ । ତୋ ପୁଅ ପଛରେ ତୋ ଜାତିର ସାଙ୍ଗିଆ ଲାଗିବ । ତା ମାଆ ହରିଜନ, ସେ ହେବ ହରିଜନ ।"

**ଅନ୍ୟ କାଳ** ପାଇଁ ଏ ଗପ—ହରିଜନ ଯୁବକ ଭରତ ଯେତେବେଳେ ସମାଜରେ ତାର ପ୍ରତିଷ୍ଠା ଖୋଜୁଛି ସେତେବେଳେ ଆଜିକାଲିକାର ସମାଜ ତାକୁ ଅସ୍ପୃଶ୍ୟ କହି ଘୃଣା କରି ବସିଛି । ସେଥିପାଇଁ ସେ ମହାଭାରତର କର୍ଣ୍ଣଙ୍କ ଭାଷାରେ କହୁଛି—"ଜନ୍ମ ସିନା ମୋର ଦୈବର ଅଧୀନ, କିନ୍ତୁ ପୁରୁଷକାର ମୋର ଅଧୀନ ।" "ତୁମେ ସବର୍ଣ୍ଣ ହୋଇ ଯାହା ନ ହୋଇପାରିଛ, ତାହାଠାରୁ ମୁଁ ଯଥେଷ୍ଟ ଉଚ୍ଚରେ ।"

ଆଗାମୀ କାଳର ନାୟକ 'ଭରତ'ର ସନ୍ଧାନ ଏଇ ଅଳ୍ପ ଦିନ ତଳେ ମୁଁ ପାଇଥିଲି । ୧୯୬୯ ମସିହା ମାର୍ଚ୍ଚ ମାସ ଏକତିରିଶ ଏପ୍ରିଲ ପହିଲା ତାରିଖ ଦୁଇଦିନ

ଧଣ ଉତ୍କଳସମ୍ମିଳନୀ ଆନୁକୂଲ୍ୟରେ ବ୍ରହ୍ମପୁର ସହରରେ ଓଡ଼ିଶା ବିକାଶ ସମ୍ମିଳନୀ ଅନୁଷ୍ଠିତ ହେଉଥାଏ । ଓଡ଼ିଶାର ସାମୂହିକ ବିକାଶ ପାଇଁ ଏହି ଦୁଇଦିନିଆ ଆଲୋଚନାଚକ୍ରରେ ଓଡ଼ିଶାର ବିଶିଷ୍ଟ ବୁଦ୍ଧିଜୀବୀ ଯଥା—ହାଇକୋର୍ଟର ଅବସରପ୍ରାପ୍ତ ବିଚାରପତି, ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଅର୍ଥନୀତିବିଶାରଦ, ସମସ୍ତ ରାଜନୈତିକ ଦଳର ନେତା, ବର୍ତ୍ତମାନର ମନ୍ତ୍ରୀ ଏବଂ ବହୁ ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କ ସହିତ ପ୍ରବୀଣ ସାମ୍ବାଦିକମାନେ ଯୋଗ ଦେଇଥାନ୍ତି । ଉତ୍କଳ ସାହିତ୍ୟ ସମାଜ ତରଫରୁ ମୋତେ ଏହି ସମ୍ମିଳନୀରେ ପ୍ରତିନିଧିତ୍ୱ କରିବାକୁ ହୋଇଥିଲା ।

ମାର୍ଚ୍ଚ ମାସ ଏକତିରିଶ ତାରିଖ ଦିନ 'ସମାଜ' ସମ୍ପାଦକ ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିବା "ଓଡ଼ିଆ ଭାଷାର ବିକାଶ ଏବଂ ପ୍ରସାର" ଆଲୋଚନାଚକ୍ରରେ ସମ୍ମାନିତ ଅତିଥି ଭାବରେ ମୁଁ ମୋର ସଂକ୍ଷିପ୍ତ ବକ୍ତବ୍ୟ ପ୍ରଦାନ କରିବା ପରେ ତତ୍ପର ଦିନ ମୋତେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଉପସଭାପତି ଅଧ୍ୟାପକ ରାଜକିଶୋର ରାୟଙ୍କ ସହିତ ଜମଖଣ୍ଡି ହରିଜନ ବସ୍ତିରେ ଥିବା ଠକ୍କର ବାପା ଅନାଥାଶ୍ରମରେ ଏକ ପ୍ରାର୍ଥନା ସଭାରେ ପ୍ରବଚନ ଦେବାକୁ ହୋଇଥିଲା ।

ଓଡ଼ିଶାର ପୂର୍ବତନ ମନ୍ତ୍ରୀ ଏବଂ ଲୋକସଭା ସଦସ୍ୟ ପଦ୍ମଶ୍ରୀ ଶ୍ରୀଯୁକ୍ତ ମୋହନ ନାୟକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହି ଅନାଥାଶ୍ରମଟି ପରିଚାଳିତ । ସେହିଠାରେ ଅନେକଗୁଡ଼ିଏ ଅନାଥ ପିଲାଙ୍କୁ ଦେଖିଲି । ସେମାନଙ୍କର ଚାଲିଚଳନ, ଆଚାର ବ୍ୟବହାର ମୋତେ ମୁଗ୍ଧ କରିଥିଲା ।

ଜମଖଣ୍ଡିରୁ କାର୍‌ରେ ଫେରୁଥିଲାବେଳେ ମୁଁ ସେମାନଙ୍କ ଭିତରୁ ଜଣକୁ ମୋର କଳ୍ପନାର ଭରତ ରୂପେ ଗ୍ରହଣ କଲି । ମନେ ମନେ ଠିକ୍ କଲି, ଅନ୍ୟ କାଲି ପାଇଁ ଏହିମାନେ ହିଁ ଉପଯୁକ୍ତ ନାଗରିକ ହୋଇପାରିବେ ।

ଅସ୍ପୃଶ୍ୟତା ଆମ ଜାତିର କଳଙ୍କ । ଭେଦାଭେଦ ନ ଉଠିଲେ ଏ ଜାତିର ପ୍ରଗତି କଦାପି ସମ୍ଭବ ନୁହେଁ । ସେଥିପାଇଁ ଜାତିର ପିତା ମହାତ୍ମା ଗାନ୍ଧି ୧୯୩୩ ମସିହାରେ 'ହରିଜନ' ପତ୍ରିକାରେ ଲେଖିଥିଲେ—

"The work of removal of untouchability is not merely a social or economic reform. It means nothing short of total revolution, whose goal is touch the hearts of the millions of Hindus and the disappearance of horrible and terrible doctrine of inborn inequality and high and lowness. Such a

change can only be brought about by an appeal to the highest in man"

ମନୁଷ୍ୟ ଭିତରେ ଥିବା ମାନବିକତା, ଯାହା କି ତାହାକୁ ନରରୁ ଦେବତା କରିଦିଏ, ସେତିକର ଜାଗରଣରେ ବିଳମ୍ବ ଅନୁଭବ କରି ସେ ପୁଣି ଥରେ ୧୯୩୯ ମସିହାରେ 'ହରିଜନ' ପତ୍ରିକାରେ ଲେଖିଥିଲେ—

"Those who enter local bodies as representatives, go there not to seek honour or to indulge in mutual rivalries, but to render a service of love and that does not depend on money······They will convert themselves into unpaid sweepers, and take pride in doing so"

ସ୍ୱାଧୀନତାର ଦୀର୍ଘ ତେତିଶ ବର୍ଷ ପରେ ଏହି ଭେଦଭାବର ପାଚେରି କ'ଣ ଉଠିଲାଣି ? ଏବେ ମଧ୍ୟ ଅସ୍ପୃଶ୍ୟତା ଦୂରୀକରଣ ପାଇଁ ଆମମାନଙ୍କୁ ଆକାଶବାଣୀ ଓ ପତ୍ରପତ୍ରିକା ଜରିଆରେ କହିବାକୁ ଏବଂ ଲେଖିବାକୁ ପଡ଼ୁଛି ।

ସାମାଜିକ ଉପନ୍ୟାସ କହିଲେ କେବଳ ପ୍ରେମ, ପ୍ରଣୟ, ପରିଣୟ କିମ୍ବା ବିରହକୁ ବୁଝାଏ ନାହିଁ । ଏ ସମାଜରେ ଏସବୁ ସହିତ ଆଉ କିଛି ଅଧିକା ଅନୁଭୂତି ଅଛି, ଯାହାକୁ ବିବୃତି ନଦିଇ କବି, ଔପନ୍ୟାସିକ ଏବଂ କଥାକାର ଉପଲବ୍ଧି କରନ୍ତି । ସେଥିପାଇଁ ସେମାନଙ୍କର ରଚନାକୁ ସମାଲୋଚକମାନେ ବିଶ୍ଳେଷଣ କଲାବେଳେ ସେତେବେଳର ସାମାଜିକ ଅବସ୍ଥାର ଚିତ୍ର ପାଇପାରନ୍ତି ।

ମୁଁ ବିନମ୍ରତାର ସହିତ ସ୍ୱୀକାର କରିବି, ଏଥିରେ ବର୍ଣ୍ଣିତ ମୋର ସମସ୍ତ ଚରିତ୍ର କାଳ୍ପନିକ ଏବଂ କୌଣସି ବ୍ୟକ୍ତି କିମ୍ବା ସ୍ଥାନ ସହିତ ଏମାନଙ୍କର କୌଣସି ସମ୍ପର୍କ ନାହିଁ ।

ଏହି ଉପନ୍ୟାସଟିର ପ୍ରକାଶନ ଅବସରରେ ମୋର ପ୍ରିୟ ପ୍ରକାଶକ ଶ୍ରୀଯୁକ୍ତ ଗୋବିନ୍ଦଚରଣ ପାତ୍ର, ଗୀତାଞ୍ଜଳି ପ୍ରେସର ସ୍ୱତ୍ୱାଧିକାରୀ ଶ୍ରୀ ବିଜୟକୁମାର ଦାଶ, ଶିଳ୍ପୀବନ୍ଧୁ ଅମିତ ମୁଖାର୍ଜି ଏବଂ ଓଡ଼ିଶାର ବିଶିଷ୍ଟ ସମୀକ୍ଷକ ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକଙ୍କୁ ମୁଁ ମୋର କୃତଜ୍ଞତା ଜ୍ଞାପନ କରୁଛି ।

ଅଳମତି ବିସ୍ତରେଣ

ଜନ୍ମାଷ୍ଟମୀ, ୧୯୭୯
କଟକ



ଆଖିରୁ ଲୁହ ପୋଛିଲା କୁନ୍ତଳା ।

ଭରତ ଏ ପର୍ଯ୍ୟନ୍ତ ଚିଠି ଦେଇନାହିଁ । କଲେଜ ପିଲାମାନଙ୍କ ସହ ଏନ୍. ସି. ସି. କ୍ୟାମ୍ପରେ ଯୋଗଦେବା ପାଇଁ ଆସାମ ଯିବା ପୂର୍ବରୁ ସେ ବାରମ୍ବାର କରି ତାକୁ କହିଥିଲା—ସେଇଠାରେ ପହଞ୍ଚି ଖଣ୍ଡିଏ ଚିଠି ସେ ଦେବାକୁ ଯେପରି ଭୁଲି ନଯାଏ । ଏଥିପାଇଁ କେତେ ରାଣ, ନିୟମ ସେ ପକାଇଥିଲା । ହେଲେ, ଏତେ କରି କହିବାର, ଏତେ ରାଣ ନିୟମ ପକାଇବାର ଅର୍ଥ ସେ କ'ଣ ବୁଝି ପାରିଲା ? ଏଡ଼େ ପିଲାଟିଏ ହେଲାଣି କେବକୁ ଆଉ ବୁଝିବ କାହିଁକି ତା ମାଆ ମନରେ ଏତେ ଆଶଙ୍କା ଓ ଏତେ ଭୟ । କଲେଜରୁ ସପ୍ତାହରେ ଚିଠି ଖଣ୍ଡେ ନପାଇଲେ କାହିଁକି ସେ ବାଘୁଣୀ ପରି ହୋଇ ଉଠେ ?

ଭରତ ତାର ଗୋଟିଏ ବୋଲି ସଖାଳୀ । ତାରି ପାଇଁ ସେ ଘର ଛୁଡ଼ିଛି, ବାର ଦୁଆର ବୁଲୁଛି । କେତେ ହାକିମ ହୁକୁମାଙ୍କ ଠାରୁ ଗାଳି ମନ୍ଦ ସହୁଛି । ନହେଲେ ଏଇ ନରପୁର ଗାଆଁ କିଏ ଆଉ କୁନ୍ତଳା କିଏ ? ଗ୍ରାମ ସେବିକା ଚାକିରୀକୁ ଅବା ପଚ୍ଛର ଧାଉଁଥିଲା କିଏ ?

ବେଳେ ବେଳେ କୁନ୍ତଳା ଭାବେ, ଭରତର ବାପା ଯଦି ତାଙ୍କ ପୁଅର ଦାୟିତ୍ୱ ନେଇଥାନ୍ତେ ତେବେ ସେ କାହିଁକି ଆଜି ସନ୍ତୁଳି ହେଉଥାନ୍ତା ? ତାଙ୍କ ପିଲାର ଭଲମନ୍ଦ ତାଙ୍କର ହୋଇଥାନ୍ତା । ସିଏ ଯିମିତି ଘଷି ପରି ଘରେ ଜନମ ହୋଇଥିଲା, ସେମିତି ଚେଁସ, ମୁ ଦୁରା, ଚୋକେଇ ପାଚିଆ ବୁଣି ତାର ପେଟ ଅପୋଷା ରହି ଯାଇ ନଥାନ୍ତା ।

ଭରତର ବାପ କଥା ମନରେ ଉଠିଲେ କୁନ୍ତଳା ମନ ବିଦ୍ରୋହ ଉଠେ । ଛିଃ ! ଏଗୁଡ଼ାଙ୍କୁ ମରଦ କୁହନ୍ତି ? ରୂପ ଦେଖି ତ ଅଲଣା ସୋହାଗ ଅଜାଡ଼ି ହୋଇ ପଡ଼ିଲା, ଆଉ ବୋଝ ପାରଉଥିବା କାଳ-ବେଳକୁ ମରଦ ପଣିଆଁ ଗଲା କୁଆଡ଼େ ? ଉରକୁଳା କେଉଁଠିକାର ? ମାଇକିନିଆଁଙ୍କୁ ସମ୍ଭାଳି ପାରିବ ନାହିଁ ତ ଆଉ ପ୍ରେମ ଉଚ୍ଛୁଳି ପଡୁଥିଲା କାହିଁକି ? ମନ ଭିତରେ ତାର ଯେଉଁ ରାଗ ଜମି ଉଠି ଉପରକୁ ଆସେ ସେ କେବଳ ତାର ଓଠ ଦୁଇଟାକୁ ଥରାଏ । କଣ୍ଠ ନଳୀ ତାର କମ୍ପି ଉଠେ, ନାକପୁଡ଼ା ଫୁଲିଉଠେ କିନ୍ତୁ ପାଟି ଭିତରୁ ତାହା ବାହାରକୁ ଆସିପାରେ ନାହିଁ । ସେ କେବଳ ମନେ ମନେ ଭାବେ ଥରେ ଦେଖା ମିଳିଲେ ପଚାରନ୍ତି—ହଇଓ ବାବୁ, ଆମେ କ'ଣ ମଦ ଘଡ଼ା ? କାମ ସରିଲେ ଗଡ଼େଇ ଦେଇ ଯିବ ? କେତେ ତ ବଡ଼ ବଡ଼ କଥା ଶୁଣାଇଥିଲ ?—ତୁ ବ୍ୟସ୍ତ ହୁଅନା କୁନ୍ତଳା, ମୁଁ ଅଛି । ଶ୍ରେଷ୍ଠ ଜାତି ଆଉ ବଡ଼ ଜାତି ଏ ସବୁ ମଣିଷ ଭିଆଣ ଜାତି କହିଲେ ଦୁଇଟା । ଗୋଟାଏ ମରଦ ହେଲେ ଆରଟା ସ୍ତ୍ରୀ । ତୁ ଚିନ୍ତା କରନା, ସବୁ ଠିକ୍ ହୋଇଯିବ । କଂଗ୍ରେସ ଯେଉଁ ଆନ୍ଦୋଳନ ଚଳାଇଛି ତାହା ନିଶ୍ଚୟ ସଫଳ ହେବ । ଦେଶରୁ ଛୁଆଁ, ଅଛୁଆଁ, ଭାବ ଉଠିଯିବ । କୁଆଡେ ଗଲା ସେଇ ମନ ବହଲିଆ କଥା ? ଦେଶ ପରାଧୀନ ଥିଲା, ବର୍ତ୍ତମାନ ତ ସ୍ୱାଧୀନ ହେଲାଣି । କାହିଁ ତୁମର ତ ଦେଖା ଦର୍ଶନ ନାହିଁ ? ପେଟ୍ରୁ ଦନ ଆଳୁଅକୁ ଡରି କୋରଡ଼ରେ ରହିଲା ପରି ତମେ ଲୁଚି ଛପି କାହିଁକି ବୁଲୁଛ ?

କୁନ୍ତଳାର ମନେ ପଡ଼େ—ଭରତ ବାପର ରୂପରେ ଯେପରି ଚୁମ୍ବକ ଥିଲା ସେହିପରି କଥାରେ ମହୁ ଥିଲା । ସେତିକି କଥାରେ ସେ ପଥ ହୁଡ଼ିଲା । ପଛ କଥା; କାହିଁ କେଉଁ ଯୁଗର ହେଲାଣି । ଏହି ଦେହ ଖଣ୍ଡ

ତାହାର ବଇଶ । ଏହାର ଲାଗି ଯାବତ ଲୋକହସା, ହନସ୍ତା ସେ ଭୋଗୁଛି ।

ମନରେ ତାର ପଛ କଥା ଉଙ୍କି ମାରିଲା !

ଗାଆଁ ପାଖ ମାଇନର ସ୍କୁଲରେ ହେଡ଼ମାଷ୍ଟ୍ର ଥାନ୍ତି ଲୋଚନ ସାର୍ । ନୂଆକରି ସ୍କୁଲ ଆରମ୍ଭ ହେଉଥାଏ । ତେଣୁ ପିଲାମାନଙ୍କୁ ଗୋଟିଇ ସଂଗ୍ରହ କରୁଥାନ୍ତି । କେଜାଣି କାହିଁକି ସେ ପାଠ ପଢ଼ିବା ପାଇଁ ତା ମାଆକୁ ଲୋଚନ ମାଷ୍ଟ୍ର କହିଲେ ।

ପାଠ ପଢ଼ୁ ପଢ଼ୁ ସେ ମାଇନର ଯାଏ ଗଲା । ପରୀକ୍ଷା ହେଲା, ପାଶ୍ କେବଳ କଲା ନାହିଁ ଯେ ବୃତ୍ତି ମଧ୍ୟ ପାଇଲା ।

ଲୋଚନ ସାର୍ ତ ମାଷ୍ଟ୍ର ନଥିଲେ ସାକ୍ଷାତ୍ ବାପ ସମାନ ଥିଲେ । ଶ୍ରେଣୀରେ ସେ ଯେତେବେଳେ ଅନ୍ୟ ପିଲାଙ୍କଠାରୁ ଅଲଗା ହୋଇ ବସୁ-ଥିଲା ସେତେବେଳେ ଲୋଚନ ସାର୍ ତାକୁ ଛୁଉଁ ଥିଲେ । ତା'ର ପାଠ ପଢ଼ାର ତତ୍ତ୍ୱ ନେଉଥିଲେ । ହରିଜନକୁ ଛୁଇଁଛନ୍ତି ବୋଲି କେଉଁ ଦିନ ଯାଇ ଘରେ ପଇତା ବଦଳାନ୍ତି ନାହିଁ କିମ୍ବା ଲୁଗାପଟା ଧୋଇ ଗାଧୁଆନ୍ତି ନାହିଁ ।

ପିଲାମାନଙ୍କୁ ଏକଲବ୍ୟ ବିଷୟରେ ପାଠ ପଢ଼ାଇଲା ବେଳେ ସେ କାନ୍ଦି ପକାନ୍ତି । ସେ କହୁଥିଲେ ଦ୍ରୋଣ ପ୍ରକୃତ ଗୁରୁ ନଥିଲେ । ଯିଏ ଶିକ୍ଷକ ଆସନରେ ବସିବ ତାହାର ସମସ୍ତଙ୍କ ପ୍ରତି ସମଭାବ ରହିବା ଉଚିତ୍ । ଭବିଷ୍ୟତରେ ଅର୍ଜୁନକୁ ଯୁଦ୍ଧ ବିଦ୍ୟାରେ ଏକଲବ୍ୟ ବଳି ଯିବ ବୋଲି ଦ୍ରୋଣ ଚାଣକ୍ୟତା କରି ତା'ର ବୁଢ଼ା ଆଙ୍ଗୁଠିଟା କଟାଇ ଦେଲେ ? କେବଳ ଏତିକି ପାର୍ଥକ୍ୟ ହେଉଛି । ଏକଲବ୍ୟ ଜାତିରେ ଶବର ଅନ୍ତ୍ୟଜ, ଆଉ ଅର୍ଜୁନ ହେଉଛି ରାଜପୁତ୍ର, କ୍ଷତ୍ରିୟ । ଦ୍ରୋଣଙ୍କର ବୁଝିବାର ଉଚିତ୍ ଥିଲା—ମଣିଷ ପଇସା ରୋଜଗାର କରେ କିନ୍ତୁ ପଇସା କ'ଣ ମଣିଷ ରୋଜଗାର କରେ ? କୌରବ କିମ୍ବା ପାଣ୍ଡବଙ୍କ ରାଜଦ୍ୱାରରୁ ଗୁରୁକେଶ ଚାଲିଯାଇଥିଲେ ତାଙ୍କ ପେଟ କ'ଣ ଅପୋଷା ରହିଯାଇ ଥାନ୍ତା ? ପେଟରେ ବିଦ୍ୟା ଥିଲେ ଅନ୍ୟ ରାଜାଙ୍କ ସଭା ତ ତାଙ୍କ ପାଇଁ ଖୋଲା ଥିଲା । ସେ'ତ ବଡ଼ ପଣ୍ଡିତ ଥିଲେ ତେଣୁ ନିଶ୍ଚୟ ପଢ଼ିଥିବେ ରାଜା ସିନା ନିଜ ରାଜ୍ୟରେ ପୂଜା ପାଏ କିନ୍ତୁ ବିଦ୍ୱାନର ଆଦର ସବୁଠାରେ । ସବୁ ବୁଝି ଶୁଝି ସେ

ବାଟ ହୁଡ଼ିଥିଲେ । ସେଥିପାଇଁ ତାଙ୍କୁ ଶେଷରେ ମହାଭାରତ ଯୁଦ୍ଧରେ ପ୍ରାଣ ହାରିବାକୁ ପଡ଼ିଥିଲା ।

କୁନ୍ତଳା ଭଲ ପାଠ ପଢ଼ୁଥିଲା । ମାଷ୍ଟ୍ରେ ଶ୍ରେଣୀରେ ଯାହା ପଢ଼ାନ୍ତି ସେତିକ ସେ ମନେରଖେ । ଘରେ ମଧ୍ୟ ପଢ଼ିବାକୁ ସୁବିଧା ନ ଥାଏ । ସନ୍ଧ୍ୟା ପୂର୍ବରୁ ଶୋଷାଇ ସାରି ଖାଇ ପିଇ ଶୋଇପଡ଼ିବାକୁ ହୁଏ । ରୋଜଗାର କରିବାକୁ ବିଧବା ମାଆ । ଗାଆଁ ସାଉକାରଙ୍କ ଘରେ ସେ କାମ ପାଇଛି କରେ । ଯାହା ଆଣେ ସେତିକରେ ମାଆ ଝିଅ ବଞ୍ଚିବା କଷ୍ଟ । କିରାସିନ ତେଲ କିଣାହେବ, ଡିବିରି ଜଳାହେବ ଆଉ ରାତିରେ ସେ ବହିଧରି ପାଠ ପଢ଼ିବ ଏସବୁ ଗହନ କଥା । ଲୋଚନ ମାଷ୍ଟ୍ରେ ଯେଉଁ ପୁରୁଣା ବହି କେତେ ଖଣ୍ଡ ଯୋଗାଡ଼ କରି ଦେଇଥାନ୍ତି ସେତିକ ତାର ସମ୍ବଳ ।

ଲୋଚନ ମାଷ୍ଟ୍ରେ ଯେଉଁଦିନ ତା ମାଆକୁ ଡାକି କହିଲେ—ହଇଲୋ ସାରିଆ, କୁନ୍ତଳା ଏ ବର୍ଷ ବୃତ୍ତି ପାଇଛି । ଫାଷ୍ଟ ହୋଇଛି । ଆଉ ଗାଆଁରେ ତ ହାଇସ୍କୁଲ ଅଛି ସେ ପଢ଼ିବାକୁ ଯାଉ । ପିଲାଟା ଯେତେବେଳେ ଭଲ ପାଠ ପଢ଼ୁଛି, ତାକୁ ପାଠ ପଢ଼ାଇବାଟା ଉଚିତ ।

କୁନ୍ତଳା ଆଖିରେ ସେଦିନର ଦୃଶ୍ୟ ନାଚି ଯାଉଛି—ମାଆ ତା'ର ହାତେ ଲମ୍ବର ଜିଭ କାଢ଼ି କହିଲା—କ'ଣ କହିଲେ ସାନ୍ତେ ? ଏମିତି ନ ହେଲେ ବି ଆଉ ସନ ଝିଅ ଘରେ ରହିବ । ବଢ଼ିଲା ଝିଅଟାକୁ ମୁଁ କିଆଣ ଡିଆଇଁ ଆଉ ସାଇକି ପଠାଇବି ? ଭଲ ଥାଏ କି ମନ୍ଦ ଥାଏ ? ତେଣିକି କ'ଣ ହେବ କିଏ କହିପାରିବ ? ତାପରେ ଆମେ ତ ଛୋଟ ଲୋକ, ଆମର ଏତେ ପାଠ ଅବା କ'ଣ ହେବ ? କୋଉ ପାଠ ପଢ଼ି ମୋ ଝିଅ ଜଜ୍ ବାରିଷ୍ଟର ହେବ ? ଆମେ ଯେଉଁ ମୂଳିଆ ମୁଣ୍ଡକୁ ସେଇ ମୂଳିଆ ମୁଣ୍ଡ । ମାଇକିନା ଝିଅ ଖତଗଦା । ଗୃହୁଁ ଗୃହୁଁ ହୁ ହୁ ହୋଇ ବଢ଼ିଯିବ । କେଉଁ ବିଶ୍ୱାସ ଅଛି ବୟସକୁ ? ଖାଲି ଆପଣମାନେ କଲ୍ୟାଣ କଲେ ମୁଁ ଟିକିଏ କପର ତାକୁ ହାତକୁ ଦି'ହାତ କରିଦେଲେ ମୋର କାମ ସରିଲା ତେଣିକି ପରଘରେ ମାଇକିନିଆ ଝିଅ ଚୂଲି ଫୁଙ୍କି, ଦୁଃଖ ଧନ୍ଦା କରି ତାର ସଂସାର କରିବ । ଏଇ ଯେତିକ ପାଠ ହେଲା ସେତିକ ଯଥେଷ୍ଟ ।

ମାଆ ପଣତକାନ ତଳେ ନିଜକୁ ଲୁଚାଇ ରଖି କୁନ୍ତଳା ସବୁ ଶୁଣୁଥାଏ ।

ମାଷ୍ଟ୍ର ତଥାପି ବୁଝାଇ ଚାଲିଥିଲେ ତୁ 'ବୁଝୁନୁ ! ଏ ଯୁଗ କ'ଣ ସବୁଦିନେ ଏଇପରି ଥିବ ? ନିଶ୍ଚୟ ବଦଳିଯିବ । ପେଟରେ ପାଠ ଥିଲେ କ'ଣ କିଏ ନେଇଯିବ ? ମଣିଷ ଯେତେ ପାଠ ପଢ଼େ ସେତିକି ନିରାପଦ ହୁଏ ।

ମାଅ କହିଲି ପାଠ ସିନା ଆଉ କେଉଁ ଜାତିପାଇଁ ଭଲ ହେଲେ ଆମ ହାଟୁଆ ପାଠକକୁ ସଲ । ଏଇତକ ପାଠ ପଢ଼ିଛୁ ଯେ ମୁଁ ଜୁଆଇଁଟିଏ ଖୋଜି ପାଇବା କଷ୍ଟ । ଆମ କୂଳରେ ପାଠୋଇ ବୋହୂଟିଏ ଘରକୁ ନେବାପାଇଁ କିଏ କାହିଁକି ଚାହିଁବ ? ଶେଷରେ ବୋଝ ହୋଇ ମୋର ବେକରେ କୁନ୍ତଳା ଓହଳିବ । ସେତେବେଳକୁ ତମେ ଆପଣ ନ ଥିବେ । ମୁଁ ଯୁବା ଝିଅକୁ ଘରେ ରଖି ବାରଲୋକଙ୍କଠାରୁ ଢେର ଉଲୁଗୁଣା ସହିଥିବି ସିନା ।

ମାଆର ଜିତ୍ ହେଲା । କୁନ୍ତଳାର ପାଠପଢ଼ା ସେତିକିରେ ବନ୍ଦ ହେଲା । ସେ ଘରେ ରହିଲା । ମାଆ ସହିତ ଦୁଃଖ ଧନ୍ଦା କଲା । ଏଇମିତି ଦିନେ କାମ ପାଇଁଟିକୁ ଯାଉ ଯାଉ ମାଆ କହିଲା, ଆଉ ଏଣିକି ଏଇ କୁରୁତା ଫରୁତାଗୁଡ଼ାକ ପିନ୍ଧନା । ଆଖିକି ଭଲ ଦିଶୁନାହିଁ । ମୁଁ ହାଟରୁ କସ୍ତା କିଣି ଆଣିଛୁ । ନେ, ପିନ୍ଧପକା ।

କିଛିଦିନ କସ୍ତା ପିନ୍ଧିବା ପରେ ଦିନେ ମାଆ ପୁଣି କହିଲା, ଆଜିଠାରୁ ତୋର ସାଉକାର ଘରକୁ କାମକରି ଯିବା ବନ୍ଦ । ଏଣିକି ଘରେ ରହ । ତୁ ଆଉ ପିଲା ହୋଇନାହୁଁ । ବଡ଼ ହେଲୁଣି । ଦେହ ମୁଣ୍ଡକୁ, ଦାଣ୍ଡ ଘାଟକୁ ନିଘା ରଖିବୁ । ନିଜେ ନିଜକୁ ନ ବଞ୍ଚାଇଲେ ବଣକୁ ମିରଗ ଶିକାର କରିବାକୁ ବହୁତ ଲୋକେ ଆସିବେ । ଆମଭଳି ଗ୍ରୁଣ୍ଟଲୋକଙ୍କର କଅଁଳ ମାଉଁସକୁ ଚାଖିବାକୁ ସେମାନେ ଭଲ ପାଆନ୍ତି ।

କୁନ୍ତଳା ଆଖିରେ ପାଣି ପୁଣି ଉବ ଉବ କରି ଉଠିଲା ।

ପ୍ରକୃତରେ ମାଆ କଥା ସତ ହେଲା । ପାରିଧି କରିବାକୁ ରଜାପୁଅ ଆସି ହରିଣ ଶିକାର ନକରି ହରିଣୀ ନୟନାକୁ ଶିକାର କରିଗଲେ । ତାର

କଅଁଳ ମାଉଁସକୁ ଭଣା ଭଣା କରି ପୁଳା ପୁଳା ନେଇ ଚାଖିଲେ । ତୃପ୍ତିରେ ଏଉଡ଼ଟିଏ ମାରି କହିଲେ ଯାହା କହ ପଛେ ଏଇ ଜଙ୍ଗଲୀ ମାଉଁସର ଯେଉଁ ସୁଆଦ ତାହା ସହରୀ ଖାସି ମାଉଁସର ନାହିଁ ।

ତାଙ୍କର ଗୋଟିଏ କଥାରେ ସେ ଭୁଲିଲା । ନିଜକୁ ସମର୍ପିଦେଲା ।

କିଏ ଜାଣିଥିଲା ଏପରି ହେବ ବୋଲି ? ପାଣି ପିଇସାରି ପଇଡ଼ର ଖୋଲି ଖୋଳପାଠାକୁ ଦାଣ୍ଡରେ ଫିଙ୍ଗିଦେଇ ସେ ଚାଲିଗଲେ । ଶୋଷିଲା ଥିଲେ । ନିଜର ତୃଷା ସେ ମେଣ୍ଟାଇଲେ । ଆଉ କୁନ୍ତଳା……

ତାକୁ କହିଗଲେ ତୁ ଆଦୌ ବ୍ୟସ୍ତ ହଅନା, ତୋ ପାଇଁ ମୁଁ ଅଛି । ମୋ ଉପରେ ଭରସା ରଖ । ତୋତେ ଦିନେ ଆସି ବାଜା ବଜାଇ ଶୋଭାଯାତ୍ରା କରି ରାଣୀ ବନେଇ ସହରକୁ ନେଇଯିବି ।

ସେହି ଯେ ଯାଇଛନ୍ତି ଆଉ ବାହୁଡ଼ି ଆସିବାର ନାଁ ଧରି ନାହାନ୍ତି । ରାଜରାଣୀ ତ କାହିଁ କେତେ ଦୂରର କଥା ପେଟରେ ଯେତେବେଳେ ଭରତ ସଞ୍ଚରିଲା, ସେ ହେଲା କଳଙ୍କିନୀ । କୂଅ, ପୋଖରୀ ପାଣି ଖୋଜିଲା । ସେଥିରେ ମଧ୍ୟ ବୁଡ଼ି ମରିବା ସମ୍ଭବପର ହେଲାନାହିଁ ।

ଛୁଇ ଭଳି ପଛେ ପଛେ ଜଗି ରହିଲେ ଲୋଚନ ମାଷ୍ଟ୍ରେ । ମୁଣ୍ଡରେ ହାତ ମାରି ବୁଝାଇ କହିଲେ—ଭୁଲ୍ କରୁ ବୋଲି ତ ଆମେ ମଣିଷ । ମଣିଷ ଭୁଲ ପାଇଁ ଅନୁତାପ କରେ । ପଶୁପକ୍ଷୀଙ୍କର ସେତିକି ନଥାଏ । ତୁ ବ୍ୟସ୍ତ ହଅନା । ଆତ୍ମହତ୍ୟା ମହାପାପ । ତୁ ଯିନା ନିଜେ ମରିବୁ କିନ୍ତୁ ତୋ ଭିତରେ ଯେଉଁଟି ହାତଗୋଡ଼ ପିଟି ଆଲୁଅ ଟିକିଏ ଦେଖିବ ବୋଲି ଧନ୍ଦ ହେଉଛି ତାକୁ ମାରିଦେବୁ କେଉଁ ସାହସରେ । ଜୀବନଟିଏ ଯିଏ ସୃଷ୍ଟି କରି ନ ପାରିବ ତାହାର ନଷ୍ଟ କରିବାର ଅଧିକାର ନାହିଁ

ମାଆ ଯେତେବେଳେ ସାଇ ଦଣ୍ଡଶାଙ୍କ କଳଙ୍କ ଅପବାଦର ଠାଉଁ ଠାଉଁ କଥା ସହି ନପାରି ତାକୁ ଝିଙ୍ଗାସି କରି କହେ ସେତେବେଳେ ତା ଆଖିରୁ ବୋହି ଯାଉଥିବା ଦୁଇ ଧାର ଲୁହକୁ ନିଜ ହାତରେ ପୋଛି ଦେଇ ଲୋଚନ ମାଷ୍ଟ୍ରେ କହନ୍ତି—ବୁଝିଲୁ ସାଆ, କୁନ୍ତଳା ତୁମ ସାଇର ଆଉ ପାଞ୍ଚଟା ଝିଅଙ୍କ ଭଳି ନୁହେଁ । ତା ପେଟରେ ଯେତିକି ବିଦ୍ୟା ଅଛି ସେତିକିରେ ସେ ନିଜକୁ ଆଉ ତାର ପିଲାକୁ ପୋଷିପାରିବ । ସେତେବେଳେ

ତ ପାଠ ପଢ଼ାଇବାକୁ ମନା କଲୁ ଆଉ ଅଧିକା ଦି ଅକ୍ଷର ପଢ଼ାଇଥିଲେ ଦେଖିଥାନ୍ତୁ

—ପାଠ ପଢ଼ାଇଲ ବୋଲି ତ ଏତେ ହୀନସ୍ତା ହେଲି । ନହେଲେ ମୋତେ କିଏ କାହିଁକି ପଦେ କହିବାକୁ ସାହସ କରିଥାନ୍ତା ? ମୁଁ ସାରିଆ ପାଲୁଣୀଟି ! ତୁଚ୍ଛାଟାରେ କହିବା ଲୋକର ଜିଭ ଟାଣି ଆଣିବା ଲୋକ । ଚାଲନ୍ତୁ ଆଜ୍ଞା, ତୁମେ ଆପଣ ସବୁ ଅନିଷ୍ଟର ମୂଳ । ପାଠ ନ ପଢ଼ାଇଥିଲେ ମୁଁ ଏତେବେଳକୁ ଗୋଟାଏ ମୂର୍ଖ ମୂଲିଆ ହାତରେ ମୋ ଝିଅକୁ ଛନ୍ଦି ଦେଇ ନିଶ୍ଚିନ୍ତ ହୋଇ ବସିଥାନ୍ତି । ଯେଉଁଠାରୁ ଯେତେବେଳେ ପ୍ରସ୍ତାବଟିଏ ଆସିଲା, ସମସ୍ତେ ଚମକି ପଡ଼ି କହିଲେ ଝିଅଟା ଏତେ ପାଠ ପଢ଼ିଛି ! ସେ କ'ଣ ବାରି ଖିଜମତ୍ କରି ପାରିବ ? ସେତେବେଳେ ତମେ ଆପଣ କହିଲ ଦମ୍ଭ ଧର । କୁନ୍ତଳା ବାହାଘର ମୋତେ ଲାଗିଲା । ମୁଁ ତା ପାଇଁ ଯୋଗ୍ୟର ଗୁଣର ପାତ୍ରଟିଏ ଯୋଗାଡ଼ କରିଦେବି । ଅପେକ୍ଷା କରି କରି ମୁଁ ଏବେ କୋଉ କୂଳ ହେଲି......

ମୁଣ୍ଡ କୋଡ଼ି ମାଆ କାନ୍ଦୁଥାଏ । ଲୋଚନ ମାଷ୍ଟ୍ରେ ପ୍ରବୋଧନା ଦେଉଥାନ୍ତି । କହୁଥାନ୍ତି, ବ୍ୟସ୍ତ ହୁଅନା । ସବୁ ସେଇ ମାଲିକଙ୍କ ହାତରେ । କଲାବାଲା ସିଏ । ଦେଲାବାଲା ସିଏ । ବୋଝ ଯିଏ ଦେଇଛନ୍ତି ବୋଝ ସେହି ହିଁ ଉଦ୍ଧାର କରିବେ ।

ମାଆ ଅପେକ୍ଷା କଲା ।

ଅଥୟ ମନକୁ ଦମ୍ଭ ଦେଲା କୁନ୍ତଳା । ହାବ ଅଭାବକୁ ଲୋଚନ ମାଷ୍ଟ୍ରେ ରହିଲେ ।

ଦିନ ଗଡ଼ି ଚାଲିଲା । କୋଳକୁ ଆସିଲା ଭରତ । ତାହାର ରୂପରେ ମାଆ ପୁଲକିତା ହୋଇ ଉଠିଲା । ନାତିକୁ କୋଳକୁ ନେଇ ଗେଲ କଲା । ହଳଦୀ ମାଲିପା ଲଗାଇ କଜଳ ଟିପା ମାରି ନାତିକୁ ବେଶ କଲା ।

କୁନ୍ତଳା ଆଖି ଫେରାଇ ପୁଅକୁ ଚାହିଁଲା । ଅବିକଳ ତା ବାପା ଚେହେରା ଆଣିଛି । ଠିକ୍ ତାରି ଭଳି ନାକ, ମୁହଁ, ଆଖି ।

ଭାସିଗଲା ଲୋକ ମରିବା ପାଇଁ ଯେତେବେଳେ ନିଶ୍ଚିତ ହୋଇ ସାରିଥାଏ । ଭଗବାନ ଠିକ୍ ନଈ ମଝିରେ ତାହାରି ପାଇଁ ଗଛ ଡାଳ ଖଣ୍ଡିଏ ପକାଇ ଦେଇଥାନ୍ତି ।

କୁନ୍ତଳାର ପେଟକ ଦ ପେଟ ହେଲ୍ । କନ୍ତୁ କାମ କର ପୋଷିବା ପାଇଁ ମାଆର ସେଇ ହାତ ଦୁଇଟା । କେତେ ଖଟିବ ଯେ ତନଟା ପାଟିକୁ ଆହାର ଯୋଗାଇବ ? ବୟସ ଯେତେ ବଢୁଛି ବଳ ସେତେ ତୁଟୁଛି । କୁନ୍ତଳା ଅବା କଛୁ କାମ କରନ୍ତା କନ୍ତୁ ପିଲଟାକୁ କାହା ପାଖରେ ଗୁଡ଼ କୁଆଡ଼େ ଅବା ଯିବ ? ମାଆ ତାର ଦୁନଆଁକୁ ହାଡ଼େ ହାଡ଼େ ଚହ୍ନିଛି । ଯେଉଁ-ମାନଙ୍କ ସାଙ୍ଗରେ ମିଶି ଝିଅ ତାର ପାଞ୍ଚ କାମ କରିବାକୁ ଯିବ, ସେଇମାନେ ବାର୍‌କଥା ଧିସେଇ କର କହିବେ, ମୁରୁକ ହସା ଦେବେ, ଖୁଣ୍ଟାଣିଆ ଗୃହାଣୀ ଗୃହିଁବେ । ସେଥିକ ତାକୁ ଭାର ଡର ।

କୁନ୍ତଳା ଯେତେବେଳେ କାମ କରିଯିବା ନାଁ ଧରୁଛି ସେତେ-ବେଳେ ମାଆ ଖିଙ୍କାର ଉଠି କହି ଉଠିଛି—ମୁଁ କ'ଣ ମଲଣି ? ମୋ ଦହ ହାତ ଚଳୁଥିବା ପର୍ଯ୍ୟନ୍ତ ମୁଁ ପୋଷିବ । ମୁଁ ନପାରଲାର ହେଲେ ତେଣିକ ତୁ ଦାଣ୍ଡକୁ ବାହାରିବୁ । ଆଲୋ ବୁଝିଲୁ, ବଡ଼ଲୋକମାନଙ୍କର ସେଇ ଗୋଟିଏ କଥା—ହଁ ହେ, ଶ୍ରେଷ୍ଠ ଜାତ ଝିଅ ବୋହୂଙ୍କର ମାନ ମହତ ବୋଲ କ'ଣ ଅଛି ? ଏଇ କଥା ଶୁଣିବାକୁ ମତେ ଭାର ଡର ମାଡ଼େ ।

ବୁଢ଼ା ଲୋଚନ ମାଷ୍ଟ୍ର ସବୁ ଜାଣନ୍ତି । ବଡ଼ ଧାର୍ମିକ ପୁରୁଷ । ପର ପାଇଁ ତାଙ୍କର ପ୍ରାଣ କାନ୍ଦେ । ମଣିଷ ପାଇଁ ମନରେ ତାଙ୍କର କେତେ ମମତା । ସେମାନଙ୍କ ଭିତରେ ବାଛ ବିଚାର ଦେଖନ୍ତି ନାହିଁ । ସେ କେବଳ ମୁହଁରେ କହନ୍ତି ନାହିଁ—ସକଳ ଘଟେ ନାରାୟଣ; ବରଂ ଆଚରଣ କର ଦେଖାଇ ଦଅନ୍ତି ।

ଲୋଚନ ମାଷ୍ଟ୍ରଙ୍କୁ ଭରସି କର କେହି କେବେ ତାଙ୍କ ମୁହଁ ଆଗରେ କଛୁ କହି ପାରନ୍ତି ନାହିଁ । ତାର କାରଣ ଦହକ ତାଙ୍କର ଏଇ ଗାଆଁ ଇସ୍କୁଲରେ କଟିଲଣି । ବାପକୁ ପଢ଼ାଉଥିଲେ, ତାପରେ ତା ପୁଅର ମାଷ୍ଟ୍ର ହେଲେ । ଏବେ ନୂଆ କର ନାତି ଆସି ତାଙ୍କ ପାଖରେ ସିଲଟରେ ଚକ୍ ଖଡ଼ରେ ମୁଣ୍ଡଲୀ ବୁଲାଇ କହୁଛି "ଚକୁଳି ପିଠା ମଝିରେ ଗୁଡ଼" । ତେଣୁ ସମସ୍ତଙ୍କର ନାଡ଼ ନକ୍ଷତ୍ର ତାଙ୍କ ନଖ ଅଗରେ । କାହା ଗୁମର ତାଙ୍କୁ ଅମାଲୁମ ? ଗାଆଁର ଦଳାଦଳି, ରାଜନୀତି ଠାରୁ ସେ

ଦୂରେଇ ରହନ୍ତି । ତାଙ୍କ ଚକ୍ ବାକ୍ସ, ବେତ ବାଡ଼ି ଆଉ ସ୍କୁଲ ଭଲ ଅଛିତ ଦୁନିଆଁ ଭଲ ଅଛି ।

ସେହି ଲୋଚନ ମାଷ୍ଟ୍ର ବଦଳିର ନଥିଲେ ସେ କ'ଣ ଗୃହକର୍ତ୍ତ୍ରୀ ଖଣ୍ଡ ପାଇ ପାରଥାନ୍ତା ? ସେ ଚିନ୍ତା କଲେ ସାରଆ ବୁଢ଼ୀ ହେଲଣି, କେତେ ଦିନ ଅବା ବଞ୍ଚିବ ? ପାଚଲା ପତ୍ର ପରି ସେ ଝଡ଼ି ପଡ଼ିଲା ଦିନ କୁନ୍ତଳାଟା ସିନା ପିଲାଟାକୁ କାଖରେ ଜାକି ଭିକ ମାଗିବ ? ପାଠ ଯେତେବେଳେ ପଢ଼ାଉଛନ୍ତି ସେତେବେଳେ ସେ ତାଙ୍କର ଝିଅ ସମାନ । ଗୁରୁ କିଏ ଆଉ ବାପ କିଏ ? ବାପର ପାଞ୍ଚଟି ଝିଅରୁ ଗୋଟିଏ ଦୁଃଖ ପାଇଲେ ବାପ ମନ କ'ଣ କଷ୍ଟ ହୁଏ ନାହିଁ ? ସାରଆ ଅଜାଣତରେ ସେ କୁନ୍ତଳାକୁ ଡାକି ଗ୍ରାମ ସେବିକା ଟ୍ରେନିଙ୍ଗ ପାଇଁ ଦରଖାସ୍ତ ପଠାଇ ଦେଇଥିଲେ ।

ହରିଜନ ହିସାବରେ ହେଉ କିମ୍ବା ଶିକ୍ଷିତା ମହିଳା ଅଭାବ ହେତୁ ହେଉ ଟ୍ରେନିଙ୍ଗ ଯିବାପାଇଁ ଡାକରେ ପରୱାନା ଆସି ପହଞ୍ଚିଲା । ଠିକଣାର ମାର୍ଫତ୍ ଥିଲେ ମାଷ୍ଟ୍ରେ । ସେ ଆଗ ଡାକ ଖୋଲିପା ଶରଲେ । ପରୁଆନା ପଢ଼ିଲେ । ମନ ତାଙ୍କର ଆନନ୍ଦରେ ନାଚି ଉଠିଲା । ଘରେ ଆସି ମାଆକୁ କହିଲେ—ବୁଝିଲୁ ସାରଆ, ଝିଅଟା ଏଣିକି ବଂଚିଯିବ । ତୁ ଏଇ କେତଟା ଦିନ ନାତି ଟୋକାଟାକୁ ସମ୍ଭାଳି ନେ ।

ଟ୍ରେନିଙ୍ଗ ସରିଲା । ଗୃହକର୍ତ୍ତ୍ରୀ ମିଳିଲା । ମାଆ ଆଉ ଭରତକୁ ଧରି ସେ ଗାଆଁ ଛାଡ଼ିଲା । ଯେଉଁ ଗାଆଁରେ ସେ ଦୋଗୁରୁଣୀ କୁନ୍ତଳା ହୋଇ-ଥାନ୍ତା ସେଇ ଗାଆଁ ଛାଡ଼ି ଯେଉଁଦିନ ଦିଦି ଡ଼ାକ ଶୁଣିବାକୁ ଏଇ ନରପୁର ଗାଆଁକୁ ଆସିଲା, ସେହିଦିନ ତଥାପି ତା ଆଖିରେ ଲୁହ ଦେଖା ଯାଇଥିଲା ।

ଏତେ ଦିନର ସ୍ନେହ, ମମତା ବୋଲା ଗାଆଁର ବନ୍ଧନ କ'ଣ ସହଜରେ କାଟି ହୁଏ ?

ସେହି ଦିନରୁ ଏଇଠି ପଡ଼ିଛି । ସେଇ ଗୋଟିଏ ଚିନ୍ତା; ଭରତ ପାଠ ପଢ଼ୁ, ମଣିଷ ହେଉ । ସେ ଭଲରେ ରହୁ । ସେ ଯେମିତା ତା ପାଇଁ ଭାବୁଛି କିନ୍ତୁ ଭରତର କ'ଣ ଟିକିଏ ଦୟା ଅଛି ?

ଆଖିରୁ ଲୁହ ପୋଛୁ ପୋଛୁ କୁନ୍ତଳା ଭାବିଲା—ପଣ୍ଡିତମାନେ ଯାହା କହିଛନ୍ତି ସତ । ପାଣି ଉପରୁ ତଳକୁ ଗଡ଼ଯାଏ । ସ୍ନେହ କନିଷ୍ଠା ସିମିତ୍ତ । ଲୋଭ ମମତା ମଧ୍ୟ ଏକାପରି । ଯିଏ ଯାହାକୁ ଯେତେ ସ୍ନେହ କରେ ତାର ପାଇଁ ମନରେ ସେତିକି ଅମଙ୍ଗଳ କାମନା ଅହେତୁରେ ବସା ବାନ୍ଧେ ।



ମାଈପି ଝିଅର ଶତ୍ରୁ ହେଉଛି ରୂପ ।

ଯିଏ ଦେଖିବାକୁ ଯେତିକ ସୁନ୍ଦର ତାହା ପାଇଁ ସେତିକ ବିପଦ ଥୁଆ ହୋଇଥାଏ । ସୁନ୍ଦର ପଦାର୍ଥକୁ ସମସ୍ତଙ୍କର ଶ୍ରଦ୍ଧା । ତୋଳିନେବା ପାଇଁ ସମସ୍ତେ ହାତ ବଢ଼ାନ୍ତି । ଯିଏ ପାଇପାରେ ସେ ବିଜୟୀ ହୁଏ । ତା ଉପରେ ଅହଂକାର ହସରୂପରେ ଫିଟିପଡ଼େ । ଆଉ ଯିଏ ଫେଲ୍ ମାରେ ତାର ମନ ଈର୍ଷାର ନୀଳ ବିଷରେ ଜଳିପୋଡ଼ି ମରିଯାଉଥାଏ । ସେ ଓର ଉଣ୍ଡୁଥାଏ କିପରି ଦାଉ ସାଧିବ । ପ୍ରତିଶୋଧ ନେବା ମନୋବୃତ୍ତି ତାର ଶାନ୍ତି ପାଏ ବଦ୍‌ନାମ ସୃଷ୍ଟିକରି । ବେନାମୀ ଚିଠି ଦେଇ, କାନ୍ଥବାଡ଼ମାନଙ୍କରେ ଲୁଚିଛପି ତାକୁ କେନ୍ଦ୍ରକରି ଅଶ୍ଳୀଳ ଇଙ୍ଗିତମାନ ଲେଖି ଶସ୍ତା ବାହାଦୁରୀ ନିଏ । ମନର ଓରମାନ ମେଣ୍ଟାଏ ।

ସେଇ ରୂପ ଦିନେ କୁନ୍ତଳାର ଭଗାରି ହେଲା । ପିଲାଟିଦିନରୁ ଦେଖିବାକୁ ସେ ମନ୍ଦ ନ ଥିଲା । ତାକୁ ଯିଏ ଦେଖୁଥିଲା ସେ କହୁଥିଲା— ଖତଗଦାରେ ପଦ୍ମ ଫୁଲଟିଏ ଫୁଟିଛି । ତାର ଅପରିଛନ୍ନିଆ ପୋଷାକ, ମଇଳା ଦେହ, ଭୁରୁଭୁରୁ ମୁଣ୍ଡକୁ ଦେଖିଲେ ମନରେ 'ଆହା'ପଦ

ଉକୁଟାଇ କେତେକ କହନ୍ତ—"ମାଣିକ ଯାଏ ଯେବେ ଚଣ୍ଡାଳ ସାଙ୍ଗ, ପିଟନ୍ତ ତାକୁ ଗୋରୁ ହାଡ଼େ ନଠେଇ" । ସେଇମିତ ସାରିଆ ପାଲୁଣୀ କୋଳରେ କୋଉ ବଧାତାକୁ ଲଜ ନଥିଲା ଏପର ଅପସର୍ଗକୁ ଗୁଞ୍ଜି ଦେଲା ?

ପିଲାଦିନେ କୁନ୍ତଳାର ସାଙ୍ଗ ଥିଲେ ବେଙ୍ଗୁଲି ଚେମୀ, ଶୋଭା, ଧୋବଣୀ, ଝଭ ପ୍ରଭୃତ । ସମସ୍ତଙ୍କ ସାଙ୍ଗରେ ସେ ଖେଳେ, ହସେ, ବୁଲେ । ଇସ୍କୁଲ ପାଠ ପଢ଼ୁଥିଲାବେଳେ ମଧ୍ୟ କାହାକୁ ପର ଭାବେ ନାହିଁ । ସମସ୍ତଙ୍କୁ ଆପଣାର କରେ । ତଥାପି ବେଙ୍ଗୁଲି କହବାର କେତେଥର ସେ ଶୁଣିଛ -ମାଆଲୋ, ସୁନ୍ଦରୀ ବୋଲ ଝିଅର କେତେ ଗର୍ବ ! ବଡ଼ ଫୁଲେଇଟାଏନ । ଖେଳବାକୁ ନଦ ତା ଘରକୁ ଡାକବାକୁ ଗିବ—ହଁ, ଯାଉଛୁ କହ କହ ଦ'ଘଣ୍ଟା ବତାଇ ଦେବ

ଶୋଭା ବ ତାକୁ ଭଲ ପାଏ ନାହିଁ । ଆଗରେ ନ କହିଲେ ପଛରେ କହେ—ପାଠ ପଢ଼ୁଛୁ ବୋଲ ଝିଅ ଚନ୍ଦ୍ର ଚନ୍ଦ ମାନୁ ନାହିଁ । ଯେତେ-ହେଲେ ଆମେ ଶ୍ରେଷ୍ଠ ଲୋକ, ଜାତରେ ପାଣ, ଆମେ ଜାଣୁ ଜାଣୁ ବ୍ରାହ୍ମଣ, କରଣ ପିଲାଙ୍କ ସଙ୍ଗରେ ମିଶିବା ? ମୋ ମାଆ କହୁଥିଲା, ଏଇଥିରେ ଯେଉଁ ପାପ ହୁଏ ତାହା ସାତ ଜନ୍ମରେ ସୁଦ୍ଧା କ୍ଷୟ ହୁଏ ନାହିଁ । ପୋଥି ପୁରାଣରେ ଯାହା ଲେଖା ଅଛି ତାହା କ'ଣ ମିଛ ? ଆମ ଜନମ ଆଗରୁ ଏଡ଼େ ଏଡ଼େ ପଣ୍ଡିତମାନେ ଏଗୁଡ଼ାକ କ'ଣ ଗଞ୍ଜେଇ ଧୂଆଁ ଖାଇ ଲେଖିଯାଇଛନ୍ତ ? ଆମଆଡ଼ୁ ଆମେ ନ ମାନିଲେ ସେ ପାତକ କାହା ମୁଣ୍ଡରେ ଲାଗିବ ?

ଚେମୀ କହେ ମୋ, ମାଆକୁ ଆସି ସେଇ ଲୋଚନା ମାଷ୍ଟ୍ର ହାକୁଳେଇ କର କହଲା, ଆଲୋ, ତୋ ଝିଅକୁ ଇସ୍କୁଲକୁ ପଠା । ସେ ପାଠ ପଢ଼ିବ । ମୋ ମାଆ କ'ଣ କହିଲା ଜାଣୁ ?

ବଡ଼ ବଡ଼ ଆଖି କର ସମସ୍ତେ ଚେମୀ ମୁହଁକୁ ଚାହିଁ ରହନ୍ତ । ଚେମୀ ପୁଣି କହବା ଆରମ୍ଭ କରେ ମୋ ମାଆ କହିଲା— ସାନ୍ତେ, ଭଲ କଥା କହବା ହେଲେ । ହେଲେ ମୋ ଝିଅଭଳ ଯଦ ଏଇ ପ୍ରାଣ

ସାଇପାକର ଝିଅ ପାଠ ପଢ଼ିବାକୁ ଯିବେ, ତେବେ ଚୁଲି, ବାଉଁଶିଆ ବୁଣିବ କଏ ? ବିଲରେ ନଇଁପଡ଼ି ରୁଆ, ବଛା, କରିବେ କେଉଁମାନେ ? ଏଇଥି ପାଇଁ ବିଧାତା ଆମ କପାଳରେ ପାଠ ଲେଖିନାହିଁ । ଆମ ପିଲେ ପାଠ ନପଢ଼ିଲେ ଇସ୍କୁଲ ଉଠିଯିବ ନାଇଁମ...

କଚକଚ ହୋଇ ହସି ଉଠିଲେ ସମସ୍ତେ ।

ନେଶାଖି କହେ ବୁଢ଼ାଟା ଠିକ୍ ଯାଗେ ପାଇଲା । ମୁହଁ ନାକ ପଡ଼ି ଯାଇଥିବ । ଏକଦମ୍ ଚାଲିଯାଇଥିବ ଯେ ଆଉ ପଛକୁ ଫେରି ଚାହିଁ ନଥିବ ।

କୁନ୍ତଳାକୁ ଦେଖିଲେ ସମସ୍ତେ ଚୁପ୍‌ଚାପ୍ ହୋଇଯାଆନ୍ତି କଥାକୁ ଏଣେ ବୋଲି ସେଣେ ବାଆଁରନ୍ତି । କୁନ୍ତଳା ସବୁ ଶୁଣେ, ଚୁପ୍ ରହେ ।

ପିଲାଦିନରୁ କୁନ୍ତଳା ତାର ବାପାକୁ ଦେଖି ନାହିଁ । ଲୋକଙ୍କ ଭୁଣ୍ଡରୁ ଯାହା ଶୁଣେ ବାପ ତାର ଯାଜନ ଖଟିବାକୁ କଲିକତା ଯାଇଥିଲା ଯେ ଆଉ ଫେରି ନାହିଁ । ମାଆ ତାର ସବୁ । ସାଉକାରଙ୍କ ଘରେ ମୂଲ ପାଇଟି କରେ । ଯାହା ଆଣେ ସେଥିରେ ଦୁହେଁ ଚଳନ୍ତି ।

ଷୋଳଟି ଫଗୁଣ କେତେବେଳେ ଆସି କୁନ୍ତଳା ଘର ବାଡ଼ପଟରେ ନାଚି ଚାଲିଗଲେ ସେ କଥା ତାକୁ ଜଣା ନ ଥିଲା । ମାଆ କାନ୍ଥ ଯେଉଁଦିନ ତାକୁ ଆକଟି ବସିଲା, ସେହିଦିନ ନିଜ ମୁହଁକୁ ସେ ଦର୍ପଣ ଆଗରେ ଆଉ ଥରେ ନଟେଇ କରି ଦେଖିଲା । ପ୍ରକୃତରେ ସେହିଦିନ-ଠାରୁ ଭୁହାକୁ ଭୁହା ନିଜ ରୂପକୁ ଦେଖିବାକୁ ତାକୁ କିପରି ଭଲ ଲାଗିଲା । ଭୁଭୁରୀ ମୁଣ୍ଡକୁ ଓଲେଇ ନେବାକୁ ଇଚ୍ଛା ହେଲା । ମୁଣ୍ଡରେ ରହିଲା ଜଡ଼ା ମାଲପା ଟିକିଏ ମାରି ଚିକ୍‌କଣ କରି ସୁନ୍ଦାଣି ଭିଡ଼ିଲା । ମୁଣ୍ଡରେ ନାଲି ଟିକିଲିଟିଏ ମାରିଲା ଆଉ ଆଖି ତଳେ ମରୁ କଜ୍ଜଳର ଲାଞ୍ଜି ଟାଣିଦେଇ ମାଆ ନଥିବାବେଳେ ଦାଣ୍ଡ ଦୁଆରେ ବେଳେବେଳେ ଠିଆ ହେଲା ।

ଦାନକର ଏଇମିତି ବେଶ ହୋଇ ଦାଣ୍ଡ ଦୁଆରେ ଠିଆ ହୋଇଛି, ମାଆ ତାର ଭିତରକୁ ପଶି ଆସିଲା । ତାକୁ ଏକା ଆଖିରେ ଘଡ଼ିଏ ଖଣ୍ଡେ ଚାହିଁ ରହିଲା । କୁନ୍ତଳା ମନେମନେ ପ୍ରମାଦ ଗଣୁଥିଲା-ବେଳେ ମାଆ କ'ଣ କଲା ନା, ତାକୁ ଛାତିକୁ ଆଉଜାଇ ନେଇ ସୁଁ ସୁଁ ହୋଇ କାନ୍ଦ ଉଠିଲା । ମାଆ ଆଖିରୁ ଟପ୍ ଟପ୍ ହୋଇ ଦୁଇବୁନ୍ଦା ଲୁହ ତା'ର ଗାଲରେ ପଡ଼ିବାରୁ ମୁହଁ ଟେକି ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲା—ମାଆ, ତୁ କାନ୍ଦୁଛୁ !

ମାଆ ତାର ମୁଣ୍ଡକୁ ଆଦରରେ ସାଉଁଳେଇ ଦେଇ କହିଲା—କାନ୍ଦୁନି ଲୋ ମାଆ, ଭାବୁଛି । ଗରିବ ଘରେ ଜନ୍ମ ହୋଇ ତୁ ସୁନାକପାଳୀ ହୋଇଗଲୁ । ଝିଅ ଜନମ ତ ପର ଘରକୁ । କିନ୍ତୁ ତୋତେ କପରି ପର ଘରକୁ ଛାଡ଼ିଦେଇ ମୁଁ ସମ୍ଭାଳି ହେବ ? ଏ ଘର ମୋତେ ଖାଁ ଖାଁ ଖାଇ ଗୋଡ଼ାଇବ । ଏଇ କଥା ଭାବ ଯେତିକି ଧାରି ହେଉଛି ସେତିକି ଭାବୁଛି ଯାହା ଅର୍ଜୁଛି ସେତକ ତ ବାସୀଓଳିକି ନଅଣ୍ଟ, ସେଥିରେ କଣ ଦେଇ ତୋତେ କାହା ଘରକୁ ବୋହୂ କରି ପଠାଇବି ?

ମାଆ ଆଖିରୁ ଲୁହ ପୋଛି କୁନ୍ତଳା କହିଥିଲା—ତୁ ଏତେଗୁଡ଼ାଏ କଥା ବାପୁଣୀଙ୍କ ଭଳି କ'ଣ ଗପୁଛୁ ? ମୁଁ ତୋତେ ଛାଡ଼ି କୁଆଡ଼େ ଯିବି ନାହିଁ ।

—ତୁ କ'ଣ ମୋତେ ଛାଡ଼ିକରି ଯିବୁ ? ବିଧାତା ସର୍ଜନା ଏପରି ଯେ ସେମାନେ ଆସି ତୋତେ ମୋ କୋଳରୁ ଛଡ଼ାଇ ନେବେ । ଯେତେ ଯାହା କହ ଝିଅଗୁଡ଼ାକ ପର ଘରର ଦରବ । ବଅସ ହେଲେ ପର ଘରକୁ ଉଡ଼ିଯିବେ । ଗୋଟାଏ ଦୀର୍ଘନିଃଶ୍ୱାସ ଟାଣି ମାଆ କହିଲା ।

ହସିଦେଇ କୁନ୍ତଳା କହିଥିଲା—ଦେଖିବା ଭଲା, କାହାର ଏତେ ସାହାସ, ସେ ମୋତେ ମୋ ମାଆ କୋଳରୁ ଛଡ଼ାଇ ନେବ ?

ମାଆ ତାହାର ଅବୋଧ ପଣିଆଁ ଦେଖି ହସି ଦେଇଥିଲା । କିନ୍ତୁ ପିଲାଳିଆ କଥା ଭାବି ଯାହାକୁ ସେ ହସରେ ଉଡ଼ାଇ ଦେଇଥିଲା

ତାହା ପ୍ରକୃତରେ ସତ ହେଲା । ମାଆ ମରିବା ପର୍ଯ୍ୟନ୍ତ ତା ଆର ପାଖରେ ରହିଲା । କୁନ୍ତଳାକୁ କେହି ତା'ର କୋଳରୁ ଅନ୍ତର କରି ପାରିଲେ ନାହିଁ ।

ପଛ କଥା ସବୁ ଗୋଟି ଗୋଟି ହୋଇ ମନେ ପଡ଼ୁଛି । ମାଆ ଯେତେବେଳେ ତା ପାଇଁ ବରପାତ୍ର ଖୋଜିବାରେ ଲାଗିପଡ଼ିଥାଏ ହଠାତ୍ ଦିନେ ଅପ୍ରତ୍ୟାଶିତ ଭାବରେ 'ମାଉସୀ', 'ମାଉସୀ' ଡାକି ଘର ଭିତରକୁ ପଶି ଆସିଲେ ଦୁଷ୍ମନ୍ତବାବୁ । ସୁନ୍ଦର ଚେହେରା ଶତ୍ରୁ ହେଲେ ମଧ୍ୟ ଘଡ଼ିଏ ଚାହିଁ ରହିବ । କେଉଁ ଗାଆଁରେ ତାଙ୍କର ଘର ତାହା ସେ ଜାଣି ନଥାଏ । କେବଳ ଏତିକି ଶୁଣିଥାଏ ଯେ ଜଣେ କଲେଜ ପଢ଼ୁଆ ବାବୁ ପାଠ ପଢ଼ା ଛାଡ଼ିଦେଇ ଆସି ତାଙ୍କ ଗାଆଁ ଭାଗବତ ଟୁଙ୍ଗୀରେ ରହୁଛନ୍ତି । ଲୋକମାନଙ୍କୁ ଭଲ ମଣିଷ ହେବାକୁ ପ୍ରବର୍ତ୍ତାଉଛନ୍ତି । ପର ଆପଣା ଭାବ ଆଦୌ ତାଙ୍କର ନାହିଁ । ଛୁଆଁ ଅଛୁଆଁ, ଅଳିଆ, ଅସକରା, ଅପରିଚ୍ଛନ୍ନିଆ ବୋଲି କାହାକୁ ଘୃଣା କରୁ ନାହାଁନ୍ତି । ଏଇ ଗାଆଁରେ ଯେତେ ବୁଢ଼ା ବୁଢ଼ୀ ଅଛନ୍ତି, ସମସ୍ତେ ତାଙ୍କର ମଉସା, ମାଉସୀ ଆଉ ଅନ୍ୟ ସମ୍ଭବ ଭାଇ ଭଉଣୀ ।

ଦୁଷ୍ମନ୍ତବାବୁ ଯେତେବେଳେ କଲେଜ ପାଠ ପଢ଼ା ଛାଡ଼ି ତାଙ୍କ ଗାଆଁରେ ଝଣ୍ଡା ଧରି ଆସି ପହଁଞ୍ଚିଲେ ସେତେବେଳେ ଇଂରେଜ ସରକାର ଏ ଦେଶକୁ ଶାସନ କରୁଥାନ୍ତି । ଗାନ୍ଧି ମହାତ୍ମାଙ୍କ ଡାକରାରେ ସମସ୍ତ ଦେଶବାସୀ ସ୍ୱରାଜ ଆନ୍ଦୋଳନ ପାଇଁ ପାଗଳ ହୋଇ ଉଠିଥାନ୍ତି "ବନ୍ଦେ ମାତରମ୍"—ଆଉ "ଇନ୍‌କିଲାବ୍ ଜିନ୍ଦାବାଦ୍" ଧ୍ୱନିରେ ଆଖ ପାଖ ପାଞ୍ଚଖଣ୍ଡ ଗାଆଁ କମ୍ପି ଉଠୁଥାଏ । ସେଥିପାଇଁ ଦଳ ଦଳ ଲୋକଙ୍କୁ ପୁଲିସ ଆସି ବାନ୍ଧି ନେଇ ଯାଉଥାନ୍ତି ।

ଗାଆଁରେ ଯେଉଁଦିନ ପ୍ରଥମ କରି ଗୋଟାଏ ଶୋଭାଯାତ୍ରା ଇଂରେଜ ସରକାର ବିରୁଦ୍ଧରେ ସ୍ଲୋଗାନ ଦେଇ ବାହାରିଲା ଲୋକମାନଙ୍କ ପାଟି ଶୁଣି କୁନ୍ତଳା ଘର ଭିତରୁ ବାହାରି ଆସି ଦାଣ୍ଡ ଦୁଆରେ ଠିଆ ହୋଇ ପଡ଼ିଥିଲା । ଦେଖିଲା ତାଙ୍କ ଗାଆଁର ବୁଢ଼ାଠାରୁ ଭେଣ୍ଡିଆ ସମସ୍ତଙ୍କ ହାତରେ ବେଇପିନ୍ ଡାଙ୍ଗ ଦେହରେ

ଖଣ୍ଡିଏ ଖଣ୍ଡିଏ ଛୋଟ ଛୋଟ ତିରଙ୍ଗା ପତାକା । ଆଜି ସମସ୍ତଙ୍କ ଆଗରେ କାନ୍ଧରେ ଗୋଟାଏ ଲମ୍ବା ଖଦଡ଼ର ଝୁଲା ମୁଣା ଝୁଲାଇ, ଖଦଡ଼ ଲୁଗା, ପଞ୍ଜାବୀ ପିନ୍ଧି ଯିଏ ଏଇ ଶୋଭାଯାତ୍ରାକୁ ନେତୃତ୍ୱ ଦେଉଥିଲେ ସେ ଏ ଗାଆଁର ଲୋକ ନୁହଁନ୍ତି । ସଂପୂର୍ଣ୍ଣ ଅପରିଚିତ । ସେଦିନଠୁ ତାଙ୍କୁ ସେ ନୂଆକରି ଦେଖିଲା ।

ପିଣ୍ଡା ଉପରେ ନୁଆଁଣିଆ ଖୁଣ୍ଟ ଲ ଛୁଅଁକୁ ଧରି ସେ ଶୋଭାଯାତ୍ରାକୁ ନିଇଁ କରି ଦେଖିବା ଭିତରେ କେତେବେଳେ ଯେ ସେଇ ଅଜଣା ବାବୁ ଜଣଙ୍କୁ ସେ ଏକ ଲୟରେ ଚାହିଁ ରହିଛି, ତାହା ତାକୁ ଜଣା ନଥାଏ । ଆଜି ସେ ବାବୁ ଜଣକଙ୍କ ପାଟିରୁ ଅଭ୍ୟାସ ବଶତଃ 'ବନ୍ଦେ ମାତରମ୍', 'ଇନ୍‌କିଲାବ' ଧ୍ୱନି ସିନା ବାହାରୁଥାଏ କିନ୍ତୁ ତାଙ୍କ ଆଖି ଦୁଇଟା ତା ପାଖରେ ଲାଖି ରହି ଯାଇଥାଏ ।

ଭୁଣ୍ଡ ସିନା କଥା କହେ କିନ୍ତୁ କୁନ୍ତଳା ସେଦିନ ଅନୁଭବ କରିଥିଲା ଆଖି ମଧ୍ୟ କଥା କହିପାରେ ଓ ବୁଝିପାରେ । କୁନ୍ତଳାକୁ କମିତି କମିତି ଲାଗିଲା । ଶୋଭାଯାତ୍ରା ତାଙ୍କ ଦାଣ୍ଡଦୁଆର ଟପି ଯିବା ପରେ ସେ ଘର ଭିତରକୁ ଲାଜରେ ଦୌଡ଼ି ପଳାଇଥିଲା ।

ମନେ ପଡ଼ିଲା କୁନ୍ତଳାର । ଦିନେ ଚେମ୍ପୀ କହୁଥିଲା—ସେଇ ଯେଉଁ ଦୁଷ୍ମନ୍ତ ବାବୁ ସେ ଜଣେ ବଡ଼ ଲୋକର ପୁଅ । ତାଙ୍କ ବାପାଙ୍କର ନାହିଁନଥିବା ସଂପତ୍ତି, କେତେ କୋଠାବାଡ଼ି । କିନ୍ତୁ ସେ ସବୁକୁ ସେ ଗୋଡ଼ରେ ଠେଲି ଦେଇ ଗୋରା ସରକାର ବିରୁଦ୍ଧରେ ଲାଗିଛନ୍ତି । ଏଇମିତି ଜଣେ ନିର୍ଲୋଭ ପୁରୁଷ କ'ଣ ସହଜରେ ମିଳନ୍ତି ? ଖୋଜିଲେ ଅବା କୋଟିକରେ ଗୋଟିଏ ଥାଇ ପାରନ୍ତି ।

ଟେମ୍ପୀ କହିଲା—ସେ ମଣିଷ ନୁହଁନ୍ତି ଲୋ, ଦେବତା । ଶୁଣିବୁ ? ସେଦିନ ମୋ ଭାଇକୁ ଜର ହୋଇଥିଲା । ତାତିରେ ଖାଇ ଫୁଟୁଥିଲା । ଖବର ଯେମିତି ପାଇଛନ୍ତି ଆମ ଘରେ ପହଞ୍ଚିଗଲେ । ଚିହ୍ନା ନାହିଁ ପରିଚୟ ନାହିଁ, କେଉଁ କେତେ କାଳର ବନ୍ଧୁ ଭଳି ଭାଇକୁ ଔଷଧ ଦେଲେ । ରୋଗ ବଇରାଗ ବିଷୟରେ ଆମମାନଙ୍କୁ କେତେ କଥା

ବୁଝାଇଲେ । ଜର ଗୁଡ଼ିଲା; ତେବେ ଯାଇ ଆମ ଘରୁ ସେ ପାଦ କାଢ଼ିଲେ ।' ବଡ଼ ଉପକାରୀ ପୁରୁଷ ।

ଶୋଭା କହିଲା : ସାନ ବଡ଼ ଭେଦ ଭାବ ତାଙ୍କର ଆଦୌ ନାହିଁ ଲୋ । ଏଇମିତି ଦିନେ କୁହା ନାହିଁ ପୋଛା ନାହିଁ ଆମ ଘର ଭିତରକୁ ପଶି ଆସିଲେ । ବରଣ୍ଡା ଉପରେ ସେଇମିତି ବସିପଡ଼ି କହିଲେ ମାଉସୀ ଭୋକ ଲାଗିଲାଣି, ହାଣ୍ଡିରେ ଯାହା ଅଛି କଂସାରେ ବାଢ଼ି ଆଣ । ମାଆ ମୋର କଣ କରିବ ? ଆମ ଘରେ ସେଦିନ ପଖାଳ ଭାତକୁ ସୁନୁସୁନିଆ ଶାଗ ଖରଡ଼ା ଥାଏ । ମାଆର ସାହାସ କୁଳାଇଲା ନାହିଁ । ଏଭଳି ଲୋକଙ୍କୁ ସେଗୁଡ଼ାକ କିପରି ବାଢ଼ିଦେବ ? କିନ୍ତୁ ସେ କ'ଣ ଛାଡ଼ିବା ଲୋକ । ସେ ସଙ୍ଗେ ସଙ୍ଗେ କହିଲେ ପାଠ କହୁଛି ପରା —ଆହାରେ ଭଲମନ୍ଦ ନାହିଁ, ଯେଉଁଠାନେ ଯେମନ୍ତ ମିଳଇ । ତେଣୁ ତୁମେ ଯାହା ଘରେ ରଖିଛ, ତାକୁ ଦିଅ । ସେତିକି ମୋର ଅମୃତ ।

ଲାଜ ଲାଜ ହୋଇ ମାଆ ସିଲଭର କଂସାରେ ପଖାଳ ଆଣି ଥୋଇଲା । ପଖାଳ ସହିତ ଶାଗ ଲଗାଇ ଖାଇଲେ । ତୋରାଣିତକ ଢକଢକ କରି ପିଇଦେଲେ । ସତେ କି ଅମୃତ ! ଏତେ ବଡ଼ ଏଉଡ଼ିଟାଏ ଗୁଣ୍ଡ ଘରୁ ଗୁଲିଗଲେ ।

ସେ ଗିବା ପରେ ମୋ ମାଆ କହିଲା : କୁଳକ ଗୁଡ଼ିଲ କୁକୁରକୁ ଦେଇ ଦେଶ ପାଇଁ ଏ କିଆଁ ବାବାଜୀ ହୋଇ ବୁଲୁଛି ? କ'ଣ ପାଇବ ସେଥିରୁ ?

ସାଇପାକର ଘର ତାଙ୍କ ନିଜର । କାହା ଘରକୁ ଗିବାକୁ ତାଙ୍କୁ ବାରଣ ନଥାଏ । ଲୋକଟାର ଚେହେରା ଯେପରି, ମନ ବି ସେହିପରି । ବେଙ୍ଗୁଲି କହିଲା ବାପାଟା ମୋର ସବୁଦିନ ନିଶାପାଣିରେ ମଜୁରି ଗଣ୍ଡାକ ଉଡ଼ାଇ ଦେଇ ଆସେ । ଦିନେ ମଦ ଖାଇ ବେହୋସ ହୋଇ ଗୋହିରୀ ମୁଣ୍ଡରେ ପଡ଼ିଥିଲା । ଉଠାଇ କରି ତାକୁ ବାବୁ ଆଣି ଘରେ ଛାଡ଼ିଲେ । ତା ପରଦିନ ସୂର୍ଯ୍ୟ ନ ଉଇଁଣୁ ଆସି ଆମ ଘରେ ହାଜର । ମଦ ଖାଇବା କେତେ ଅହିତକର ତାହା ସେ

ବାପାକୁ ଘଣ୍ଟାଏକାଳ ବସି ଗୋଟି ଗୋଟି କରି ବୁଝାଇଲେ । ମଦ ଆଉ ନ ଖାଇବା ପାଇଁ ତାଙ୍କ ମୁଣ୍ଡ ଛୁଆଁଇଲେ । କେତେ ଉପଦେଶ ଦେଲେ । ଆଉ ଯିଏ ହୋଇଥିଲେ ସେ କ'ଣ ତାଙ୍କ କଥା ଅମାନତ ହୋଇଥାନ୍ତା । ମୋ ବାପଟା ମଣିଷ ନୁହେଁ, ପୁଣି ଯୋଉ ମଦକୁ, ସେଇ ମଦ ।

କୁନ୍ତଳା ସମସ୍ତଙ୍କ କଥା ଶୁଣୁଥାଏ । ମନେ ମନେ ସେତେବେଳେ ଭାବୁଥାଏ; ଏଇ ରୂପର ଯୁବକଟି ଯାହାର ଏତେ ଗୁଣ, ତାଙ୍କ ପାଇଁ କ'ଣ ତା'ର ଦୁଆର ମନା ହୋଇଛି ? କାହିଁ, ଦିନକ ପାଇଁ ସେ ତାଙ୍କ ଘରକୁ ତ ଆସୁ ନାହାନ୍ତି ?

ପୁଣି ମନେ ମନେ ଭାବେ ଯେଉଁଠି ଦରକାର ଥିବ ସେଠାକୁ ସେ ଯିବେ । କୁନ୍ତଳା ଘରେ କ'ଣ କାହାକୁ ଜର ହୋଇଥିଲା ? ତା ବାପା କ'ଣ ଅଛି ଯେ ମଦ ଖାଉଛି ? ଆଉ··· । ଆଖି ବୁଜି ବୁଜି ସେ ଭାବିଲା ତାଙ୍କୁ କ'ଣ ଭୋକ ହେଉନାହିଁ ? କିଛି ନହେଲେ ତାଙ୍କ ହାଣ୍ଡିରେ ସଜ ପଖାଳ ଭାତ, କରେଇରେ ମଦରଙ୍ଗା ଶାଗ ଭଜା ତ ଅଛି ···ତଥାପି କାହିଁକି ଆସୁ ନାହାନ୍ତି । ସେ କ'ଣ ଏ ସାହିରୁ ବାହାର ? ହସି ହସି ବୋକାଙ୍କ ଭଳି କୁନ୍ତଳା ସେଦିନ ସାଙ୍ଗମାନଙ୍କୁ କହିପକାଇଲା ତୁମ ସଭିଙ୍କ ଘରକୁ ସେ ବାବୁ ଯାଉଛନ୍ତି, ଆଉ ମୁଁ ତ କାଇଁ ଦିନକ ପାଇଁ ତାଙ୍କୁ ଦେଖି ନାହିଁ ।

ତିନ ଚାରିଜଣ ସାଙ୍ଗ ହସି ଉଠି କହିଲେ ତୋ ଭାଗ୍ୟ କମ୍ପା ତାଙ୍କ କପାଳ ଭଲ । ସେ ଯେଉଁଦିନ ତୁମ ଏରୁଣ୍ଡି ବନ୍ଧ ଡେଇଁବେ, ସେହିଦିନଠାରୁ ତାଙ୍କୁ ଆମ ଶାଗ ପଖାଳ ଆମ୍ବିଳା ଲାଗିବ । ଆଉ ସମସ୍ତଙ୍କ ଘରକୁ ଯିବା ଆସିବା ବନ୍ଦ ହୋଇଯିବ ।

—କାହିଁକି ?

—ଅଜାଣି ଘର ଚୂଉଲରେ ଭାତ ଖାଇଲା ପରି କୁନ୍ତଳା କଥାକୁ ଶୁଣିମ । ଆଲୋ ତୋର ଯେଉଁ ରୂପ ନା, ସେଥିରେ ଯୋଗୀଋଷୀ ତ ତପ ଭାଙ୍ଗି ବସିବେ ଆଉ ସହଜରେ ସେ'ତ ଟୋକାଟାକଲା । ଯଦି ଭୁଲି ରହି ଯାଆନ୍ତି ନା······ !

ଲାଜରେ ଝାଉଁଳି ପଡ଼ିଲା କୁନ୍ତଳା । କହିଲା : ନିଜ ମୁହଁ କ'ଣ ଆରସିରେ କେହି ଦେଖୁ ନାହିଁ କଣେ ? ତୁମେମାନେ କ'ଣ ରୂପରେ କମ୍ କି ? କଥାରେ ସେଥିପାଇଁ କହନ୍ତି—ଗୋବରଗଦା ଗୋଡ଼ ତଳକୁ ଅନା ।

ପ୍ରେମି କହିଲା : ଗଛ ଫୁଟିଲେ ଫୁଲ ହୁଏ । କିନ୍ତୁ ସବୁ ଫୁଲ କ'ଣ ସମାନ ? କେଉଁଟା ଗୋଲାପ ହେଲେ, କେଉଁଟା କୁରେଂଇ ତ ଆଉ କେଉଁଟା ପଳାଶ ।

ହସି ଉଠିଲା ବେଙ୍ଗୁଲି ।

ଶୋଭା କହିଲା :' ମନ ଯେତେବେଳେ ଠାଣି ହେଲାଣି ଦେଖିବୁ ଖାଲି ଠିକଏ ଦୃଷ୍ଟି ପଡ଼ିଲେ ସେ ଆପେ ଆପେ ଯିବେ । ସେ କେଉଁଦିନରୁ ତୁମ ଘରକୁ ଯାଆନ୍ତେଣି ଯେ, ମାଆ ତୋର ତ ତୋତେ ପିଞ୍ଜରା ଭିତରେ ରଖିଛି ଯେ ଆମେ ସାଙ୍ଗମାନେ ଦେଖାଦର୍ଶନ ପାଇବା ସାତ-ସପନ ହୋଇ ପଡ଼ୁଛି । ସେଥିରେ ତାଙ୍କ କଥା ପଚାରେ କିଏ ? ଭାନୁମତୀ ପେଡ଼ି ଯିଏ ଖୋଲିବ ସେ ତୋତେ ଯାଇଁ ଦେଖିପାରିବ······ ।

ଶୋଭା କଥା ସେଦିନ ସତ ହେଲା । ପିଞ୍ଜରା ଭିତରୁ ଫିଟି ଦାଣ୍ଡ ପିଣ୍ଡାକୁ ସେ ନ ଆସେ କି ଦୁଇ ଚକ୍ଷୁର ମିଳନ ନ ହୁଏ । ନରେନ୍ଦ୍ର ସେ ତ ବୁଲା ଫକୀର ଥିଲେ । ଦିନ କେତେଟା ପରେ ତାଙ୍କ ଝୁଲିମୁଣିକ ଧରି ସେ ଏ ଗାଆଁକୁ ଯିମିତି ଆସିଥିଲେ ସେଇମିତି ଚାଲି ଯାଇଥାନ୍ତେ । ଆଉ କେଉଁ ଗାଆଁରେ ତାଙ୍କର ଆସ୍ଥାନ ଜମେଇ ଥାଆନ୍ତେ ।

ଦୁଷ୍ମନ୍ତକୁମାର, ରୂପକୁ ଗୁହିଁ ସତେ ଯେପରି କିଏ ନାଁ ଦେଇଥିଲା । ମଣିଷ ତ ନୁହନ୍ତି, ଗନ୍ଧର୍ବ । କି ସୁନ୍ଦର ରୂପ, କି ମଧୁର ହସ, କି ସୁଠାମ ଚାଲି, କି ମଧୁର ଚଳଣୀ । ସବୁଥିରେ ଯେପରି ନୂଆ ନୂଆ କିଛି ଦେଖିବାକୁ ପାଇଲା । ମାଆ ବି ଦିନେ କହୁଥିଲା ଏଇ ଯେଉଁ ନୂଆ ବାବୁଟି ଆସିଛି, ସଦା ସର୍ବଦା ଲୋଚନ ମାଷ୍ଟ୍ରଙ୍କ ପାଖରେ ବସୁଛି । ତାଙ୍କର ସହିତ କଥାବାର୍ତ୍ତା ହେଉଛି । ଲୋଚନ ମାଷ୍ଟ୍ରଙ୍କ ପ୍ରତି ତାଙ୍କର ଭକ୍ତି

ଦେଖିଲେ ଯିଏ କହିବ ଆର ଜନ୍ମରେ ବୋଧହୁଏ ଦୁହେଁ ବାପ, ପୁଅ ଥିଲେ ନା କ'ଣ ?

ସମସ୍ତଙ୍କ ତୁଣ୍ଡରେ ପ୍ରଶଂସା । ଗୁହଆଡ଼ୁ 'ଭଲ' 'ଭଲ' ଖବର । ଏହିଭଳି ପରିସ୍ଥିତିରେ ଦିନେ ଦୁଷ୍ମନ୍ତବାବୁ ଅହେତୁକ ଭାବରେ 'ମାଉସୀ' 'ମାଉସୀ' ଡାକି ଘର ଭିତରକୁ ପଶି ଆସିଥିଲେ । ସେତେବେଳେ ମାଆ ଘରେ ଥାଏ । ତାଙ୍କୁ ଦେଖି ସେ ଟିକିଏ ସରମିଗଲା । କୁନ୍ତଳା ମଧ୍ୟ ଘର ଭିତରୁ ଲାଜରେ ବାହାରୁ ନଥାଏ ।

କାହାକୁ ଅପେକ୍ଷା ନାହିଁ । ଆପେ ବାରଣ୍ଡା ଉପରେ ଥୁଆ ହୋଇଥିବା ହେଁସଟା ପାରିଦେଇ ବସିପଡ଼ି କହିଲେ . ଆଜି ତୁମ ଘରେ ଖାଇବି ମାଉସୀ ।

ମାଆ କ'ଣ କରିବ ଠିକ୍ କରି ପାରୁ ନଥିଲା । ହଁ କହିବ କି ନାହିଁ କରିବ । ବଡ଼ ଚିନ୍ତାରେ ପଡ଼ି ସେ କହିଲା : ଆମ ଗରିବ ଘରେ ଯାହା ଅଛି ତାହା କ'ଣ ସାଙ୍ଗେ ତୁମ ତୁଣ୍ଡକୁ ରୁଚିବ ?

ଏତିକି ଶୁଣି ସେ ଅଭିମାନ କରି ଉଠି ପଡ଼ିଲେ । କହିଲେ ହଉ ମାଉସୀ, ମୁଁ ଯାଉଛି । ତମେ ଯଦି ମୋତେ ସାଆନ୍ତ ବୋଲି କହିଲ, ତେବେ ପର ବୋଲି ଭାବୁଛ । ଆଉ ଏ ଘରକୁ ଆସିବି ନାହିଁ । ଏଇ ମୋର ଆରମ୍ଭ ଆଉ ଶେଷ । ଯେଉଁଦିନ ପୁଅ କି ପୁତୁରା ବୋଲି ଭାବିବ ସେଦିନ ଏ ଘରକୁ ଆସିବି । ସେ ପର୍ଯ୍ୟନ୍ତ ଆଉ ନୁହେଁ···

—ଏତେ ରାଗ ରୁଷା କ'ଣ ଭଲ ? ଯଦି ମାଆ କି ମାଉସୀ ବୋଲି ଭାବି ଆସିଥିଲ ତେବେ ପଦେ କଥା ସହିବାକୁ ତୁମର ତାକତ ନାହିଁ ? ମାଆ ନରମ କଣ୍ଠରେ ଏତିକି କହି ତାକୁ ଡକା ପକାଇଲା— ଏ କୁନ୍ତଳା, ପଖାଳ ବାଢ଼, ବାବୁ ଖାଇକରି ଯିବେ ।

ଏଇ କଥା ପଦକରେ ଦୁଷ୍ମନ୍ତ ବାବୁ ଅଟକି ଗଲେ । ମାଆ ହସି ଉଠିଲା । ଆଜି କୁନ୍ତଳାର ମନେ ପଡ଼ୁଛି; ତା'ର ଗୋଡ଼ ଦୁଇଟା ଯେପରି ଦୁଇଟା ପଥର ଖୁମ୍ବ ପାଲଟି ଗଲା ।

ପିଢ଼ା, ପାଣି ଥୋଇଦେଇ ମାଆ କହିଲା ବସ, ପୁଅ । ମୁଁ କୁନ୍ତଳାକୁ ଡାକ ଦେଉଛି ।

ଏଥର କୁନ୍ତଳା ଚିନ୍ତାକଲା : ଆଉ ରକ୍ଷା ନାହିଁ । ଚିହ୍ନା ନାହିଁ, ପରିଚୟ ନାହିଁ, ସେଥିରେ ଏ'କ ଲୀଳା ? ଏଇମିତି କ'ଣ କେବେ କାହା ଘରକୁ ପଶିଆସି କିଏ ଖାଇବାକୁ ମାଗେ ? ଜାତିରେ ଯଦିଓ କ'ଣ ସେ ହେବେ ଜାଣି ନଥାଏ, ତଥାପି ଉଚ୍ଚ ଜାତିର । ଆମେ ଜାତିରେ ପାଣ । ଆମ ଘରେ ଖାଇଲେ ତାଙ୍କ ଜାତି ରହିବ ତ ? ପୁଣି ମନେ ମନେ ହସି ଉଠି କହିଲା ଶୋଝା, ଝଟ୍ଖି କଥା ଯଦି ସତ ହୋଇଥାଏ ତେବେ କ'ଣ ତାଙ୍କ ଜାତି ଆଉ ଅଛି ?

ପୁଣି କୁନ୍ତଳା ଭାବିଲା ଏ ବାବୁ କ'ଣ ଏଇମିତି ଉଦା ଖାଉଛନ୍ତି । ସେଥିପାଇଁ ଜାତି ହରାଇବାଟା ଗୋଟାଏ ବାହାନା । ବୁଲି ବୁଲି ଯିଏ ମାଗି ଖାଇବ ସେ କାହିଁକି ଚୂଲି ହାଣ୍ଡି କରିବାକୁ ଯିବ ? ମାଉସୀ, ମଉସା ପାଟିରେ ଡାକ ଦେଲେ ଶାଗ ପଖାଳ ଗଣ୍ଡେ ମିଳି ଯାଉଛି । ସେତକ ପୁଣି ବିନା ପରିଶ୍ରମରେ, ବିନା ଖର୍ଚ୍ଚରେ ।

ଏହି ସମୟରେ ଘର ଭିତରକୁ ପଶି ଆସିଲା ମାଆ । ତାକୁ ଏପରି ଠିଆ ହୋଇଥିବାର ଦେଖି ହାଲଇ ଦେଇ କହିଲା ବୁଝିଲୁ, ତୋ ଦ୍ୱାରା କିଛି ହବ ନାହିଁ । କେବକୁ ଆଉ ସଣୁଣା ଶିଖିବୁ ? ମୁଁ ପିଢ଼ା ପାଣି ଥୋଇ ଦେଇ ତୋତେ ଡାକିଲିଣି ଆଉ ତୁ ଏଠାରେ କାଠଟା ପରି ଠିଆ ହୋଇଛୁ । ହଉ ଦେ, ମୁଁ ବାଢି ନେଉଛି । ଭଗବାନ ରାମଚନ୍ଦ୍ର ଏଇମିତି ବନେ ଶବରୀ ହାତରୁ ଅଇଁଠା କୋଳି ଖାଇଥିଲେ । ସେ କେତେକର ନୋକ ଆଉ ଆମେ କେତେକର । ଯାହାକୁ ଖିରି ଖିରିସା ଅରୁଚି ଲାଗୁଥିଲା ସେ ପୁଣି ଖୁଦଭଜା ପାଇଁ କଟାଳ କରୁଛି ।

ତର ତର ହୋଇ ମାଆ ଭାତ, ଶାଗ, ଲୁଣ, ଲଙ୍କା ଆଉ ପିଆଜ ବି କୋଳି ନେଇ ଚାଲିଗଲା । ମାଆ ଗିବା ପରେ କୁନ୍ତଳା ମନେ ମନେ ତାହା କଥାକୁ ତଉଲୁ ଥିଲା । ଶବରୀ ମନକଥା ଠାକୁର ରାମଚନ୍ଦ୍ର ଜାଣିଥିଲେ । ସେ ତାଙ୍କର ଭକ୍ତ ଥିଲା । ରାମଚନ୍ଦ୍ର ଅନ୍ତର୍ଯ୍ୟାମୀ

ପୁରୁଷ ଥିଲେ । ତେଣୁ ଶବରୀ ଯାହାକୁ ଅଇଁଠା କରି ଦେଉଥିଲା ତାହାକୁ ରାମଚନ୍ଦ୍ର ପରମ ଆନନ୍ଦରେ ଖାଉଥିଲେ । ସେହି ଶବରୀ ବ୍ୟତୀତ ଆଉ ଯଦି ଅନ୍ୟ କେହି ଶବରୀ ଅଇଁଠା କୋଳି ଦେଇଥାନ୍ତି । ଏବଂ ସେ ରାମଚନ୍ଦ୍ରଙ୍କର ଭକ୍ତ ହୋଇ ନ ଥାନ୍ତି, ତେବେ ସେ କ'ଣ ତାହା ହାତରୁ ଅଇଁଠା କୋଳି ଖାଇଥାନ୍ତେ ?

ମନ ପଚାରିଲି କୁନ୍ତଳାକୁ ଏଇ ନୂଆବାବୁ ଯଦି ମନକଥା ଜାଣୁ ନାହାନ୍ତି ତେବେ ଦିନେ ନାହିଁ କାଲେ ନାହିଁ ଆଜି ତୁମ ଘରକୁ ଆସିଲେ କାହିଁକି ? ତାଙ୍କୁ କ'ଣ ଖାଇବାକୁ ଗଣ୍ଡେ ଅଭାବ ହୋଇଛି ? ବାପର ପରା ବାଛି ବାଛି ସମ୍ପତ୍ତି । ଏ ସାଇରେ ଯାହାକୁ ଚାହିଁଛନ୍ତି ତାହାଠାରୁ ଆଦର ପାଇଛନ୍ତି । ସେମାନଙ୍କ ଘରକୁ ଯାଇଥିଲେ ସେମାନେ କ'ଣ ତୋରାଣି ମୁନ୍ଦେ ଦେଇ ନଥାନ୍ତେ ? ସେ'ତ ଆଉ କିଛି ଖିରି, ପୁରି ଭଳି ଦାମିକା ଜିନିଷ ମାଗୁ ନାହାନ୍ତି । ତୁମ ଘରକୁ କାହିଁକି ଆସିଲେ, ଏତିକି ବୁଝିପାରୁ ନାହିଁ । ଗତକାଲି ଦର୍ଶନ । ଆଉ ଏଣେ ମନ ଛନ୍ନ ଛନ୍ନ । ରାତି ପାହି ସକାଳ ହୋଇନାହିଁ ତୋର ବଦନ ଦେଖିବାକୁ ତର ନାହିଁ । ମୋ କଥା ସତ କି ମିଛ ଜଣା ପଡ଼ିବ । ତୁ ରହିଥା ଏଠାରେ । ଜମା ଆଗକୁ ଯାଆନା, ଯଦି ପେଟରେ ଭୋକ ଥିବ ତେବେ ତୋରାଣି ମୁନ୍ଦାକ ପିଇ ସାରି ମୁହଁ ହାତ ଧୋଇ ଚାଲିଯିବେ । ଯଦି ମନର ଭୋକ ଥିବ ତେବେ ତୋତେ ନ ଦେଖିଲା ପର୍ଯ୍ୟନ୍ତ ବାବୁ ଏଠାରୁ ନ ଉଠନ୍ତି ।

ମାଆ ଆଉ ବାବୁ ସେତେଣେ କ'ଣ ଗପୁଥାନ୍ତି । କୁନ୍ତଳାକୁ ଅଧେ ଶୁଭିଲେ ଅଧେ ଶୁଭୁ ନଥାଏ । ଏହି ସମୟରେ ମାଆ ଡାକ ପକାଇଲା— ଆଲୋ ହେ କୁନ୍ତଳା, ଆଉ ଟିକିଏ ଶାଗ ଆଣିଲୁ । ଦଗୁଣ୍ଡା ଭାତ ବଳିଛି ସେତିକି ସେ ପାଟିରେ ପୁରାଇ ଦେଇ ଯାଆନ୍ତୁ ।

ମାଆର ହୁକୁମ । ନଯିବାକୁ ଚାରାନାହିଁ । ସିଲଭର ଥାଳିଆରେ ଶାଗ ଭଜା ଧରି ସେ ଲାଜ ଲାଜ ହୋଇ ପହଞ୍ଚିଲା । ଥାଳିଆଟାକୁ ଥରି ଥରି ମାଆ ହାତକୁ ବଢ଼ାଇ ଦେଇ ସେ ଚାଲି ଆସୁଥିଲା ।

ମାଆ ପଛରୁ ଡାକ କହିଲା : ଆଲୋ ହେ ଦୁର୍ଗୀ, ଚାଲିଯାଉଛୁ କୁଆଡ଼େ । ଏଇଠି ମୋ ପାଖରେ ଠିଆ ହେଉନୁ । ଆଉ କ'ଣ

ଦରକାର ହେବ । ମୁଁ କ'ଣ ଥରକୁ ଥର ଡାକ ପକାଉଥିବି ? ତୁ ପରା ଏ ଘରର ଝିଅ, କ'ଣ ବୋଝ ହେଇଛୁ ଯେ ଏତେ ମାଇନ ?

ହସ ମାଡ଼ିଲା କୁନ୍ତଳାକୁ । କ'ଣ କହିବ ସେ ମାଆକୁ । ଏଣେ କହିଲେ ଗୋହତ୍ୟା, ତେଣେ କଲେ ବ୍ରହ୍ମହତ୍ୟା । ଠିଆ ହେଲେ ଦୋଷ, ଦେଖା ନ କଲେ ଅପରାଧ । ସେ ଯେତେବେଳେ ପିଲା ଥିଲା, କେତେ ହସୁଥିଲା, କେତେ ଖେଳୁଥିଲା । ମାଆ ତାକୁ ସେଥିପାଇଁ କହୁଥିଲା ଚଗଲୀ । ଆଉ ଏବେ କେତେଦିନ ହେବ ସେ କହୁଛି ତୁ ବଡ଼ ହେଲୁଣି, ଦାଣ୍ଡକୁ ଯିବା ତୋ ପାଇଁ ମନା । ଯେଉଁ ମାଆ ଦିନେ ପର ପୁରୁଷ ଆଗକୁ ଯିବାକୁ ଆକଟ କରୁଥିଲା ସେ ପୁଣି ବର୍ତ୍ତମାନ କହୁଛି ମୋ ପାଖରେ ଆସି ଠିଆ ହୁଅ ।

ବାରଣ୍ଡା ଖୁଣ୍ଟକୁ ଆଉଜି ଠିଆ ହୋଇଥାଏ କୁନ୍ତଳା । ବାବୁ ଖାଇ ସାରିଲେ । ଖାଇବା ଭିତରେ ସେ ଅନୁମାନ କରିଛି ତାଙ୍କ ଆଖି ଗୁଡ଼ିଏ ପାଞ୍ଚଥର ତା ଦେହ ଉପରେ ପହଁରି ଯାଇଛି । ଦେହରେ ତାର ଝାଳ କଣ୍ଟି ଆସୁଥାଏ । ଶେଷରେ ସେ କହିଲେ ମାଉସୀ, ମୁଁ ଶୁଣି ଖୁସି ହେଲି, ଏଇ ହରିଜନ ବସ୍ତି ଭିତରେ ତୁମ ଝିଅ ଏକମାତ୍ର ଶିକ୍ଷିତା । ପାଠର ମୂଲ୍ୟ କେତେ ସେକଥା ତୁମମାନଙ୍କ ଭିତରୁ ଅଧିକାଂଶ ବୁଝି ନଥିବାରୁ ତୁମମାନଙ୍କର ଆଜି ଏ ଦୁର୍ଦ୍ଦଶା । ସାହୁକାର ଘରୁ ଟିପ ଚିହ୍ନ ମାରି ଟଙ୍କା କରଜ ଆଣି ସୁଝି ସୁଝି ତୁମର ଜନ୍ମର ସରେ; କିନ୍ତୁ ଟଙ୍କା ସୁଝେ ନାହିଁ । କୁନ୍ତଳା ତ ଏଇ ଗାଆଁର ଝିଅ । ମୁଁ ସନ୍ଧ୍ୟାବେଳେ ଭାଗବତ ଘରେ ବୁଢ଼ାମାନଙ୍କୁ ପାଠ ପଢ଼ାଇବା ଆରମ୍ଭ କରିଛି, କୁନ୍ତଳା ଯଦି ରାଜି ହୁଅନ୍ତା ଆଉ ତୁମେ ଅନୁମତି ଦିଅନ୍ତ ତେବେ ଏଇ ଗାଆଁର ଝିଅ ବୋହୂଙ୍କୁ ତ ଅକ୍ଷର ଦିଇଟା ଶିଖାଇ ଦେଇ ହୁଅନ୍ତା ?

ମାଆ କହିଲା ସେ କଥା ତୁମେ ଆପଣ କହନ୍ତୁ ନାହିଁ । ଏ ଗାଆଁକୁ ଯିମା ଏଇମିତି ଦେଖୁଛ, ହେଲେ ଏଠାର ଲୋକଗୁଡ଼ାକ କମ୍ ନୁହନ୍ତି । ସଜ ମାଉଁସରେ ପୋକ ପକାଇ ଦେବାକୁ ସେମାନଙ୍କୁ ଦଣ୍ଡେ ଲାଗିବ ନାହିଁ । ପାଠ ଦିଅକ୍ଷର ଲୋଚନ ମାଷ୍ଟ୍ରେ ପଢ଼ାଇ ଦେଇଛି ବୋଲି ସେ ସଭିଙ୍କର ଶତ୍ରୁ । କୁନ୍ତଳା ଯଦି ପାଠ

ପଢ଼ାଇବାକୁ ଯିବ ନା ଆଉ ସେମାନେ ତାକୁ ରଖିବେ ନା ମୋତେ ଦାଣ୍ଡରେ ଚଲାଇ ଦେବେ ?

—ପାଠ କହୁଛି, ନିଜ ପେଟରେ ଗୁଣ ଅନ୍ୟକୁ ନ ଦେଲେ ପାପ । ହସି ହସି ଦୁଷ୍ମନ୍ତବାବୁ କହିଲେ ।

—ପାପ ପୁଣ୍ୟ ସେ ସବୁ ତୁମ ବଡ଼ଲୋକମାନଙ୍କର ହଗୃର । ଆମେ ଗରୀବ ଲୋକ କାହା ଦାନରେ ନଥାଉ କି ଲାଭରେ ନଥାଉ । ଆମ ଦୁଃଖ ଆମକୁ ବଳାଉଛି । ତାକୁ ଫୁରସତ୍ କାହିଁ ? ମୁଁ ତ ସକାଳୁ ସଞ୍ଜଯାଏ ପର ଦୁଆରେ ହରମିହନ୍ତ କରି ବାର ଖିଜମତ୍ ନ କଲେ ଚଳୁନ । ସେ ଯଦି ମାଷ୍ଟ୍ରାଣୀ ହେବ ମୋ ପାଇଁ ହଇଠା ଫୁଟାଇ କରି ରଖିବ କିଏ ?

ଦୁଷ୍ମନ୍ତବାବୁ ଅସଲ ଗୁଣିଆଁ । ଥରକରେ ସେ ହାରିଯିବାର ଲୋକ ନୁହଁନ୍ତି । ଦଶଥର ଚେଷ୍ଟା କରିବାକୁ ସେ ପଛୁନ୍ତି ନାହିଁ । ତେଣୁ ସେଦିନ ଆଉ କିଛି ଟାଳଟୁଲ ନ କରି ସେ ଚୁପ୍ ହୋଇ ଚାଲିଗଲେ ।





ଯିଏ ବାଧବାଧକତାରେ ପଡ଼ି ଅପରକୁ ଦେହ ଦାନ କରିଥାଏ ସେ ପତିତା ହୁଏ । କିନ୍ତୁ ତା'ର ମନ ସେ କେବେ ଦାନ କରି ନ ଥାଏ । ଅସତୀ ନାରୀ ନିଜ ଇଚ୍ଛାରେ ଦେହ ଦେବା ସଙ୍ଗେ ସଙ୍ଗେ ପର ପୁରୁଷକୁ ମନ ବି ଦେଇ ସାରିଥାଏ । ପତିତା ପାଖରେ ମନ ଥାଏ । କିନ୍ତୁ ଅସତୀ ନାରୀ ପାଖରେ କିଛି ବଳକା ନଥାଏ ।

ସମସ୍ତଙ୍କ ଘରେ ବାବୁଙ୍କର ଅବାଧ ପ୍ରବେଶ । ସାରା ହରିଜନ ସାଇରେ ସେ ହେଉଛନ୍ତି ଜହ୍ନମାମୁଁ । ପିଲାଙ୍କଠାରୁ ବୁଢ଼ାଯାଏ ସଭିଙ୍କର ସେ ବନ୍ଧୁ । ତାଙ୍କୁ ପୁଣି ସନ୍ଦେହ କରିବ କିଏ ସମସ୍ତଙ୍କ ଭୁଣ୍ଡ୍ରେ—ପିଲ ଝିଣ୍ଡିଏ ନୁହେଁ, ଯୁବତୀଟିଏ ମ । ତା ଆଗରେ ଭୁଲମ ଲଙ୍ଗଳା ହୋଇ ନାଚ କିନ୍ତୁ ସେ ମୁହଁ ଫେରାଇ ଚାହିଁବ ନାହିଁ । କାମ ଭଲ କି ସେ ଭଲ । ଦିନ ରାତି ଚବିଶ ଘଣ୍ଟା ବାଡିଟିମ ପରି ଘୂରୁଥିବ । ଅରଟରେ ସୂତା କାଟିବାଠାରୁ ଚାଆଁ ସଫେଇ ପର୍ଯ୍ୟନ୍ତ ସବୁ କରୁଥିବ । ଯେତେବେଳେ ଦେଖିବ ସେ କିଛି ନା କିଛି କାମ କରୁଥିବ ।

ଏତେ କାମ ଭିତରେ ଦୁଷ୍ମନ୍ତବାବୁ କୁନ୍ତଳା ଘରକୁ ଆସିବାକୁ ଭୁଲୁ ନ ଥିଲେ । ଥରକୁ ଦି ଥର ଆସିଲେ ମମତା ବଢ଼େ । ସମସ୍ତେ କହୁଛନ୍ତି ସୁନାମୁଣ୍ଡା, କୁନ୍ତଳା ମାଆ ତାଙ୍କୁ କପଟ କହିବ ଖରାପ । ଭଜଘଷ ହେବାରୁ କୁନ୍ତଳା ଅସ୍ତେ ଆସ୍ତେ ନିଜର ମୁଣ୍ଡକୁ ଟେକିବାକୁ ଶିଖିଲା । ଏଣିକ ଆଉ ଆଡ଼ ଆଡ଼ ଭାବ ନାହିଁ । ଖୋଲାଖୋଲି ଚାଲଣୀ । ପରିଷ୍କାର କଥାବାର୍ତ୍ତା । ସେଥର ସେ ମାଗିକରି ପଖାଳ ଖାଉଥିଲେ । ଏଣିକ ଯାଉଁଲେ ଖାଇବାକୁ ଭୁଣ୍ଡରେ ନାହିଁ ପଦ । ସେଥିପାଇଁ ରାଗ, ନୟମ, ରାଗ ଋଷା, ଅଭିମାନ ।

ନଆଁ ଦେଖିଲେ ପୋକ ଉଡ଼ି ଆସି ପଡ଼ନ୍ତି । ସେଇମିତି କୁନ୍ତଳାର ରୂପର ନଆଁରେ ବାବୁ ଝାସ ଦେଲେ । ପ୍ରତିଦିନ କୁନ୍ତଳାର ଆଖି ବାବୁଙ୍କର ରୂପ ଲାଗି ଝୁରି ହେଲା, ଆଉ ବାବୁଙ୍କର ପ୍ରତି ଅଙ୍ଗ, କୁନ୍ତଳାର ପ୍ରତି ଅଙ୍ଗକୁ ଲୋଡ଼ିଲା । ଚାଲିଲା ରାହାସ ଲୀଳା । ଯେଉଁଦିନ ପ୍ରଥମ କରି ବାବୁ କୁନ୍ତଳାର ଅଙ୍ଗ ଛୁଇଁଲେ ସେହିଦିନ ସେ କହିଲା—ବାବୁ ଆମେ ହେଲୁ ଅଛିବ ଲୋକ । ଆମର ଧନ ନାହିଁ । ସମ୍ମାନ ନାହିଁ । ସମ୍ବଳ କହିଲେ ଅଛି ଏଇ ଇଜ୍ଜତ ଟିକକ । ସେତକ ଯଦି ବେଇଜ୍ଜତ ହୁଏ ତେଣିକି ଆମର ଆଉ ରହିଲା କ'ଣ ? ଶ୍ରେଷ୍ଠକୁଳରେ ଜାତ ହୋଇଛୁ ସତ, କିନ୍ତୁ ସେତକ ନଥିଲେ ଆହୁରି ଶ୍ରେଷ୍ଠ ହୋଇଯିବୁ ।

ହସି ହସି ବାବୁ କହିଲେ—ଶ୍ରେଷ୍ଠଲୋକଙ୍କୁ ବଡ଼ କରିବା ପାଇଁ ମୁଁ ଜୀବନର ବ୍ରତ କରିଛି । ତୁମେ ତ ହେଲେ କିଛି ପାଠ ପଢ଼ିଛ । ଏଇ କେତେଦିନ ତଳେ ତୁମକୁ ମୁଁ ମହାଭାରତ ପଢ଼ିବାକୁ ଦେଇଥିଲି ସେଥିରେ ପଢ଼ିଥିବ ଧୀବର କନ୍ୟା ସତ୍ୟବତୀ କଥା । ଦେହରୁ ତାର ଆଇଁଷିଣିଆଁ ଗନ୍ଧ ବାହାରୁଥାଏ । ତଥାପି ପରାଶର ଋଷି ତାହାର ପ୍ରେମରେ ପଡ଼ିଲେ । ବାର ବର୍ଷର ତପସ୍ୟା ଶୁଖୁଆ ପୋଡ଼ାରେ ଗଲା । ପରାଶରଙ୍କର ଅଙ୍ଗ ସ୍ପର୍ଶ ପାଇ ମତ୍ସ୍ୟଗନ୍ଧା ଯୋଜନଗନ୍ଧାରେ ପରିଣତ ହେଲା । ତା'ର ଅଙ୍ଗରୁ ସୁବାସ ଯୋଜନ ଯୋଜନ ଦୂର ପର୍ଯ୍ୟନ୍ତ ସଞ୍ଚରିଲା । ପରକ୍ଷଣରେ ସେହି ଯୋଜନଗନ୍ଧାଙ୍କ ରୂପରେ ମୋହି ହେଲେ ଶାନ୍ତନୁ ମହାରାଜ । ସେ ହେଉଛନ୍ତି କୁରୁବଂଶର

ମଉଡ଼ମଣି । ସେ ମଧ୍ୟ ଜାତି ମାନିଲେ ନାହିଁ । ପରାଶରଙ୍କର ଉଚ୍ଛିଷ୍ଟକୁ ଗ୍ରହଣ କଲେ । ଶେଷରେ ସିଂହାସନରେ ବସାଇ ରାଣୀ କଲେ । ପ୍ରେମ ନିକଟରେ ଜାତିର ଶ୍ରେଷ୍ଠ, ବଡ଼ ପ୍ରଶ୍ନ ଉଠେ ନାହିଁ । ମୁଁ ସଦାବେଳେ ଯାହା କହେ, ଏବେ ମଧ୍ୟ ସେହି କଥା କହୁଛି—ଜାତି କହିଲେ ଦୁଇଟି । ଗୋଟିଏ ପୁରୁଷ ହେଲେ ଆରଟି ସ୍ତ୍ରୀ ।

ପୁରାଣ କାହାଣୀ ଶୁଣିବାକୁ କୁନ୍ତଳାକୁ ଭଲ ଲାଗୁଥାଏ । ଗପ ଶୁଣୁ ଶୁଣୁ ସେ କହିଲା—ମତ୍ସ୍ୟଗନ୍ଧା ହୋଇ ରହିବି ପଛେ ମୋର ଯୋଜନ ଗନ୍ଧା ହେବା ଦରକାର ନାହିଁ । ବଣ ଜଙ୍ଗଲରେ ବୁଲୁଥିବା ଫଳମୂଳ ଖାଉଥିବା ପରାଶର ମୁନିଙ୍କର ପତ୍ନୀ ହେବାର ସୌଭାଗ୍ୟ ମୋର ଲୋଡ଼ା । ସେତିକରେ ମୁଁ ସନ୍ତୁଷ୍ଟ । ଯୋଜନଗନ୍ଧା ହୋଇ ଆଉ ଜଣେ ପୁରୁଷ ସେ ଶାନ୍ତନୁ ମହାରାଜା ହୁଅନ୍ତୁ କିମ୍ବା ପ୍ରଜା ହୁଅନ୍ତୁ ମୋର ତହିଁରେ ଆବଶ୍ୟକ ନାହିଁ । ରାଜ ସିଂହାସନ, ଦାସ ଦାସୀ କିମ୍ବା ରାଜମାତା ହେବାର ଗୌରବ ଅପେକ୍ଷା ସେଇ ମାଟିଲିପା କୁଡ଼ିଆଟିରୁ ବେଶୀ ଆନନ୍ଦ ପାଇ ପାରିବି ।

ଏତିକି ଶୁଣି ବାବୁ ପୁଲକିତ ହୋଇ ଉଠନ୍ତି । ସେ କହନ୍ତି ବେଶୀ ପାଠ ସିନା ପଢ଼ିଲ ନାହିଁ କିନ୍ତୁ ତୁମର ଯେଉଁ ବୁଦ୍ଧି ନା ପାଠ ପଢ଼ିଥିଲେ ତୁମେ କ'ଣ ଯେ ହୋଇଥାନ୍ତ ତାହା ମୁଁ କଳ୍ପନା କରିପାରୁ ନାହିଁ ।

ନିଜର ତାରିଫ୍ ଶୁଣିବାକୁ କୁନ୍ତଳାକୁ ଖୁବ ଭଲଲାଗେ । ତା' ଆଖିରେ ବାବୁ ବଡ଼ ଥିଲେ । ଏବେ ମଧ୍ୟ ତାର ମନରେ ସେଇ ବଡ଼ ହୋଇ ଅଛନ୍ତି । ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାର ଅନୁଭୂତି ବଢ଼ିଛି । ସେଥିରେ ସେ ଜାଣିପାରୁଛି ପୁରୁଷ ଭିତରେ ଭଲ ପାଇବା ଥାଏ ସାମାନ୍ୟ । କିନ୍ତୁ ସେତିକକୁ ସମ୍ବଳ କରି ସେ ବାରମ୍ବାର ଅନେକ ନାରୀଙ୍କୁ ଭଲପାଇ ବସେ । ନାରୀର ଭଲ ପାଇବା ଶକ୍ତି ଅମାପ । କିନ୍ତୁ କ୍ୱଚିତ୍ ସେ ତାକୁ ବ୍ୟବହାର କରେ । ତେଣୁ ନାରୀ ଥରେ ଜଣକୁ ମନଦେଇ ଭଲପାଇ ବସିଲା ପରେ ତାହାର ମନ ମନ୍ଦିରରେ ସେ ପତି ହୁଅନ୍ତୁ କିମ୍ବା 'ପ୍ରେମିକ ହୁଅନ୍ତୁ ସେହି ହିଁ ତାହାର

ଏକମାତ୍ର ଆରାଧ୍ୟ ଦେବତା ହୁଅନ୍ତି । ଯେଉଁଦିନ ସେହି ମନ ମନ୍ଦିରରୁ ସେ ଦେବତା ଚାଲିଯାଆନ୍ତି ତାହା ଆଉ ମନ୍ଦିର ହୋଇ ରହେନାହିଁ । ତାହା ହୁଏ ଏକ ଭୂତକୋଠି କିମ୍ବା ପତିତାଳୟ ।

ପଲ୍ଲୀ ଗାଆଁର ନିରୀହା ବାଳିକା ଥିଲା କୁନ୍ତଳା । ଛନ୍ଦ କପଟ, ଛଳନା ତାକୁ ଜଣା ନ ଥିଲା । ସ୍ନେହ କିମ୍ବା ଭଲପାଇବା ତା ନିକଟରେ ଗଙ୍ଗାଜଳ ପରି ପବିତ୍ର ଥିଲା । ତେଣୁ ବାବୁ କିଏ ? ବାବୁଙ୍କର ଘର କେଉଁଠି ? ତାଙ୍କ ପିତାମାତା କ'ଣ କରନ୍ତି ଏସବୁର ଠିକଣା ରଖିବା କ'ଣ ଅବା ଦରକାର ଥିଲା ତା'ର ?

ବିବାହ ପରେ ସିନା ବାସର ରଚିତ ହୁଏ । କିନ୍ତୁ ବାସର ଶଯ୍ୟା ରଚନା ପରେ ବିବାହର ଆବଶ୍ୟକତା ଯେଉଁଠାରେ ପଡ଼େ, ସେହିଠାରେ ଶଶୁର ଶାଶୁଙ୍କ ଇତିବୃତ୍ତ ସଂଗ୍ରହ କରିବାର କିଛି ମୂଲ୍ୟ ନଥାଏ

ସ୍ୱଇଚ୍ଛାରେ ନିଜକୁ ଜଣକ ହାତରେ ସମର୍ପି ଦେବା ପରେ କେବଳ ତାଙ୍କୁ ହିଁ ବିଶ୍ୱାସ କରିବାକୁ ହୁଏ । ସେତେବେଳେ ମନରେ 'କିନ୍ତୁ" ଭାବ ଆସେନାହିଁ

ବାବୁ କେତେ ପାଠ ପଢ଼ିଛନ୍ତି । ଖୁବ୍ ବଡ଼ଲୋକ ଘରର ପୁଅ । ଗୋରା ସରକାରଙ୍କୁ ଦେଶରୁ ତଡ଼ିବା ପାଇଁ ଗାନ୍ଧି ବୁଢ଼ା ଯେଉଁ ଶପଥ ନେଇଛନ୍ତି ତାହାକୁ ପାଳନ କରିବା ଲାଗି ଜୀବନକୁ ଉତ୍ସର୍ଗ କରିଛନ୍ତି । ସେ କହନ୍ତି ପାଠ ପଢ଼ି ଚାକିରୀ କରି ନିଜ ନିଜର ଉନ୍ନତି କାମନା ଯଦି ସମସ୍ତେ କରିବେ ତେବେ ଦେଶର ପ୍ରଗତି ହେବ କିପରି ? ନିଜ ଜନ୍ମଭୂମି ମାଆ ସଙ୍ଗେ ସମାନ । ସେ ପରଦୁଆରେ ବନ୍ଧାହୋଇ ପଡ଼ିଥିଲାବେଳେ ତାହାର ପିଲାଛିଆଙ୍କର ସୁଖ କେଉଁଠୁ ଆସିବ ? ଏ ସରକାର ଅବା ପର୍ଯ୍ୟନ୍ତ ମାନବଜାତି ପାଇଁ ଚାକିରୀ କେମିତି ଦେଇଥିବ । ବ୍ରାହ୍ମଣ ଆଉ ପାଣ ଭିତରେ ଭେଦଭାବ ଥିଲେ ତାକୁ ଶାସନ କରିବାକୁ ସୁବିଧା ହେବ ଯେଉଁ ଘରେ ଭାଇ ଭାଇ ଭିତରେ ଏକତା ନଥାଏ ସେଠାରେ ବାହାର ଲୋକଙ୍କୁ ଫାଇଦା ଉଠାଇବାକୁ ସହଜ ହୁଏ । ଏକତା ଯେଉଁଠାରେ ବଳ ସେହିଠାରେ । ଆମେ ଯଦି ସବୁ ଭାରତୀୟ ଏକ

ନ ହେବ ତେବେ ଭାରତ କଦାପି ସ୍ୱାଧୀନ ହୋଇପାରିବ ନାହିଁ । ଆମେ ଯିମିତି ପରାଧୀନ ଅଛେ ସେହିପରି ସବୁଦିନ ପାଇଁ ରହିଯିବା ।

ବାବୁ କହନ୍ତି ସେଇ ଭେଦଭାବ, ସେଇ ଛୁଆଁ ଅଛୁଆଁ ଭାବ ଉଠାଇବା ହେଉଛି ଗାନ୍ଧୀଙ୍କର ହରିଜନ ଆନ୍ଦୋଳନର ଲକ୍ଷ୍ୟ । ଆମେ ସମସ୍ତେ ଏକ । ଗୋଟିଏ ମାଆର ଆମେ କୋଟିଏ ଭାଇ ଭଉଣୀ । ଆମ ଭିତରେ ବ୍ରାହ୍ମଣ, କରଣ, ପାଣ, ପଠାଣ ଏସବୁ ଭେଦଭାବ ମଣିଷ ତିଆରି, ତାହାକୁ ଆମକୁ ହଟାଇବାକୁ ପଡ଼ିବ ।

ବାବୁଙ୍କର ପ୍ରତ୍ୟେକ କଥା କୁନ୍ତଳାକୁ ମଧୁର ଲାଗେ, ତାଙ୍କଠାରୁ କ୍ଷଣକ ପାଇଁ ଦୂରରେ ରହିବାକୁ ତାର ଆଦୌ ଇଚ୍ଛା ହୁଏନାହିଁ । ସେ କିନ୍ତୁ କ'ଣ ବାନ୍ଧିହୋଇ ରହିବା ଜନ୍ତୁ ? ଫୁରସତ୍ ପାଇଲେ ସେ ଆସନ୍ତି । ଦି'ପଦ କଥାବାର୍ତ୍ତା ହୋଇ ପୁଣି ଚାଲିଯାଆନ୍ତି ।

ବରଡ଼ି ଘଡ଼ି ଭିତରେ ମୁହଁ ପୂରାଇ ଦୁଧ ପିଇଲା ପରି ବାବୁ ସିନା ଭାବନ୍ତି ତାଙ୍କୁ କେହି ଦେଖୁ ନାହାନ୍ତି, କିନ୍ତୁ ତାଙ୍କୁ ଚହିଁବାକୁ ଆଉ ଚହଲା ପକାଇ ଦେବାପାଇଁ ଆଉ ଜଣେ ଉପରେ ଥାଏ, ସେତକ ସେପରି ସେ ଭୁଲି ଯାଇଥାନ୍ତି । ଯେଉଁଦିନ କୁନ୍ତଳା ଜାଣିପାରିଲା ଯେ ଏଇ ଦେହ ହସ୍ତାକ୍ଷର ଖାତାରେ ବାବୁଙ୍କର ଦସ୍ତଖତ ରହିଗଲଣି ସେହିଦିନ ବାବୁଙ୍କୁ ଆନନ୍ଦରେ ଏହି ସୁଖବର ଦେବା ସଙ୍ଗେ ସଙ୍ଗେ ପ୍ରଶ୍ନ କରିଥିଲା— ବାବୁ ଆଉ କେତେଦିନ ଏପରି ରହିବା ? ଏଣିକି ମାଆ ଜାଣିବ । ଆମର ହାଣ୍ଡିଆ ଜାତି, ତୁମେ ମୋତେ ଏଠାରୁ ନେଇ ପଳାଇ ଚାଲ, ନହେଲେ କେତେବେଳେ କଣ ହୋଇପାରେ ।

ହସି ହସି ବାବୁ କହିଲେ—ବେଦୀରେ ବସି ବାହାହେଲେ କ'ଣ ତାକୁ କେବଳ ବାହାଘର କହନ୍ତି ? ମନ ମନର ମିଳନର କିଛି ମୂଲ୍ୟ ନାହିଁ ? ମୁଁ ଏଇମିତି ତୋତେ ଚୋରର ପରି ଧରି ପଳାଇବି କାହିଁକି ? ଦେଖିବୁ ଆଉ ଅଳ୍ପଦିନ ପରେ ବାଜା ବଜାଇ, ଜାଣିଶୁଣି କରି ତୋତେ ବାହାହୋଇ ମୁଁ ଏଇ ଗାଆଁରୁ ବୋହୂ କରି ନେଇଯିବି ସେହି ବାଇଦ ଶବ୍ଦ ଶୁଣିବାକୁ ଗାଆଁବାଲାଙ୍କୁ ଆଉ ବେଶୀଦିନ ଅପେକ୍ଷା କରିବାକୁ ପଡ଼ିବ ନାହିଁ ଲୋ ।

ପ୍ରକୃତରେ ବାବୁଙ୍କୁ ବେଶୀଦିନ ଲଗିଲ୍ ନାହିଁ ଗାଆଁ ଛାଡ଼ି ଚାଲିଯିବାକୁ । ମାଆ ଜାଣିବାକୁ ବିଲମ୍ବ ହେଲ ନାହିଁ ଆଉ ଗାଆଁବାଲ୍···

ଗାଆଁବାଲଙ୍କୁ ଜଣେଇବା ପାଇଁ ଲେକର ଆବଶ୍ୟକତା ପଡ଼ି ନଥିଲ । ଯେଉଁଦିନ ମାଆ ଏ କଥା ଜାଣିପାରିଲ ସେହିଦିନ ତା ମୁଣ୍ଡରେ ପିତ୍ତ ଚଢିଗଲ । ଏଇ ସହରବାସୀଗୁଡ଼ାକ ବିଶ୍ୱାସରେ ବିଷ ଦିଅନ୍ତି । ଯାହାକୁ ତୁଣ୍ଡରେ ମାଉସୀ ଡାକନ୍ତି ତା'ର ଝିଅର ସର୍ବସ୍ୱ ଲୁଟି ନେବାକୁ କୁଣ୍ଠାବୋଧ କରନ୍ତି ନାହିଁ । ମାଆ କିଏ ? ମାଉସୀ କିଏ ? କି ତଫାତ୍ ଅଛି ସେମାନଙ୍କ ଭିତରେ ? ଭଉଣୀ ସଙ୍ଗରେ ପ୍ରେମ କରନ୍ତି ଏଇ ସହରି ବାବୁମାନେ । ହାତରେ ଲଙ୍ଗଳା କଟୁରିଟା ଧରି ରଣଚଣ୍ଡୀ ସାଜି ମାଆ ଧାଇଁଲ ଭାଗବତ ଟୁଙ୍ଗୀକୁ । ତୁଣ୍ଡରେ ହେଇ ଗୋଟିଏ କଥା, ତୋର ଦିନେକୁ ମୋର ଦିନେ । ମରିବି ନହେଲେ ମାରିବି । କ'ଣ ପାଇଛୁ କି ମୋତେ ? ରଣ୍ଡୀ ଝିଅ ଭାବି ନାଗର ସାଜି ବସିଛୁ ?

ମାଆର ପଣତ ଲୁଗା ଦାଣ୍ଡରେ ଘୁଷୁରୁଥାଏ । ହାତରେ ଲଙ୍ଗଳା କଟୁରି, ମୁଣ୍ଡର ଚଣ୍ଡି ଫିଟି ପିଠି ସାରା ମୁକୁଳା କେଶ ଲୋଟି ପଡ଼ୁଥାଏ । ମାଆ ତାର ଏକା ନିଃଶ୍ୱାସରେ ଦଉଡ଼ି ଯାଇ ଭାଗବତ ଘରର କବାଟ ଫିଟାଇ ଦେଖିଲ ଘରଟା ଖାଲି । ବାବୁ ନାହାନ୍ତି, ତାଙ୍କ ଲୋଟା, କମ୍ବଳ କିମ୍ବା ଝୁଲିମୁଣୀ କିଛି ବି ନାହିଁ ।

ନିରାଶ ହୋଇ ସେ ଘର ଭିତରକୁ ପଶି ଆସି ସେହି ରାଗ ଶୁଝାଇବା ପାଇଁ କୁନ୍ତଳାର ଚୁଟିଟା ଧରି ଟାଣିଆଣି ଅଗଣାରେ କଚାଡ଼ି ଦେଲ । ଗାଉଁ ଗାଉଁ କରି ଦି' ଚାରିଟା ବିଧା ତା ପିଠିରେ ଆଙ୍କା କରି କଷିଦେଲ ବେଳେ ଏତିକି କହିଲ—ଏଇଥି ପାଇଁ ତୋତେ ପାଠ ପଢ଼ାଇଥିଲି ? ପାଠ ପଢ଼ିଲେ ଝିଅମାନେ କ'ଣ ନାଁ ପକାନ୍ତି । ଦୋଗୁରୁଣୀ ହୁଅନ୍ତି ? ମୁଁ ଏବେ କ'ଣ କରିବି ? ତୁ ମୋତେ କ'ଣ କଲୁ କୁନ୍ତଳା; କହି ସେ ଯେତେବେଳେ କଟୁରିଟା ଫିଙ୍ଗିଦେଇ

କାନ୍ଥରେ ମୁଣ୍ଡଟା ଢୋ କରି ପିଟିଦେଇ, ଭେ ଭେ କାନ୍ଦଉଠିଲା ଠିକ୍ ସେତିକବେଳେ ଦାଣ୍ଡ ଦୁଆରେ ଠକ୍ ଠକ୍ ଶବ୍ଦ ହେଲା ।

"କିଏ", କଡ଼ା କଣ୍ଠରେ ପଚାରି ମାଆ ପୁଣି ଲଙ୍ଗଳା କଣ୍ଟିଗୁଣ୍ଠା ଧରି କବାଟ ଫିଟାଇବାକୁ ଯାଉ ଯାଉ କହି ଉଠିଲା—ଆରେ ଅଲପେଇସା, କିପରି ତୋ ବାପ ନାଗରି ସାଜିଆସେ ଦେଖିବ ଆ । ଆ···ଭିତରକୁ ଆ, ଭାବିଛୁ ଆମେ ଛୋଟଜାତି, ଆମର ଗୋଟାଏ ଇଜ୍ଜତ ମହତ କ'ଣ ଅଛି ?

କୁନ୍ତଳା କଇଁ କଇଁ ହୋଇ ଫୁଲି ଫୁଲି କାନ୍ଦୁଥିଲା । ମାଆ କଥା ଶୁଣି ତା'ର କାନ୍ଦ ହଠାତ୍ ବନ୍ଦ ହୋଇଗଲା । ସେ ନବୋଲଙ୍କ ଭଳି ମାଆ ଯିବା ପଛକୁ ଚାହିଁ ରହିଲା ପିଲାଦିନରୁ ସେ ମାଆର ରାଗ କଥା ଜାଣେ । ସେ ରାଗିବ ନାହିଁ ତ ନାହିଁ । କିନ୍ତୁ ଥରେ ରାଗିଲେ ସେ କାହାର ନୁହେଁ । ଯଦି କ୍ରୋଧ ବଶତଃ କିଛି ଅଘଟଣ କରିବସେ ? ଦଉଡ଼ି ଯାଇ ମାଆ ହାତରୁ କଣ୍ଟୁଗୁଣ୍ଠା ଛଡ଼ାଇ ଆଣିବାକୁ ତା'ର ମଧ୍ୟ ସାହସ ହେଲା ନାହିଁ ।

ଧଡ଼ି କରି କବାଟ ଫିଟାଇ ସେ ଯେତେବେଳେ ଆଖି ଆଗରେ ଦୁଇଟା ନାଲି ପଗଡ଼ିଆଙ୍କୁ ଦେଖି ଦେଇଛି, ତା ହାତରୁ କଣ୍ଟୁଗୁଣ୍ଠା ଆପେ ଆପେ ଖସି ପଡ଼ିଲା ।

ଘର ଭିତରକୁ ସିପାହୀ ଦୁଇଜଣ ପଶିଯାଇ ମାଆକୁ ପଚାରିଲେ କଲେ ବୁଢ଼ୀ ! କାହିଁ ସେ ବାଳୁଙ୍ଗା ଟୋକା ? କେଉଁଠାରେ ତାକୁ ଲୁଚାଇ ରଖିଛୁ ?

ମାଆ ଆଶ୍ଚର୍ଯ୍ୟରେ ପଚାରିଲା କୋଉ ଟୋକା ବାବୁ ?

ହାତରେ ଧରିଥିବା ବାଡ଼ିରେ ମାଆ ପିଠିକୁ ଆଚ୍ଛାକରି ପାହାରେ କଷିଦେଇ ସିପାହୀ ଜଣକ କହିଲା ସେହି ଦୁଷ୍ଟାନ୍ତ ପଟ୍ଟନାୟକ ! ସିଏ ଏଇ ଗାଆଁରେ ଲୁଚିକରି ରହି । ସରକାର ବିରୁଦ୍ଧରେ ଲୋକଙ୍କୁ ମତାଉଥିଲା, ନେତା ବନିଥିଲା । ଆରେ ଶଳା, ହିମ୍ମତ୍ ଅଛି ତ

ବାହାରକୁ ବାହାର ଆସ । ଏଇମିତ ମାଇଚିଆଙ୍କ ଭଳ ଲୁଚୁଛନ୍ତି କାହିଁକି ? ଏଇ ଲୁଚା ଲଙ୍ଗୁଡ଼ିଆ ଗୁଡ଼ାକ ଭାରତବର୍ଷକୁ ସ୍ୱାଧୀନ କରି ପକାଇବେ ?

ପାହାଚରେ ମାଡ଼ରେ ମାଆ କହିଲା : ସେଇ ବାବୁକୁ ତ ହଜୁର ମୁଁ ସକାଳୁ ଖୋଜୁଛି । ସେଇଟା କ'ଣ ପୁରୁଷ ? ମାଇଚିଆଟାଏ ବାବୁ ସତରେ । ତାକୁ ହିଁ ହାଣିବ ବୋଲି ଏ କଟୁରୀ ଧରି ସିନା ବାହାରିଥିଲି ।

ଥମକି ଗଲେ ଦଣ୍ଡେ ସିପାହୀ ଦୁଇଜଣ । ହଠାତ୍ କିଛି ବୁଝି ପାରିଲେ ନାହିଁ । ବଖରାଏ ଘର ଖୋଜିବାକୁ ସେମାନଙ୍କୁ ବେଶୀ ସମୟ ଲାଗିଲା ନାହିଁ । ମାଆଠାରୁ ଘଟଣା ଶୁଣିବାକୁ ହାତରେ ମଧ୍ୟ ସେମାନଙ୍କର ବେଶୀ ସମୟ ନାହିଁ ଥାନା ବାବୁଙ୍କର କଡ଼ା ହୁକୁମ ଲୁଚି କରି ବୁଲୁଥିବା ଦୁଷ୍ମନ୍ତବାବୁଙ୍କୁ ଥାନାରେ ହାଜର କରିବାକୁ ହେବ । ତାକୁ ଗିରଫ କରିବା ପାଇଁ ଉପରୁ ଓ୍ୱାରଣ୍ଟ ଜାରି ହୋଇଛି ।

ଆମ ଘରୁ ବାହାରି ଚାଲି ଯାଉ ଯାଉ ସିପାହୀ ଦୁଇଜଣ କହିଲେ : ଶଳା, ଏଇଗୁଡ଼ାକ କଣ ଇଂରେଜ ସରକାରଙ୍କୁ ତଡ଼ିବେ ? ଆଜି ଏ ଗାଆଁରେ ତ କାଲି ସେ ଗାଆଁରେ ଲୁଚି ଲୁଚି ବୁଲିବେ ।

ସେତିକିବେଳେ ମାଆ ଆଉ ସେ ଜାଣିପାରିଲେ ଯେ ସରକାରଙ୍କ ଆଖିରେ ଧୂଳି ଦେବା ପାଇଁ ବାବୁ ଏ ଗାଆଁରେ ଲୁଚି ରହିଥିଲେ । ଧରା ପଡ଼ିଲେ ନିଶ୍ଚୟ ଜେଲ୍ ଯିବେ । ଥରେ ଜେଲ୍ ଗଲେ କେତେଦିନ ତାହା ଭିତରେ ରହିଯିବେ କିଏ ଜାଣେ ?

ମାଆ ଦଉଡ଼ିଲା ଲୋଚନ ମାଷ୍ଟ୍ରଙ୍କ ପାଖକୁ । ଆଖିରୁ ଧାର ଧାର ଲୁହ ବହି ଯାଉଥାଏ । ସେଇ ମାଷ୍ଟ୍ରେ ତ କେବଳ ତାର ଆପଦ ବିପଦର ବନ୍ଧୁ । ବାପ ସମାନ । ବୁଦ୍ଧି ସେଇ ବତାନ୍ତି ।

କିଛି ସମୟ ପରେ ଲୋଚନ ମାଷ୍ଟ୍ରଙ୍କୁ ଧରି ମାଆ ଘରକୁ ପଶି ଆସିଲା । ତାଙ୍କର ପାଦ ଦୁଇଟାକୁ ଜାବୁଡ଼ି ଧରି କେବଳ ଭୋ-ଭୋ ହୋଇ କାନ୍ଦିବାକୁ ଲାଗିଲା

ଲୋଚନ ମାଷ୍ଟ୍ରେ ସବୁ ଶୁଣିଲେ । କିନ୍ତୁ ଆଦୌ ବିଚଳିତ ହେଲେ ନାହିଁ । କେବଳ ଏତିକି କହିଲେ ସମସ୍ତ ହିଁ ଏକମାତ୍ର ବନ୍ଧୁ ତୋର ସାହାରା । ଧୈର୍ଯ୍ୟ ଧର । ଅପେକ୍ଷା କର । ଦେଶରେ ବିପ୍ଳବର ଗୋଟାଏ ଅଗ୍ନି ଜଳୁଛି । ଦୁଷ୍ମନ୍ତ ଭଳି କେତେ ଯୁବକ ଏଥି ନିଆଁରେ ଝାସ ଦେଇଛନ୍ତି । ସେମାନଙ୍କ ଆଖିରେ ଦେଶ ଆଗ । ସ୍ୱାର୍ଥ ପଛ । ତେଣୁ ନିଜକୁ ପୁଲିସ ହାତରୁ ବଞ୍ଚାଇବା ପାଇଁ ସେ ଏ ଗାଆଁ ଛାଡ଼ି ଚାଲି ଯାଇଛି । ସେ ଯେ ଫେରି ନ ଆସିବ ସେ ଦୁରାଶା ମଧ୍ୟ କରିହେବ ନାହିଁ । ଦୁଷ୍ମନ୍ତ ଭଲ ପିଲା । ନିଶ୍ଚୟ ଫେରି ଆସିବ । କୁନ୍ତଳାକୁ ସଙ୍ଗରେ ନେଇ ଚାଲିଯିବ । ଦେଶରେ ସ୍ୱାଧୀନତା ଆସିବାକୁ ଆଉ ବେଶୀ ସମୟ ବିଳମ୍ବ ନାହିଁ । ଇଂରେଜ ସରକାର ତାର ପେଡ଼ି ପୁଟୁଳା ବାନ୍ଧିଲାଣି ।

ଆଦରରେ ମାଆକୁ ଗୋଡ଼ତଳୁ ଉଠାଇ ନେଇ କହିଲେ : ତୋର କେହି ନଥିଲେ ଲୋଚନ ମାଷ୍ଟ୍ରେ ତ ଅଛି । ତାହାର ଉପରେ ଭରସା ରଖ । ଆଖିରୁ ଦୁଇ ହାତରେ ଲୁହ ପୋଛି ଦେଲେ । ନିଜ ଜନମ କଲା ଝିଅକୁ ବୁଝାଇଲା ପରି କହିଲେ ରାଗ ହେଉଛି ପରମ ଚଣ୍ଡାଳ । ଥରେ ମଣିଷ ରାଗିଲେ ସବୁ ଅଘଟଣ ଘଟାଇ ବସେ । ଜୀବନରେ କେତେ ଝଡ଼, ଝଞ୍ଜା, ଆସିବ । ତାକୁ ଯିଏ ବୁକୁ ପତାଇ ହସି ହସି ସହିନେବ ତାକୁ ହିଁ ସିନା ମଣିଷ କହନ୍ତି ।

କୁନ୍ତଳାକୁ କୋଳକୁ ଆଉଜାଇ ନେଇ କହିଲେ ମୁନି ଋଷି ମାନେ ମଧ୍ୟ ଭୁଲ କରନ୍ତି । ଏଇ ବଅସରେ ପଥ ହୁଡ଼ିଛନ୍ତି । ଯାହା ଘଟି ଯାଇଛି ସେକଥା ନଭାବି ଭବିଷ୍ୟତ ପ୍ରତି ଦୃଷ୍ଟି ଦେବାକୁ ହେବ ।

ସମସ୍ତଙ୍କୁ ଆଶ୍ୱାସନା ଦେଇ ଘରୁ ବାହାରି ଯାଉ ଯାଉ ଲୋଚନ ମାଷ୍ଟ୍ରେ ଗୁଣୁ ଗୁଣୁ ହୋଇ ମନକୁ ମନ କହୁଥିଲେ ଯେଉଁ ଯୁବକମାନଙ୍କର ଚରିତ୍ର ନାହିଁ, ଶକ୍ତି ସଂଯମତା ନାହିଁ ସେମାନଙ୍କ ହାତରେ ସବୁକିଛି ହୋଇ ପାରେ; କିନ୍ତୁ ଦେଶର ଉନ୍ନତି ହେବା ଅସମ୍ଭବ ।



ଲୋଚନ ମାଷ୍ଟ୍ରଙ୍କ କଥା ସତ ହେଲା ।

ଭାରତର ସ୍ୱାଧୀନତା ଆସିବାକୁ ବେଶୀ ବିଳମ୍ବ ହେଲା ନାହିଁ । ବାବୁଙ୍କ ଫେରିବାର ବାଟକୁ ଚାହିଁ ଚାହିଁ କୁନ୍ତଳା ଆଖିରୁ କାନ୍ଦ ପାଣି ସଲା । କୋଳକୁ ଆସିଲା ଭରତ । ମାଆର ପୂର୍ବ ମନ ବଦଳି ଗଲା । ନାତିକୁ ଧରି ଭୋଗ କଲା । ହେଲେ କୁନ୍ତଳା ମୁହଁକୁ ଚାହିଁଲେ ଆଖିରେ ତାର ପାଣି ଜମି ଉଠେ । ସେଥିପାଇଁ କୁନ୍ତଳା ବେଶୀ ସମୟ ମାଆ ଆଗକୁ ଯାଉ ନଥିଲା ।

ଲୋଚନ ମାଷ୍ଟ୍ର ଆସିଥିଲେ । ପୁଅ ନାମ ଦେଇ ଦେଇଗଲେ । ମାଷ୍ଟ୍ରଙ୍କର ତ ବହୁତ ଜ୍ଞାନ । ଏକୋଇଶିଆ ଦିନ ପୁଅ ନାମ ଭରତ କାହିଁକି ରଖିଲେ ସେ ବିଷୟରେ ମଜା ଗପଟିଏ କହି ବସିଲେ । ମାଆକୁ ପାଖକୁ ଡାକିଲେ । ବସାଇ କହିଲେ ଆଲୋ ସାରିଆ, ଏ ଶଳାଟା ତୋର ନାତି ହେଲେ ମୋର ଅଣନାତି । ମୋ ମୁଣ୍ଡରେ ଯେତେ ପାଚିଲା ବାଳ ସବୁ ନେଇ ଦୀର୍ଘାୟୁ ହେଉ । ମୁଁ ସିନା ନଥିବି, ତୁ ଯଦି ବଞ୍ଚିଥିବୁ ଦେଖିବୁ ଏଇଟା ଗୋଟାଏ ବଡ଼ ମଣିଷ ହେବ । ତା ମାଆର ନାଁ ରଖିବ ।

। ରାମଚନ୍ଦ୍ରଙ୍କର ଗୃହ ଭାଇ ଥିଲେ । ବଡ଼ ମଝିଆଁ ନାମ ହେଉଛି ଭରତ । କିନ୍ତୁ ଆମ ନାତି ତ ବଡ଼ । ତେଣୁ ରାମ ଭାଇ ଭରତ ଏ ନୁହେଁ । ଏ ହେଉଛି ସେହି ଭରତ ଯାହାଙ୍କ ନାମ ଅନୁସାରେ ଆମ ଦେଶର ନାମ ହେଲା ଭାରତବର୍ଷ ।

ସେହି ଭରତ । ତାହାର ଜନ୍ମ କାହାଣୀ ଶୁଣିଛ ?

ସେଦିନ ମାଆ ମନ ଭଲଥାଏ ତା' ନାତିର ଏକୋଇଶା । ଖୁସିରେ ପାଦ ତାର ତଳେ ଲାଗୁ ନ ଥାଏ । ହସିଦେଇ ସେ କହିଲା – ତମେ ସାନ୍ତେ କହିଲେ ସିନା ମୁଁ ଜାଣିବ । ମୁଁ ଯଦି ଏତେ ପାଠ ପଢ଼ିଥାନ୍ତି ତେବେ ଏଇ ଅନଭୋଗ କାହିଁକି ଭୋଗିଥାନ୍ତି ?

ଗଳାଟା ସଫା କରି ଲୋଚନ ମାଷ୍ଟ୍ରେ କହିଲେ ଅନେକ ଦିନ ତଳେ ଦୁଷ୍ମନ୍ତ ନାମରେ ଜଣେ ରାଜା ଅଯୋଧ୍ୟାରେ ରାଜୁତି କରୁଥିଲେ । ତାଙ୍କର ରୂପ ଓ ଗୁଣର ତୁଳନା ନଥିଲା । ଦେଖିବାକୁ କନ୍ଦର୍ପ ପରି ଦେହେରା । ପ୍ରଜାମାନଙ୍କୁ ପୁଅଠାରୁ ବଳି ଭଲ ପାଉଥିଲେ । ସେହି ଦୁଷ୍ମନ୍ତ ମହାରାଜା ଦିନେ ଜଙ୍ଗଲକୁ ଶିକାର କରିବାକୁ ଆସିଲେ । ମିରିଗ ପଛରେ ଧାଇଁ ଧାଇଁ ଆସି ପହଞ୍ଚିଲେ ଗୋଟିଏ ଋଷି ଆଶ୍ରମରେ । ସେ ଆଶ୍ରମଟି ହେଉଛି କଣ୍ୱମୁନିଙ୍କର । ଆଶ୍ରମରେ ପହଞ୍ଚି ସେ ଦେଖିଲେ ଗୋଟିଏ ସୁନ୍ଦରୀ ଝିଅ ତାହାର ସାଙ୍ଗମାନଙ୍କ ସହିତ ମିଶି ଆଶ୍ରମର ଗଛ ମୂଳେ ପାଣି ଦେଉଥାଏ । ଝିଅଟିକୁ ଦେଖି ରାଜାଙ୍କ ମନ ତାହାଠାରେ ଲାଗିରହିଲା । ମିରିଗ ଶିକାର କରିବାକୁ ଆସିଥିବା କଥା ସେ ଭୁଲିଗଲେ । ନିଜକୁ ଭାରି ଶୋଷ ହେଉଛି କହି ପାଣି ମୁନ୍ଦାଏ ପିଇବାକୁ ମାଗିଲେ ।

ଝିଅଟି ପାଣି ମୁନ୍ଦାଏ ପିଇବାକୁ ଦେଲା । ଝିଅଟିର ପରିଚୟ ସଖୀମାନଙ୍କ ଠାରୁ ସଂଗ୍ରହ କରି ଜାଣିବାକୁ ପାଇଲେ, ସେ ହେଉଛି କଣ୍ୱମୁନିଙ୍କର ପାଳିତା କନ୍ୟା ନାଁ ତାର ଶକୁନ୍ତଳା । ସେ ଶକୁନ୍ତଳା ଅବଶ୍ୟ ଆମ କୁନ୍ତଳାଠାରୁ ବେଶୀ ସୁନ୍ଦରୀ ନଥିଲା । କାରଣ କୁନ୍ତଳା ମାଆ ସିନା ସାଉଆ ପାଳୁଣୀ । କିନ୍ତୁ ଶକୁନ୍ତଳା ମାଆ ହେଉଛି ସ୍ୱର୍ଗର ଅପ୍ସରୀ । ନାମ ତାର ମେନକା ।

ପାଣି ମୁନ୍ଦାଏ ପିଇ ସାରିବା ପରେ ଦୁଷ୍ମନ୍ତ ଆଉ ରାଜ୍ୟକୁ ଫେରିବା କଥା ଭୁଲିଗଲେ । ରହିଲେ ସେ ଆଶ୍ରମରେ । ଶକୁନ୍ତଳା ସହିତ ଭାବ ପରିଚୟ ହେଲା । ବେଦୀ ନାହିଁ, ବାଜା ନାହିଁ, ବାଇଦ ନାହିଁ, ବରଯାତ୍ରୀ ନାହିଁ, ଶକୁନ୍ତଳାଙ୍କ ପାଣି ଗ୍ରହଣ କଲେ । ଏଇ ବାହାଘରକୁ ପାଠରେ ଗାନ୍ଧର୍ବ ବିବାହ କୁହନ୍ତି । ଏହାର କିଛିଦିନ ପରେ ଶକୁନ୍ତଳା ଗର୍ଭରେ ପିଲାଟିଏ ସଞ୍ଚରିଲା ।

ଫିକ୍ କରି ହସିଦେଇ ମାଆ କହିଲା ତମେ ଆପଣ କ'ଣ ମୋ କୁନ୍ତଳା କଥାକୁ ଉପଲକ୍ଷ କରି ମନରୁ ଫାନ୍ଦି ଏଇ କଥାଗୁଡ଼ାକ ଗପୁଛ କି ?

ପୁଲକିତ ହୋଇ ଲୋଚନ ମାଷ୍ଟ୍ରେ କହିଲେ ବଡ଼ ହେଲେ ମୋ ନାତୁଣୀ କ'ଣ ତୋ ନାଁ ଭି ବି ପଢ଼ିବ । ଏସବୁ ପୁରାଣର କାହାଣୀ, ଲେଖା ହୋଇ ରହିଛି । କେବଳ ଫୁରସତ୍ ପାଇ ପଢ଼ିଲେ ହେଲା ।

ଉତ୍କଣ୍ଠା ସୃଷ୍ଟି କରି ମାଆ ପଚାରିଲା ସେଇଠାରୁ କ'ଣ ହେଲା ସାନ୍ତେ ?

କିଛିଦିନ ପରେ ଦୁଷ୍ମନ୍ତଙ୍କର ନିଜ ରାଜ୍ୟ କଥା ମନେ ପଡ଼ିଲା । ସେ ଚାଲିଗଲେ । ଗଲାବେଳେ ଶକୁନ୍ତଳାକୁ କହିଗଲେ ମୁଁ ଆସିବି, ତୁମକୁ ବାଜା ବଜନ୍ତ୍ରୀ ବଜାଇ ତାମଜାମରେ ବସାଇ ନେବି । ଅଯୋଧ୍ୟାରେ ଆମରେ ବାହାଘର ହେବ । କେତେ ଭୋଜିଭାତ, ନାଚ ତାମସା ହେବ । ତୁମେ ଅଯୋଧ୍ୟା ସିଂହାସନରେ ରାଣୀ ହୋଇ ମୋ ପାଖରେ ବସିବ ।

ଶକୁନ୍ତଳା ଅପେକ୍ଷା କଲେ । କିନ୍ତୁ କାହିଁ ? ରାଜା ଯାଇଛନ୍ତି ଯେ ଆଉ ଫେରିବାର ଦେଖାନାହିଁ । ଶେଷରେ ଶକୁନ୍ତଳା ମାଆ ହେବାକୁ ଯାଉଛନ୍ତି ଏକଥା କଣ୍ୱମୁନି ଜାଣି ପାରିଲେ ।

ଦୁଷ୍ମନ୍ତଙ୍କୁ ନ ଦେଖି ଶକୁନ୍ତଳାଙ୍କ ଦୁଃଖ କହିଲେ ନ ସରେ ।

ଶେଷରେ ଅସତୀର ଟିକା ନିଜ ମୁଣ୍ଡରେ ମାରିଲେ ଶକୁନ୍ତଳା । ବିଚାରା ବୁଢ଼ା ଋଷି ବଢ଼ିଲା ଝିଅକୁ ସାଇତିଲା । ତାହାର ଉଦରରୁ ସମ୍ଭୂତ ହେଲା ଯେଉଁ ପୁଅ ତା ନାମ ଦିଆଗଲା ଭରତ । ତାହାରି ନାମ ଅନୁସାରେ ଆମ ଦେଶର ନାମ କାହିଁକି ଭାରତବର୍ଷ ହେଲା ସେ କଥା ଆଉ ଦିନକୁ ଥାଉ । ଆଜି ଏତିକି ।

ଲୋଚନ ମାଷ୍ଟ୍ରେ ଦମ୍ ମାରିଲେ ।

ମାଆ ପଚାରିଲା—ତମେ ସାନ୍ତ ପୁଅ ନାମ ପିନା ଭରତ ରଖିଲ । ତା ମାଙ୍ଗିଆ କ'ଣ ହେବ ?

ଲୋଚନ ମାଷ୍ଟ୍ରେ ଟିକଏ ଗମ୍ଭୀର ହୋଇ କହିଲେ – ଭଲ କଥାଟିଏ ପଚାରିଦେଲୁ ସାରିଆ । ଯେଉଁ ମଣିଷ ବିଶ୍ୱାସରେ ଭିଷ ଦିଅନ୍ତି ସେମାନେ ଚଣ୍ଡାଳ ସଙ୍ଗେ ସମାନ । ଜାତିରେ ଶ୍ରେଷ୍ଠବଡ଼ ନ ଥାଏ । ଆଚରଣ ଦ୍ୱାରା ବ୍ରାହ୍ମଣ ଚଣ୍ଡାଳରେ ଗଣା ହୁଏ । ଭରତର ନାମ ପଛରେ ତୁମ ଜାତିର ସାଙ୍ଗିଆ ଲଗିବ । ସେ ହରିଜନ, ତା ବାପ ଦୁଷ୍ମନ୍ତ ଜାତିରେ କରଣ ହେଲେ କ'ଣ ହେବ ଆଚରଣରେ ବର୍ତ୍ତମାନ ସୁଦ୍ଧା ଚଣ୍ଡାଳ । ଯେଉଁଦିନ ଦୁଷ୍ମନ୍ତ ତାହାର ପୁଅକୁ ଗ୍ରହଣ କରିବ ସେହିଦିନ ସେ ମଣିଷରେ ଗଣା ହେବ । ବାପପଣକୁ ଭାଜନ ହେବ । କୁନ୍ତଳା କଷ୍ଟ କରିଛି । ଦଶମାସ ଗର୍ଭରେ ଧରିଛି । ଶୂଳ ଖାଇ ଜନ୍ମ କରିଛି । ବାର ନିନ୍ଦା, ଅପନିନ୍ଦା ସହିଛି । ଆଉ ଭବିଷ୍ୟତରେ ସହିବ ମଧ୍ୟ । ଦୁଷ୍ମନ୍ତ ଯଦି ତାର ପ୍ରତିଶ୍ରୁତି ପାଳନ କରେ ତେବେ ଭରତ ସ୍କୁଲରେ ନାମ ଲେଖାଇବା ବେଳେ ନିଷ୍ଟୟ ପଟ୍ଟନାୟକ ଉପାଧି ପାଇପାରିବ । ନଚେତ୍ ସେ ହେଉଛି କୁନ୍ତଳାର ପୁଅ ।

ମାଆ ଟିକଏ ସହଜ ହୋଇ ଲୋଚନ ମାଷ୍ଟ୍ରଙ୍କୁ କହିଲା ତମେ ସାଆନ୍ତେ—ବର୍ତ୍ତମାନ ତ କୁନ୍ତଳାର ଭାଗ କି ଦି ଭାଗ ହୋଇଗଲା । ଆମର ତ ହାଟୁଆପାଟକ । ମୁଁ ପଛକେ ପିଲାଟାକୁ ସାଇତିବି । କୁନ୍ତଳାକୁ ଆଉ ଥରେ ବାହା କରିଦେବି ବୋଲି ବିଚାରୁଛି । ସେ ବାବୁକୁ ମୋର ବିଶ୍ୱାସ ନାହିଁ । କେବେ ଫେରିବ ତାହାର କୌଣସି ଠିକ୍ ଠିକଣା ନାହିଁ । ତେଣୁ······

ଲୋଚନ ମାଷ୍ଟ୍ରେ କହିଲେ—ଅବଶ୍ୟ ତୁ ଯାହା କହିଲୁ ସତ । କୁନ୍ତଳାଟା ଆମର ନିହାତି ପିଲା । କିନ୍ତୁ ଦୁଷ୍ମନ୍ତ ଉପରେ ଏତେ ଶୀଘ୍ର ଅବିଶ୍ୱାସ ଆଣିବା କ'ଣ ଠିକ୍ ହେବ ? ତଥାପି ତୁ କୁନ୍ତଳାର ମାଆ । ସେ ବିଷୟରେ କୁନ୍ତଳା ଓ ତୁ ଯାହା ନିଷ୍ପତ୍ତି କରିବ ସେଥିରେ ମୋର କିଛି କରିବାର ନାହିଁ ।

ଏତେବେଳକୁ କୁନ୍ତଳାର ପାଟି ଫିଟିଲା । ମାଆ ଗୋଡ଼ ଦୁଇଟା ଜାବୁଡ଼ି ଧରି ସେ କହିଲା ତୁ ସେ ପାପ କଥା ଆଉ ମାଆ ତୁଣ୍ଡରେ ଧର ନାହିଁ । ମୋର ଆଉ ସଂସାର କରିବା ଦରକାର ନାହିଁ । ତୁ ଏତିକି କଲ୍ୟାଣ କର ଏ ଭରତ ଖଣ୍ଡିକ ଚିରଜୀବି ହେଉ ! ପାଞ୍ଚଜଣରେ ଜଣେ ହେଉ......

ହିସ କାନ୍ଦର ସଂସାର ଭିତରେ ସେଦିନ ଶ୍ରେଷ୍ଠ ହରିଜନ ପରିବାରଟିରେ ନବଜାତ ପୁତ୍ରଟିର ନାମକରଣ ହେଲା—ଭରତ ଚନ୍ଦ୍ର ନାୟକ ।

ଲୋଚନ ମାଷ୍ଟ୍ରେ ତାଙ୍କ ଘରୁ ବିଦାୟ ନେଇ ଚାଲିଗଲା ପରେ କୁନ୍ତଳା ମନେ ମନେ ଭାବିଲା ସିଏ ଦୁନିଆଁ ଆଖିରେ ଅସତୀ ହୋଇପାରେ କିନ୍ତୁ ପତିତା ଆଦୌ ନୁହେଁ ।





କମଳପୁର ।

ଛୋଟ ଗାଆଁଟିଏ କେବେ ଥିଲା । ଏବେ କିନ୍ତୁ ଛୋଟକାଟର ଟାଉନ୍‌ଟିଏ ହୋଇଗଲାଣି ।

କମଳପୁରରେ ବର୍ତ୍ତମାନ ସବୁ ଅଛି । ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର, ହାଇସ୍କୁଲ୍, ବ୍ଲକ ଅଫିସ୍, ତହସିଲ ଅଫିସ ଇତ୍ୟାଦି ଅନେକ ସରକାରୀ ଅନୁଷ୍ଠାନ ସହିତ ଗ୍ରାମ୍ୟ ବ୍ୟାଙ୍କ୍, ଭୂ-ଉନ୍ନୟନ ବ୍ୟାଙ୍କ ପ୍ରଭୃତି ସେମାନଙ୍କର ଶାଖା ଅଫିସମାନ ଏହିଠାରେ ଖୋଲିଛନ୍ତି । ବେପାର ବାଣିଜ୍ୟରେ କମଳପୁରିଆଙ୍କର ଅବସ୍ଥା ଆଗ ଅପେକ୍ଷା ଭଲ ।

ମୋଟ ଉପରେ ବୁଢ଼ା ରଘୁ ସାହୁ ଗୁଡ଼ିଆର କହିବା ମୁତାବକ ଏ କମଳପୁର ସେ କମଳପୁର ନୁହେଁ । ସେତେବେଳେ ବସ୍ ଖଣ୍ଡିକ ଧରିବା ପାଇଁ ଲୋକମାନଙ୍କୁ ଖତବୁହା ହେଉଥିବା ଓଦର ଭିତରେ ପଶି ଶଗଡ଼ ଗାଡ଼ିରେ ଧକ୍‌କା ଚକ୍‌କା ହୋଇ ମଙ୍ଗଳପୁର ଯିବାକୁ ହେଉଥିଲା । ଏଠାକୁ ଗୁରମାଇଲ ବାଟ । ପଜ ପଢ଼ିବା ଜାଣୁଥିଲା କିଏ ? ସପ୍ତାହକରେ ହାଟ । ସେଇ ମଙ୍ଗଳପୁରରୁ ଯାହା ଆଣିଥିବ । ବନ୍ଧୁ

କ କୁଣିଆ ଘରେ ପହଞ୍ଚିଲେ ଗାଆଁ ଗାଡ଼ିଆରୁ କେଇପଟାଏ ଜାଲ ପକାଇ ମିନ, କେଉଁଣ୍ଡି ଯାହା ମିଳିଲା ସେଥିକାରେ ଚର୍ଚ୍ଚା କର୍ମ ହେଉଥିଲା । ଅଣ୍ଟାରେ ପଇସା ଥିଲେ କ'ଣ ହେବ ଏଇମିତି ଠନ ଠନ ଗଣିଦେଇ ପାଟି ପାକୁ ପାକୁ କରୁଥିବା ବଡ଼ ମାଛ କିଣିବା ସ୍ୱପ୍ନ ଥିଲା

ସେ ଅନେକ ଦିନର ପୁରୁଣା କଥା । ଯେତେବେଳେ ଏହିଠାରେ ସେ ଗୋଟିଏ ଦୋକାନ କରିବାକୁ ବସିଲି, ସେତେବେଳେ ଏବର ଏମ୍. ଏଲ୍. ଏ. ଦୁଷ୍ମନ୍ତ ବାବୁଙ୍କ ବାପା ଦଶରଥ ପଟ୍ଟନାୟକ ବଞ୍ଚିଥାନ୍ତି । ଦିନେ ସେ ତାଙ୍କୁ ପାଖକୁ ଡାକି କହିଲେ ହଇରେ ପୁଅ ରଜୁ । କ ଅବା ପଇସା ପାଇବୁ ସେ ବୈଠକି ଦୋକାନରୁ ? ଘରେ ଚୂଡ଼ା ମୁଢ଼ି ଥାଉ ଥାଉ କିଏ ଯାଇ ତୋ ଦୋକାନରେ ବସି ବରା ପିଆଜି ଖାଇବ ? ଦୋକାନ କରି ବସିଲେ ସବୁ ସଇଲି । କାହାକୁ ମନା କରିବୁ ? ଯିଏ ଗୁହିଁବ ସେ ଖାଇବ । ହାଡ଼ି, ପାଣର ଛୁଆଁଛୁତ ବାରଣ ଯେପରି ରହିବ ନାହିଁ, ମୁସଲମାନ, ଖ୍ରୀଷ୍ଟାନଙ୍କ ଅଇଁଠା ବ ସେହିପରି ଧୋଇବାକୁ ପଡ଼ିବ । ତେଣୁ ବାପା, ବାପ ଅଜା ଅମଳରୁ ଯିମିତି ବେପାର କରି ଆସୁଥିଲେ ସେଇଟା ଖୁବ ଭଲ । ମୁଣ୍ଡରେ ପସରା ଥୋଇ, ହାତରେ ଝୁମୁକବଲା ବଜାଇ ଗ୍ରାମ ଏ ସାହିରୁ ସେ ସାହିକୁ ଯାଉଛୁ । ଧାନ, ମୁଗ, ମାଣ୍ଡିଆ ଯାହା ପାଉଛୁ ଆଣୁଛୁ । କାହାର ଅଇଁଠା ବାସନ ଧୋଇବା ତ ଦୂରକଥା ବାସନ ଛୁଇଁବା ପ୍ରଶ୍ନ ଉଠୁ ନାହିଁ । ଜାତିକୁ ଜାତି ରହିବ, ପିତୃ ପୁରୁଷ ପାଣି ପାଇବେ । ସେମାନଙ୍କର ପୁଅଟିଏ ଜନ୍ମ କରିବା ଫଳ ସାର୍ଥକ ହେବ ।

ରଜୁ ସାହୁ କହେ ତଥାପି ମନରେ ଦମ୍ଭ ଧରି ଜମିଦାରଙ୍କ କଥା ନ ମାନି ମୁଁ ଆସି ଏଇଠାରେ ଖଣ୍ଡିଏ ଗୁଳ ଘରେ ଦୋକାନ ଛାଇଲି । ଅଧେ ଦିନ ଦୋକାନରେ କିଛି ବିକ୍ରି ହୁଏ ନାହିଁ । ସେତେବେଳେ ଗାଆଁରେ ପୋଷ୍ଟମାଷ୍ଟର ଥାନ୍ତି ସନାତନ ଦାସ । ସେ କେବେ କମିତି ଆସି ଦୋକାନ ଆଗରେ ପଡ଼ିଥିବା ଘୋଡ଼ାପଟା ଉପରେ ବସନ୍ତି । ମୁଁ ଅଧୈର୍ଯ୍ୟ ହେଲେ ସେ କହନ୍ତି ଆରେ ବାପା,

ଧୈର୍ଯ୍ୟ ରଖ, ଦେଖିବୁ ସବୁ ହେବ । ପାଠ କହୁଛି ପରା ଗୃହ ଡର ତର, ବଣିଜ ମଠ ।

ଚୂଲି ନିଆଁ ଭିତରୁ ଖଣ୍ଡେ ଜଳନ୍ତା କାଠ ଭିଡ଼ ଆଣି ବିଡ଼ି ଲଗାଉ ଲଗାଉ କାଞ୍ଚନ ରେକ୍ସାବାଲା କୁହେ, ମଉସା ଯାହା କହ ସେଇ ବଉଁଶ ଏ ଗାଆଁକୁ ସାଇଲେ । କାହାର ଭଲ ଦେଖିବା ସେପରି ସେମାନଙ୍କର ଜାତକରେ ନାହିଁ । କହ୍ନା, ତୁମେ ଦୋକାନ କଲେ ତାଙ୍କର ବାଡ଼ି କିଆଁଖି କ'ଣ କାଟି ଖାଇ ଯାଉଥିଲ ? ଅସଲ ଗୁମର କ'ଣ ଜାଣିଛ ?

ଚୂଲି ଉପରେ ବସିଥିବା ତେଲ କରେଇରୁ ବରଗୁଡ଼ାକ ଡାଲଚଟୁ ଭିତରକୁ ଘୁଣି ଆଣୁ ଆଣୁ ରଜୁ ସାହୁ କହେ : ଆରେ ତୁମେ ସବୁ ତ କାଲିକା ପିଲା । କ'ଣ ଜାଣିଛ ସେ ବୁଢ଼ାର ପ୍ରତାପ ? ଯାହା କହନ୍ତି ଗୃହଲଗଲେ ଗର୍ଭିଣୀ ଗାଈ ବାଛୁରି ଛାଡ଼ ଦେଉଥିଲା । ତା ଆଗରେ କଥା କହିବାକୁ ଏ ଖଣ୍ଡମଣ୍ଡଳରେ ପୁଅ କିଏ ଥିଲା ? ସେ ଯାହା ଭାବୁଥିଲା ତାହା କରୁଥିଲା । ଲୋକେ ସିନା ଖଣ୍ଡା ତରୁଆଲରେ ମୁଣ୍ଡ କାଟୁଥିଲେ । ସେ କିନ୍ତୁ କଥା ପଦକରେ ମୁଣ୍ଡ କାଟି ତଳେ ଥୋଇ ଦେଉଥିଲା । ତା ମନର ଭାବନା ହେଉଛି ଦୁନିଆଁରେ ସେ ଏକା ବଡ଼ଲୋକ ହୋଇ ରହିବ । ଆଉ ସମସ୍ତେ ବୋଝ, ବାଉଁଶିଆ ଧରି ପ୍ରତିଦିନ ତାହା ଦୁଆରେ ଧାନ ପାଞ୍ଚ ଗଉଣୀ, ଦଶ ଗଉଣୀ ପାଇଁ ଲାଇନ ଲଗାଇବେ ।

ବଡ଼ଠାରୁ ଦ'କଳ ଧୂଆଁ ଭଲ କରି ଗୁଡ଼ାଦେଇ କାଞ୍ଚନ କହିବସେ ବୁଝିଲ ମଉସା, ପର ପଇସା ନ ପଶିଲେ ଘର ହୁଏନାହିଁ ଏପୁ। ସତ ଯେ; କିନ୍ତୁ ତାଙ୍କ ଭଳ ପାଞ୍ଚ ଆଙ୍ଗୁଠି କିଏ ପାଟିରେ ପୂରାଉଥିଲ ?

ରଜୁ ସାହୁର ଦୋକାନ ନାମ ହେଉଛି ମହାଲକ୍ଷ୍ମୀ ମିଷ୍ଟାନ୍ନ ଭଣ୍ଡାର । ଏ ଅଞ୍ଚଳରେ ସବୁଠାରୁ ପୁରୁଣା ଦୋକାନ । ସେବର କମଳପୁର ନିମିତ୍ତ ରୂପରେ, ଢଙ୍ଗରେ, ଆଉ ରଙ୍ଗରେ ବଦଳୁଛି ରଜୁ ସାହୁର ଦୋକାନ ମଧ୍ୟ ସେହି ପରିବର୍ତ୍ତନ ସହିତ ତାଳ ଦେଇ

ବଦଳି ଚାଲିଛି । ସେ ଚାଳଘର, ଝାଟିମାଟି ଲିପା କାନ୍ଥ, ବସିବାର ଘୋଡ଼ାପଟା ଆଉ ନାହିଁ । ବସଷ୍ଟାଣ୍ଡଟା ଏହିଠାରେ ହେବା ଦିନଠାରୁ ଦୋକାନରେ ଗହକର ଭିଡ଼ ବଢ଼ି ଉଠିଛି । ଏଣିକି ଦୋକାନ ଭିତରେ ଟେବୁଲ ଚଉକି ପଡ଼ିଲାଣି, କାନ୍ଥରେ ବଡ଼ ଦର୍ପଣ, ଛାତରେ ବିଜୁଳି ପଙ୍ଖା ଲାଗି ଗଲାଣି । ବରା, ପିଆଜି ସହିତ ଉପମା, ଇଡ଼ଲି, ଦୋସା, ଲଡୁ, ରସଗୋଲା ରହିଲାଣି । ଅଇଁଠା ପ୍ଲେଟ ଉଠାଇବାକୁ ଗଣ୍ଡା ଗଣ୍ଡା ଚାକର, ବୋଲହାକ କରିବାକୁ କପେ ଚାହାକୁ କେତେ କର୍ମି କୋଡ଼ିଆ ।

ଦୋକାନ ବଦଳିଲା ପରେ ଦୋକାନଦାର ମଧ୍ୟ ବଦଳି ଯାଇଛନ୍ତି । କ୍ୟାସ ବାକ୍ସ ପାଖ ଚଉକିରେ ଗଦି ପଡ଼ିଛି । ଟେବୁଲ ଉପରେ ବଡ଼ ରେଡ଼ିଓ । କେହି ଶୁଣନ୍ତୁ କି ନ ଶୁଣନ୍ତୁ ଅନବରତ ଏଡ଼ ପାଟି କରି ଗୀତ ବୋଲୁଥିବ । ଗଦିପକା ଚଉକିରେ ବସେ ରଜୁ ସାହୁର ନାତି ଗଉରା । ଗୋରା ତକ୍ ତକ୍ ଚେହେରା । ମୁଣ୍ଡରେ ନାଟୁଆ ଟୋକାଙ୍କ ଭଳି ଗୋଲକରା ବାଳ ଗୋଛାଏ । ନାକତଳେ ନୂଆ ଗଜୁରି ଉଠୁଥିବା ଦିପଟା ନିଶ, ଆଉ ଛାତିରେ ସୁନା ଚେନରେ ଲଟକୁଥିବା ଗୋଟାଏ ମିନାକରା ଲକେଟ । ଆଜିକାଲି ଦୋକାନରେ ସେ ବସେ । ସେ ଥିଲାବେଳେ ଗହକ ବହୁତ । ଦୋକାନରେ ଆଜିକାଲି ବୁଢ଼ାଏ କ'ଣ ଜଳଖିଆ ଖାଆନ୍ତି । ଯେତିକି ଲୋଭ ସବୁ ସେମାନଙ୍କର । ଆଉ ବାପ ପଇସାରେ ଜଳଖିଆ ଖାଆନ୍ତି ଟୋକାଏ । ସେମାନେ ସବୁ ପରା ଗଉରାର ଗହକ ।

ରଜୁ ସାହୁର ଆଗ ରୂପ ନାହିଁ । ବୁଢ଼ା ହୋଇଗଲାଣି, ଦାନ୍ତ ସବୁ ପଡ଼ିଗଲାଣି । କିନ୍ତୁ ମନର ଦମ୍ଭ ଭାଙ୍ଗି ନାହିଁ । ଦୋକାନକୁ ନ ଆସିଲେ ତାର ଭାତ ହଜମ ହୁଏ ନାହିଁ । ସକାଳଓଳି ପିଲାମାନେ ଦୋକାନକୁ ଆସନ୍ତି ବିଳମ୍ବରେ । କିମିତି ଅବା ବିଳମ୍ବରେ ନ ଆସିବେ ? ରାତିର ଗହକ ଭାଙ୍ଗିବେ, ଆସନ୍ତା ଦିନ ପାଇଁ ମିଠା ତିଆରି ସରିବ, ହିସାବପତ୍ର ସରିବ, ଏସବୁ କାମ ସାରି ପିଲାଏ ଫେରୁ ଫେରୁ ବହୁତ ରାତି ହୁଏ । ନିଦ ଯେମିତି ଡେରିରେ ହୁଏ ସିମିତି ଅଗଣାରେ ଖରା ପଡ଼ିଲା ପରେ ପିଲାଏ ଶେଯ ଛାଡ଼ନ୍ତି ।

ବଡ଼ ସକାଳୁ ସେଥିପାଇଁ ରଘୁ ସାହୁ ଦୋକାନର ମାଲିକ ସାଜେ । ପାହାନ୍ତା ପହରରୁ ତାର ନିଦ ଭାଙ୍ଗେ । ସେ ଗାଧୁଆପାଧୁଆ ସାରି ହାତରେ ତାଳି ପାଣି ହଇଚା ଫୁଲ ଧରି ଆସି ଦୋକାନ ଫିଟାଏ । ଦୋକାନ ବାରଣ୍ଡାରେ ଶୋଇଥିବା ଚାକରବାକରଙ୍କୁ ଆଗ ଉଠାଏ । ଚୂଲିରେ ଆଞ୍ଚ ଧରାଏ । ଲକ୍ଷ୍ମୀ ଗଣେଶଙ୍କ ଫଟୋକୁ ପାଣି ଟିକିଏ ପକାଇ ଦେଇ ଫୁଲ ହଇଚା ଖୋସି ଦିଏ । ଦୋକାନ ସଜଡ଼ା ସଜଡ଼ି କରି ବସିଯାଏ ଚୂଲି ପାଖରେ । ଆଗ ଗୋଟାଏ କେଟଲି ଚାହା ବସାଇ ଦିଏ । ସେ ଜାଣେ ସକାଳୁ ଯେତେକ ଆସିବେ ସବୁ ପଚାରିବେ –କ'ଣ ସାହୁଏ ଚାହା ହେଲଣି ?

ରଘୁ ସାହୁ ବେଳେ ବେଳେ ଭାବେ ପ୍ରକୃତରେ ଏଇ ଚାହାକୁ ଯିଏ ଲୋକମାନଙ୍କୁ ପିଆ ଶିଖାଇଲା ତାହାଠାରୁ ବୁଦ୍ଧିଆ ଲୋକ ଆଉ କେହି ନ ଥିବେ । କେଉଁଠାରେ ଥିଲା ଏହି ଚାହା ? କୁଆଡ଼ୁ ଆସିଲା ଯେ ଝିଅବୋହୂଙ୍କ ହାତରୁ ସକାଳ ପଖାଳ ଛଡ଼ାଇ ନେଲା । ଯାହାକୁ ପଚାରି; ଜାଣି ପାରିବ ଖାଇବାକୁ ଘରେ ଚାଉଳ ନଥାଉ ପଛକେ କିନ୍ତୁ ଚାହାପତି ଗୁଣ୍ଡ ଟିକିଏ ଥିବ । ଆଗ କାଳିଆ ବନ୍ଧୁ ଚର୍ଚ୍ଚା କୁଆଡ଼େ ଗଲାଣି । ଦୁଆରକୁ କୁଣିଆ ଆସିଲେ କଂସାଚୁଡ଼ା ଧୋଇ ଦେଇ ନଡ଼ିଆ କୋରି, ଚିନି କି ଗୁଡ଼ ଦେଇ ଟିକିଏ ପକାଇ ଦିଆ ଯାଉଥିଲା । ବସୁରି ବନ୍ଧୁ ଏଇଥିରୁ ଯେଉଁ ଦି'ଗୁରି ଗୁଳା ଖାଉଥିଲା ସେଥିରେ ତାର ପାଟି ଜାଣୁଥିଲା ପେଟ ଭର୍ତ୍ତି ହେଉଥିଲା । କୁଣିଆ ମନକୁ ଚର୍ଚ୍ଚା ପାଉଥିଲା । ସେ ଦଣ୍ଡେ ଓଳିଏ ବସି କରି କଥାବାର୍ତ୍ତା ହୋଇ ଯାଉଥିଲା କିନ୍ତୁ ଆଜିକାଲି ଯାହା ଘରକୁ ଯାଅ ଆଗେ କପେ ଚାହା ଆଣି ଥୋଇ ଦେବେ । ସେତିକିରେ ସବୁ ସରିଲା । ଗରମ ଚାହାର ମିଠା ପିଇନା ଜିଭ ଚାଖିଲା, ତଣ୍ଟି ଓଦା ହେଲା କିନ୍ତୁ ପେଟ ଯେଉଁ ଖାଲି କି ସେଇ ଖାଲି । ଯାହା ଘଣ୍ଟେ କି ଦି ଘଣ୍ଟା ଗପି ଥାଆନ୍ତା ପେଟ କହେ ଏ ବାପ, ଏ ଜାଗା ଛାଡ଼, ଆଗକୁ ଚାଲ । ଏଇ କପକ ଗରମ ପାଣି ବ୍ୟତୀତ ଆଉ ଏଠାରେ କିଛି ମିଳିବାର ଆଶା ନାହିଁ ।

ଗୃହାଟାର ବଡ଼ ନିଶା । ସେହି ଗୃହା ପାଇଁ ଦୋକାନରେ ଭିଡ଼ ଜମେ । କେତେ ଚାକିରିଆ ବାବୁ, ସ୍କୁଲ ପଢ଼ୁଆ ଛାତ୍ର, ବେକାରିଆ ଯୁବକ ଆଉ ରିକ୍ସାବାଲା ଆସି ସକାଳୁ ଦୋକାନରେ ଜମନ୍ତି । ସେହିମାନଙ୍କ ପାଇଁ ରାଜୁ ସାହୁ ସକାଳୁ ଦୋକାନ ଫିଟାଏ । ଗହଳି ହେଲେ ଦୋକାନର ଲକ୍ଷ୍ମୀ । ଯେଉଁ ଦୋକାନରେ ଗହଳି ନଥାଏ ସେ ଦୋକାନ କ'ଣ ଦୋକାନରେ ଲେଖା ?

ସକାଳୁ ଯେଉଁ ବସ କଟକ ଆଡ଼ୁ ପହଞ୍ଚେ ସେଥିରେ ଖବର କାଗଜ ଆସେ । ସେହି ଖବର କାଗଜଗୁଡ଼ା ତାହାର ଦୋକାନରେ ଫିଟେ । ସେହିଠାରୁ ବଣ୍ଟାହୁଏ । କପେ ଗୃହା ପରେ ପରେ ଆହୁରି କପେ କପେ ଗୃହା ମାଗନ୍ତି ବାବୁମାନେ । ଖବରକାଗଜ ସେହିଠାରେ ପଢ଼ାହୁଏ । ତେଣିକି ବାର ପ୍ରକାର ଆଲୋଚନା ଚାଲେ । ତିର୍ତ୍ତିଶାଳ-ଠାରୁ ଢେଙ୍କାନାଳ ପର୍ଯ୍ୟନ୍ତ । ରାଜୁ ସାହୁ ସବୁ ଶୁଣେ । କିନ୍ତୁ ହୃଦୟରେ କିଛି ମନେ ରଖେ ନାହିଁ । ସେ ଭାବେ ଏଗୁଡ଼ାକ ଅଲଣା ଗପ । ଯେଉଁମାନଙ୍କ ହାତରେ ମଲା କଙ୍କଡ଼ା ଲେଉଟାଇ ହୁଏନାହିଁ; ସେହିମାନେ ହିଁ ତିମି ମାଛର ଶିକାର କଥା ଗପନ୍ତି ।

ଏହି ଗହଳି ଭିତରେ ତାହାର ମଧ୍ୟ ଜଳଖିଆ କିଛି ବିକ୍ରି ହୁଏ । ଠିକ୍ ନଅଟା ବେଳକୁ ଦୋକାନକୁ ନାତି ଟୋକା ଗଉରି ଆସେ । ରାଜୁ ସାହୁର ଛୁଟି ହୁଏ । ତେଣିକି ଗଉରି ହୁଏ ଦୋକାନରେ ମାଲିକ ।

ଏଇ ଯେଉଁ ଗାଆଁ କମଲପୁର ଏବେ ତହସିଲ ହୋଇଛି ଏବଂ ଆଉ କେତେକ ଦିନ ପରେ ସବ୍‌ଡ଼ିଭିଜନାଲ ହେଡ୍‌କ୍ୱାର୍ଟର୍ସ ହେବାକୁ ଯାଉଛି ତାହାର କାହାଣୀ ଲେଖିଲାବେଳେ ଏଇ ମହାଲକ୍ଷ୍ମୀ ମିଷ୍ଟାନ୍ନ ଭଣ୍ଡାରର କଥା ଭୁଲିଗଲେ ଆଦୌ ଚଳିବ ନାହିଁ । ତାହାର କାରଣ ଏଇ ଦୋକାନରୁ ତୁମେ ଏଇ ଅଞ୍ଚଳର ରାଜନୀତିର ଗତି, ପ୍ରଗତି, ଏବଂ ପ୍ରକୃତି ବିଷୟରେ ଗୋଟାଏ ମୋଟାମୋଟି ଧାରଣା କରିପାରିବ ।

●



ଜମିଦାର ଦଶରଥ ପଟ୍ଟନାୟକ ।

ଜମିଦାର କହିଲେ ଯାହା ବୁଝାଏ ସେ ପ୍ରକୃତରେ ତାହା ନୁହନ୍ତି । ସେ ହେଉଛନ୍ତି ସେ ଅଞ୍ଚଳର ବଡ଼ କୃଷୀ । ଅନେକ ଜମି ତାଙ୍କର । ପାଖଆଖ ଗାଁରେ ଏତ୍ତ ସମ୍ପତ୍ତି ପାଇଁ ତାଙ୍କର ଖାତିର । ଅଭାବବେଳେ ତାହାଙ୍କଠାରୁ ଟଙ୍କା, ଧାନ କରଜ ନେଇ ଲୋକମାନେ ଚଳନ୍ତି ।

ଗୁମାସ୍ତା ନର ମହାନ୍ତି । ଦଶରଥ ବାବୁଙ୍କର ସଚ୍ଚୋଟ କର୍ମଚାରୀ । ମୂଳ ଟଙ୍କା ଫେରେଠ ଦେଲେ ସୁଦ୍ଧା ତାହା ତାଙ୍କ ହିସାବରେ ସୁଧକୁ ନଅଣ୍ଟ ହୁଏ । ତେଣୁ ଥରେ କରଜ ନେଲେ ଦଶରଥ ବାବୁଙ୍କର ଖାତାରୁ ନାଆଁ କଟି ଯାଇପାରେ ନାହିଁ । ଶେଷରେ ସବୁ ସମ୍ପତ୍ତି ଯାଇ ତାଙ୍କ ଘରେ କୋର୍ଟ କଚେରୀ ଜରିଆରେ ପଶେ ।

ଦଶରଥ ପଟ୍ଟନାୟକ ବଡ଼ ହରିଭକ୍ତିଆ ଲୋକ । ନାକରୁ କେଶାଗ୍ର ପର୍ଯ୍ୟନ୍ତ ଲମ୍ବା ହରିମନ୍ଦିର ଟିକା । କଣ୍ଠରେ ତୁଳସୀ ମାଳ । ବେକରେ ସଦାସର୍ବଦା ଝୁଲୁଥାଏ ଝୁଲିମୁଣି । ସେହି ମୁଣି ଭିତରେ

ସଦା ସର୍ବଦା ହାତ ପଶିଥାଏ । ପ୍ରତି କଥା ଦେବକରେ ତାଙ୍କ ପାଖିରୁ ବାହାରି ପଡ଼େ ହରି ହେ ରକ୍ଷା କର ।

ସେତେବେଳେ ଇଂରେଜ ଶାସନର ଅମଳ । ଗୋରା ସାହେବମାନଙ୍କର ପ୍ରତାପ କହିଲେ ନ ସରେ । ସହରରୁ ଯେତେବେଳେ ଯେଉଁ ସରକାରୀ କର୍ମଚାରୀ କମଳପୁର ଗାଆଁକୁ ଆସନ୍ତି ସେମାନଙ୍କର ଡେରା ବନ୍ଧାହୁଏ ପଟ୍ଟନାୟକଙ୍କର ଦାଣ୍ଡ ଘରେ । ଘରୁ ସଞ୍ଜା ଅରୁଆ ଚାଉଳ, ପରିବା, ଡାଲି, କାଠ ସବୁ ଦିଆଯାଏ । ଥାନା ଜମାଦାର-ବାବୁଙ୍କଠାରୁ ଆରମ୍ଭ କରି କୋର୍ଟରୁ ସମନ ଜାରୀ କରିବାକୁ ଆସିଥିବା ପିଅନ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ତାଙ୍କ ଦୁଆର ଉନ୍ମୁକ୍ତ । ହାକିମଟିଏ ଆସିଲେ ତାଙ୍କୁ କୋଟିନିଧି ଭଳି ଲାଗେ । ଗର୍ବରେ ଛାତି ଫାଟିପଡ଼େ । ଥରକୁ ପାଞ୍ଚଥର ଆସି ସେମାନଙ୍କର ରହିବା, ଖାଇବାରେ କିଛି ଅସୁବିଧା ହେଲା କି ନାହିଁ ପଚାରି ବୁଝନ୍ତି ।

ଇଂରେଜ ସରକାରଙ୍କ ଅପାର କୃପା ବଳରୁ ତାଙ୍କୁ ସରବରାକାର ପଦବୀ ଖଣ୍ଡେ ମିଳିଥିଲା । ଅର୍ଥାତ୍ ଏଇ ପାଞ୍ଚ ସାତ ଖଣ୍ଡ ଗାଆଁର ଖଜଣା ଅସୁଲ କରି ସରକାରୀ ତହବିଲରେ ଜମା ଦେବା ତାଙ୍କର କାମ ଥିଲା । ସେଥିପାଇଁ ସେ ସରକାରଙ୍କଠାରୁ କ'ଣ ପାରିଶ୍ରମିକ ପାଉଥିଲେ କି ନାହିଁ ଯଦିଓ କାହାକୁ କେବେ ଜଣା ନଥିଲା; ତଥାପି ଏଇ ମାମଲତକାରୀ ପଣିଆ ପାଇଁ ବିଶ୍ୱସ୍ତ ଅନୁଗତ ପ୍ରଜା ହିସାବରେ ବ୍ରିଟିଶ ସରକାର ତାଙ୍କୁ "ରାୟ ବାହାଦୁର" ପଦବୀଟାଏ ଦେଇଥିଲେ ।

ଯେଉଁ ଦିନ ପଟ୍ଟନାୟକଙ୍କୁ ଇଂରେଜ ସରକାର ତରଫରୁ ଏହି ପଦବୀଟା ମିଳିଲା ସେହିଦିନ ତାଙ୍କର ବୈରାଗ୍ୟ ଦେଖିବାର କଥା । ପଟ୍ଟନାୟକ ସମସ୍ତଙ୍କ ଆଗରେ କେବଳ କହୁଥାନ୍ତି – ଉପାଧି ବ୍ୟାଧି-ବରବତ । ମୋର କି ଅବା ଦରକାର ଥିଲା ଏ ଉପାଧି । ମୋତେ ଲୋକେ କ'ଣ ଚିହ୍ନୁ ନଥିଲେ ନା ଚିହ୍ନି ନଥିଲେ ? ଏଇ ପଦବୀରେ ମୋର କ'ଣ ଓଜନ ବଢ଼ିଗଲା ? ଯେଉଁମାନେ ପଦ ପଦବୀ ପାଇଁ ଲାଳାୟିତ ସରକାର ସେମାନଙ୍କୁ ଦିଅନ୍ତୁ । ଏଥିରୁ ମୋତେ ଗୋଟାଏ କାହିଁକି ଦେଲେ......

ପଟ୍ଟନାୟକ ଏ କଥା କହିବା ମାତ୍ରେ ସଙ୍ଗେ ନାଇକଙ୍କୁ ଭଲ ଫ୍ରେମ୍‌ରେ ବନ୍ଧାଇ କରି ଆଣିଥିବା ଉପାଧି ପତ୍ରକୁ ଗୁମାସ୍ତା ନରିମହାନ୍ତିଙ୍କୁ ଦେଇ କହିଲେ ଅଫିସ ଘରେ ଏଇଟାକୁ ମାରି ଦିଅ । ବିଦେଶୀ ସରକାରର ପ୍ରଦତ୍ତ ମାନପତ୍ର ମୋର ସାତ ପୁରୁଷିଆ ପବିତ୍ର ଘରେ ପଶିବ କାହିଁକି ? ବାହାରର ଜିନିଷ ବାହାରେ ରହୁ । ତାଙ୍କ ପଡ଼ିଶା ଲୋକ ଦେଖନ୍ତୁ; ଜାଣନ୍ତୁ, ମୁଁ କିପରି ଉପାଧି ପାଇଁ ଲାଳାୟିତ ହୋଇ ସେଇଟା ସେଫ୍‌ଟି ବା ସିନ୍ଦୂକ ଭିତରେ ପାଟ କନା ଗୁଡ଼ାଇ ସାଇତି ରଖିନାହିଁ ।

ନରି ମହାନ୍ତି ଟିକିଏ ମୁରୁକି ହସି ହସି ପଟ୍ଟନାୟକଙ୍କ ହାତରୁ ମାନପତ୍ରଟା ନେଇ ନେଇ କହିଲେ ଜଗନ୍ନାଥଙ୍କ ବେକରେ ଯେଉଁ ମାଳା ଫୁଲ ହୁଏ, ସେଥିରେ ଠାକୁରଙ୍କର ମହିମା ବଢ଼େ ନାହିଁ ବରଂ ଫୁଲର ମହତ୍ତ୍ୱ ବଢ଼େ । ଦେବତାଙ୍କ ଗଳାରେ ଲାଗି ହୋଇ ଫୁଲ ଆପଣାକୁ ଧନ୍ୟ ମନେ କରେ ।

ହାକିମ ହୁକୁମାମାନଙ୍କୁ ଆତିଥ୍ୟ ଦେଖାଇବାରେ ପଟ୍ଟନାୟକଙ୍କର ଯାହା ଖର୍ଚ୍ଚ ହୁଏ ତାହା ଠିକ୍ ଖରା ଖାଉଥିବା ଧାନ ମଳାରୁ କୁଆ ଖୁମ୍ପାଏ ନେଲାଭଳି । କିନ୍ତୁ ସେ ଅଞ୍ଚଳର ନିରୀହ ଅଧିବାସୀଙ୍କୁ ସେ ଏଇ ଖାତିରରେ ଦବାଇ କରି ରଖିଥାନ୍ତି ।

ସରବରାକାରୀ ଧନ୍ଦା ହେତୁ ଯେଉଁ ଗାଣ୍ଡି ଖଣ୍ଡି, ଗରିବ ଗୁରୁବା ସରକାରଙ୍କର ଖଜଣା କଉଡ଼ି ଗଣ୍ଡାକ ଦେଇ ନ ପାରନ୍ତି ସେମାନଙ୍କର ଭିଟାବାଡ଼ି ଯେତେବେଳେ ନିଲାମ ହୁଏ ସେ ସବୁ ପଟ୍ଟନାୟକ ମହାଶୟ ନିଜ ନାମରେ ଧରନ୍ତି । ଧାନ କୋଠିର ପେଟ ଫୁଲି ଉଠେ । ବର୍ଷକୁ ବର୍ଷ ନୂଆ ନୂଆ ଧାନ କୋଠି ତିଆରି ହୁଏ ।

ଦଶରଥ ପଟ୍ଟନାୟକଙ୍କର ଇତିହାସ ପଢ଼ିବାକୁ କିଛି ନୂଆ ଲାଗୁ ନ ଥିବ । କାରଣ ଏହିଭଳି ଚରିତ୍ର ଅନେକ ସମାଜରେ ଥିବାର ଚିହ୍ନିତ ହୋଇ ସାରିଛି । କେବଳ ଜେନେରେସନ୍ ଗ୍ୟାପ୍ କଥା ଲେଖିଲା ବେଳେ ତାଙ୍କ ବିଷୟରେ ଦୁଇଧାଡ଼ି ଲେଖିବାକୁ ହେଉଛି ।

ଠିକ୍ ଆକବରଙ୍କ ରାଜ୍ୟ ଶାସନ ପ୍ରଣାଳୀ କଥା ପଢ଼ିବାକୁ ହେଲେ ଆମକୁ ଯେପରି ବାବରଙ୍କଠାରୁ ହୁମାୟୁନଙ୍କ ବିଷୟରେ ସବୁ ଜାଣିବାକୁ ହୁଏ ।

ଦଶରଥ ପଟ୍ଟନାୟକ ଯେଉଁଦିନ "ରାୟ ବାହାଦୂର" ଉପାଧିଟା ଧରି ଆସିଲେ ସେହିଦିନ ଗାଆଁରେ ଗୋଟାଏ ମହୋତ୍ସବ ହୋଇଥିଲା । ସେହିଭଳି ମହୋତ୍ସବକୁ ଦେଖିଥିବା ଲୋକମାନେ କହନ୍ତି ଯେ ଆଜିକାଲି ସେପରି ସଭା ସମିତି, ଖିଆ ପିଆ ହେବାର ଦେଖା ଯାଉନାହିଁ ।

ଗାଆଁ ମୁଣ୍ଡରେ ଯେଉଁ ଝଙ୍କାଳିଆ ବରଗଛ ଅଛି ତାହାର ପରମାୟୁ କେତେ ହେବ କେହି କହି ପାରିବେ ନାହିଁ । ତାହାର ଦେହରୁ ସମ୍ଭୂତ କେତେ ପୁଅ ନାତି ଭୂଇଁ ଭିତରେ ସେମାନଙ୍କର ପାଦ ଥୋଇ ବୁଢ଼ା ବରଗଛ ଅଣ୍ଟାକୁ ବଳ ଦେଇଛନ୍ତି । ସେହି ବରଗଛ କୋରଡ଼ରେ ଗାଆଁ ଦେବତୀଙ୍କ ଆସ୍ଥାନ । ତାଙ୍କ ଆଗରେ ଗୋଟିଏ ସିମେଣ୍ଟ ମଣ୍ଡପ । ଠାକୁରାଣୀ ଆଗରେ ମାଟିର କେତେ ହାତୀ ଘୋଡ଼ା ଥୁଆ ହୋଇଥାନ୍ତି । କେତେ ତହିଁରୁ ଭାଙ୍ଗିରୁଜି ଗଲେଣି ତ କେତେ ନୂଆ । ବିଭିନ୍ନ ଓଷା ବ୍ରତରେ, ଆପଦ ବିପଦରେ ଲୋକମାନେ ଠାକୁରାଣୀଙ୍କୁ ଯାହା ସବୁ ମନାସି ଥାନ୍ତି ତାହାର ସ୍ମାରକୀ ସେ ସବୁ । ବରଗଛ ଉପରେ ଲମ୍ବା ବାଉଁଶରେ ବନ୍ଧା ହୋଇ ନାଲି କନାର ପତକା ଫର ଫର ହେଇ ଉଡୁଥାଏ ।

କମଳପୁର ଗାଆଁର ଯେତେ ସଭା ସମିତି ଏଇ ଠାକୁରାଣୀ ମଣ୍ଡପରେ ହୁଏ । ଗାଆଁ ଠାକୁରାଣୀଙ୍କୁ ସମସ୍ତେ ମାନନ୍ତି, ଭାରି ପ୍ରତ୍ୟକ୍ଷ ଦେବୀ । ଲୋକମାନେ କହନ୍ତି ମନରେ ନିଷ୍ଠା ଭକ୍ତି ରଖି ଡାକିଲେ କୁଆଡ଼େ ଠାକୁରାଣୀ 'ଓ' କରନ୍ତି ।

ସେହି ଠାକୁରାଣୀଙ୍କ ପାଖରେ ଦଶରଥ ପଟ୍ଟନାୟକଙ୍କୁ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେ ସମ୍ବର୍ଦ୍ଧନା ସଭାର ଆୟୋଜନ କରିଥିଲେ ନରି ଗୁମାସ୍ତା । ସଭା ପରେ ଗାଆଁ ଲୋକମାନଙ୍କୁ ଭୂରି ଭୋଜନରେ ଆପ୍ୟାୟିତ କରାଯାଇଥିଲା । ପଟ୍ଟନାୟକଙ୍କର ଉନ୍ନତିରୁ ଉନ୍ନତି ହେଉ

କହି ବଡ଼ ପାଟିରେ ହରିବୋଲ ପକାଇ ଗାଆଁ ଲୋକମାନେ ନିଜ ନିଜ ଘରକୁ ବାହୁଡ଼ି ଯାଇଥିଲେ ।

ସଭା ଭାଙ୍ଗିଲା । ପେଟ୍ରୋମାକ୍ସ ଆଲୁଅଟା ଧରି ପଛରେ ବାଞ୍ଛା ମଳିକ ଚଉକିଆ ଆସୁଥାଏ । ଆଗରେ ଚାଲିଥାନ୍ତି ଦଶରଥ ପଟ୍ଟନାୟକ । ପଛରେ ତାଙ୍କର ନରି ଗୁମାସ୍ତା । ହାତରେ ତାଙ୍କର ଗୋଟିଏ ଫୁଲ ମାଳ । ସେହି ମାଳଗୁଡ଼ାକ ଗାଆଁ ବାଲାଙ୍କ ତରଫରୁ ପଟ୍ଟନାୟକଙ୍କୁ ଦିଆ ଯାଇଥିଲା ।

ପଟ୍ଟନାୟକଙ୍କ ମୁହଁରେ ଲାଗି ରହିଥାଏ ଗର୍ବ ଓ ତୃପ୍ତିର ହସ ।

ସବୁ ଦେଖୁଥାଏ ବାଞ୍ଛା ମଳିକ । ଜାତିରେ କଣ୍ଡରା । ଗାଆଁର ଚଉକିଦାର । ପଟ୍ଟନାୟକେ ଗାଆଁର ମୁଣ୍ଡିଆଳ ଭାବରେ ତାହା ଉପରେ ସର୍ବେସର୍ବା । ସେ ସିନା ଡରି କରି ସାନ୍ତଙ୍କ ମୁହଁ ଆଗରେ କିଛି କହି ପାରେ ନାହିଁ । କିନ୍ତୁ ପଛରେ କହିବାକୁ ପଛାଏ ନାହିଁ । ଦରକାର ବେଳେ ସେ ନିଶ୍ଚୟ କହିଦେବ । ହଁ, ହେ, ନିଜ ବଗିଚାରେ ଫୁଟିଥିବା ଫୁଲକୁ ନିଜେ ଘରେ ମାଳ ଗୁନ୍ଥିଲ । ଦରମାଖିଆ ଚାକର ନରି ଗୁମାସ୍ତା ତୁମ ବେକରେ ପକାଇ ଦେଲା । ନିଜ ଅମାରରୁ ଧାନ ନେଇ ପଉଟୀ ଚାଉଳ କଲ, ପୁଣି ପଇସା ଦେଇ ଭୋଜଟିଏ କଲ । କ'ଣ ନା ଗାଆଁ ଲୋକେ ତୁମକୁ ସମ୍ବର୍ଦ୍ଧନା କଲେ । ତୁମ ଲାଗି ଗାଆଁର ଉନ୍ନତି ବଢ଼ିଲା । କହୋ, ତୁମେ ଉପାଧି ପାଇଲେ ଗାଆଁ ଲୋକଙ୍କର କ'ଣ ଗଲା ? ଅଧିକ ଏତିକି ହେଲା, ବଗର ଅଣ୍ଟା ବଢ଼ିଲେ ମୀନଙ୍କର ବିପତ୍ତି ମାଡ଼ି ଆସିଲା ।

ସେହି ବାଞ୍ଛା ଚଉକିଆ ବଞ୍ଚିଥିଲେ ଏବର କମଳପୁରର ହାଲ ହଇକତ ଦେଖୁଥାନ୍ତା । ଛାଡ଼, ସେ'ତ ଦୁନିଆଁରୁ କେଉଁଦିନୁ ମରି ହଜିଗଲାଣି ।

ଦଶରଥ ପଟ୍ଟନାୟକଙ୍କର ଏକମାତ୍ର ପୁତ୍ର ଦୁଷ୍ମନ୍ତ । ସ୍ତ୍ରୀ ଯଶୋଦା ଦେବୀ ବଡ଼ ଧର୍ମପରାୟଣା ମହିଳା ଥିଲେ । ସେ ଚଢ଼େଇ ଚରୁଗୁଣୀଙ୍କର ପେଟ ଚାହୁଁଥିଲେ । ସେଥିପାଇଁ ଗାଆଁ ଲୋକେ କହୁଥିଲେ ଯଦି

ପଟ୍ଟନାୟକଙ୍କର ଡଙ୍ଗା ଗୁଳୁଥାଏ ତେବେ ତାହା ଯଶୋଦା ଦେଵୀଙ୍କ ଧର୍ମ ବଳରୁ ।

ଦୁଷ୍ମନ୍ତଙ୍କର ଗୋଟିଏ ଭଉଣୀ, ନାମ ତାର ନର୍ମଦା । ସେତେବେଳେ ଜନ୍ମ ନିୟନ୍ତ୍ରଣ ଯୁଗ ଆରମ୍ଭ ହୋଇ ନଥିଲା, ନଚେତ୍ ଆମେ ସମସ୍ତେ ମନେ କରନ୍ତେ ଦଶରଥ ପଟ୍ଟନାୟକ ନିଶ୍ଚୟ କେଉଁ ପରିବାର କଲ୍ୟାଣ କେନ୍ଦ୍ରରୁ 'ଛୋଟ ପରିବାର ସୁଖୀ ପରିବାର' ମନ୍ତ୍ର ନେଇ ଫେରିଛନ୍ତି । ଭଗବାନଙ୍କ ଅପାର କୃପା ତାଙ୍କ ଉପରେ । ପୁଣି ମନେ ପଡ଼େ ମନକୁ ଆସେ ଭଗବାନଙ୍କର ଏ କି ବିଚାର ? ଯାହା ଘରେ ବାମ୍ଫି ଓଳିକ ଦାନା ନଥିବ ତାହାର କୋଳରେ ବର୍ଷକୁ ବର୍ଷ ଗୋଟାଏ କରି ଗୁଞ୍ଜିଦେବେ ଆଉ ଯେଉଁଠାରେ ଖିଆ, ସରୁ ଚକୁଳି ପଚି ସଢ଼ି ଯାଉଥିବ ସେଇଠାରେ ଦେବେ ଗୋଟିଏ କି ଦଓଟି ।

ଯଶୋଦା ଦେଵୀ ବେଳେବେଳେ ମନ ଦୁଃଖ କରି କହି ବସନ୍ତି ଗୋଟିଏ ଆଖି ଆଖି ନୁହେଁ କି ଗୋଟିଏ ସାକ୍ଷୀ ସାକ୍ଷୀ ନୁହେଁ । ସେଇପରି ଗୋଟିଏ ପୁଅ କାଣୀ ଆଖିର କଜଳ ଟିପା । ଯାହାର ଭାଇ ନଥାଏ ସେ ପିଲା ଦୁନିଆଁରେ କିଛି କରିପାରେ ନାହିଁ । ଆପଦ ବିପଦ ବେଳେ କାନ୍ଧ ଲଗିବାକୁ କେହି ନଥାନ୍ତି । ସେଥିପାଇଁ କଥାରେ ଅଛି କଳି ଯେବେ କରି ବସିବୁ ସଙ୍ଗେ ଥିବ ଭାଇ । ଯୋଡ଼ାକୁ ଘୋଡ଼ା ସରି ନୁହେଁ । ଗୋଟାକୁ ଦୁଇଟା ପୁଅ ଯାହାର ଅଛି ତାହାର କେତେ ହିମ୍ମତ ।

ଠିକ୍ ସେତିକବେଳେ ଦଶରଥ ପଟ୍ଟନାୟକ ବୁଢ଼ୀଙ୍କୁ ବୁଝାଇ କହନ୍ତି ମୁଁ ଦେଖୁଛି ତୁମେ ତ ମହା ନିବୁ'ଦ୍ଧିଆ । ତୁମେ କ'ଣ ଭାବୁଛ ଭଗବାନଙ୍କଠାରୁ ତୁମର ବିଚାର ବଡ଼ ସରସ ? କାରଣ ସିଏ ଯାହାକୁ ଯାହା ଦିଅନ୍ତି ତାହା ପଛରେ ତାଙ୍କର କିଛି ଚିନ୍ତା ଥାଏ । ପୁଅ ଗୋଟିକରୁ ଦୁଇଟି ହେଲେ ଲାଭ ଅପେକ୍ଷା କ୍ଷତି ବେଶୀ । କାରଣ ଯେତେ ଭାଇ—ସେତେ ଘର । ଏ ସମ୍ପତ୍ତି ନିଶ୍ଚୟ ଦୁଇଭାଗ ହୁଅନ୍ତା ଏ ଘରେ ପାଚେରୀ ଉଠନ୍ତା । ବିଲମାନଙ୍କରେ ହୁଡ଼ା ଦିଆ ହୁଅନ୍ତା । ଦୁଇଟା ଭାଇ ଭିତରୁ ନିଶ୍ଚୟ ଗୋଟାଏ ପରବୁଦ୍ଧିଆ ହୁଅନ୍ତା । ଭାଇ ଭାଗ ପାଇଁ

କୋର୍ଟ କଚେରୀକୁ ଦଉଡ଼ି ପୈତୃକ ସମ୍ପତ୍ତି ଭୂତଙ୍କୁ ଖୁଆନ୍ତି । ତେଣୁ ଭଗବାନ ଯାହା ଦେଇଛନ୍ତି ତାହା ଭଲ । ସନ୍ତୋଷ ଚିତ୍ତରେ ତାଙ୍କ ଦାନକୁ ଗ୍ରହଣ କରିନେବା ଉଚିତ ।

ତଥାପି ଯେତେବେଳେ ଯଶୋଦା ଦେବୀଙ୍କ ଅବୁଝା ମନଟା ତୃପ୍ତ ନ ହୁଏ ସେତେବେଳେ ହସି ହସି ପଟ୍ଟନାୟକେ କହନ୍ତି : କଉ ନର୍ମଦା କ'ଣ ଆମର ଝିଅ ? ସେ ପର ପୁଅଟିଏ । ସେ କଥା କାହିଁକି ମନକୁ ଆଣୁନ ?

ଯଶୋଦା ଦେବୀ ମୁହଁକୁ ବୁଲାଇ ନିଅନ୍ତି । ସ୍ୱାମୀଙ୍କ କଥାକୁ ଅପସନ୍ଦ ମଣନ୍ତି । କହନ୍ତି ଯାଅ ହେ, ସେ ବାହାପିଆ ଭସକୁଣ୍ଡ କଥାଗୁଡ଼ା ଆଉ କାହାକୁ କହିବ । ଯେତେହେଲେ ପୁଅ, ପୁଅ, ଆଉ ଶତ ଚେଷ୍ଟା କଲେ କ'ଣ ଝିଅ ପୁଅ ହୋଇଯିବ ? ଝିଅ ଜନମ ପର ଘରକୁ, ଯେତେ ଯାହା କହ ଝିଅ ଝିଅକୁ କିଏ ବେଶୀ ଦିନ ଘରେ ସଂପାଦିଲଣି ନା ରଖି ପାରିଛନ୍ତି ? ବୟସ ଲଗିଲେ ନିଶ୍ଚୟ ସେ ପର ଘରକୁ ଯିବ । ତାଙ୍କଠାରେ ତୁମର କି ଅଧିକାର ? ଯେତେହେଲେ ସେମାନେ ପର ଜିନିଷ······ ।

ହସି ହସି ପଟ୍ଟନାୟକେ କହନ୍ତି ପରକୁ ଆପଣାର କରିବାରେ ବାହାଦୁରୀ ଜଣାପଡ଼େ । ପର ପୁଅକୁ ଆପଣାର ପୁଅ କରିଦେବ । ଆମେ ଯାହାଙ୍କୁ ଆମ ଝିଅକୁ ଦେବା ତା'ବଦଳରେ ତାଙ୍କ ପୁଅକୁ କ'ଣ ଆଣି ପାରିବା ନାହିଁ ? ସେତିକି ତରିକା ଯାହାକୁ ଜଣାଥିବ ସେ ନଅ ଝିଅର ବାପ ହୋଇଥିଲେ ସୁଦ୍ଧା ତାର ଦୁଃଖ ନାହିଁ । ଗୋଟାଏ ନୁହେଁ, ଦିଇଟା ନୁହେଁ, ନଅଟା ପର ପୁଅ ସ୍ନେହ, ମମତା ପାଇଲେ କୁକୁର ପରି ତାହା ଦୁଆରେ ବନ୍ଧା ହୋଇ ପଡ଼ିଥିବେ । ନିଜ ପୁଅ ସିନା କେବେ କମିତି ନିମକହାରାମ ହୋଇପାରେ କିନ୍ତୁ ଆଜିକାଲି ଜୁଆଇଁମାନେ ବଡ଼ ଶ୍ୱଶୁରଭକ୍ତ । ସେମାନଙ୍କୁ ନିଜ ବାପ ଅପେକ୍ଷା ଶ୍ୱଶୁର ବଡ଼ ଦିଶନ୍ତି । ସାନ ଭଉଣୀ ପାଇଁ ଗଟେ ରିବନ କିନା କିଣି ଦେବାକୁ ସିନା ପାଖରେ ପଇସା ନଥାଏ, କିନ୍ତୁ ଶା'ଳୀମାନଙ୍କ ପାଇଁ ଦଶ ଗଜ ଶାଢ଼ୀ କିଣି ଉପହାର ଦେବାକୁ ଫୁରସତ୍ ନଥାଏ ।

ଯଶୋଦା ଦେବୀ କହନ୍ତ କ'ଣ କହିଲ ? ଯିଏ ଜନମ କରିଥିଲା, ନାଭି ନାଡ଼ କାଟି, ଇଚ୍ଛାରେ, ଗୁହ ମୁତ କରି ପାଠଶାଠ ପଢ଼ାଇ ଯୋଗ୍ୟ କଲା ତାହାର କୋଳରୁ ତୁମେ ତାହା ପୁଅକୁ ଶିଖେଇ ଛଡ଼ାଇ ଆଣିବ ? ତୁମର ଏଇ ବୁଦ୍ଧି ନା ? କାକର ଚପୁଡ଼ିଲେ କ'ଣ ଘଡ଼ା ପୂରିବ ?

ପାନ ଖିଆ ଦାନ୍ତ ଦୁଇ ଗୋଡ଼ିକ ଦେଖାଇ ଦେଇ ହସି ହସି ପଞ୍ଚାନନ୍ଦ କହନ୍ତ : ତୁମେ ସିନା କାକର ଚପୁଡ଼ିଲ କଥା ଜାଣି; ମୁଁ ଜାଣୁ ବୁଝେ ଗୋଟାଏ ଘର ଭାଙ୍ଗିଲେ ଆଉ ଗୋଟାକର ଘର ମଜଭୁତ, ହୁଏ । ଛେଳି ଜୀବ ନେଲେ, ବାଘର ପ୍ରାଣ ବଞ୍ଚେ ।





କଥାରେ କହନ୍ତି—ଅଣ୍ଟାରେ ନଥାଏ ଧନ, ଝିଅ ବାହା କର ମନ ।

ପ୍ରକୃତରେ ଯାହା ଅଣ୍ଟାରେ ପଇସା ନ ଥିବ ସେ କାହିଁକି ଅବା ଝିଅ ବାହାଘର କଥା ଚିନ୍ତା କରିବାକୁ ଯିବ ? ଏ ଯେଉଁ କାଳର କଥା ହେଉ ନା କାହିଁକି ଏବେ ମଧ୍ୟ ଏହାର ମହତ୍ତ୍ୱ ଅଛି । ଭବିଷ୍ୟତରେ କ'ଣ ହେବ ତାହା କିଏ କହି ପାରିବ ?

ଝିଅ ବାହା କରିବା ପାଇଁ ଯେଉଁ ବାପ ଅଣ୍ଟାରେ ପଇସା ନ ଥିବ ସେ କ'ଣ ଭଲ ଜୁଆଇଁଟିଏ କିଣି ଆଣି ପାରିବ ? ପଇସାକୁ ଚାହିଁ ଜିନିଷ, କାର୍, କୋଠା ଦେଇ ପାରିବ ତ ଆଇ. ଏ. ଏସ୍. ବର । ସ୍କୁଟର ଦେବ ତ ଡାକ୍ତର, ଇଂଜିନିୟର । ଆଉ ଘଣ୍ଟି ସାଇକେଲ ଦେଲେ କିରାଣୀ ଠାରୁ ମାଷ୍ଟ୍ର ପର୍ଯ୍ୟନ୍ତ । କିଛି ନ ଦେଇ ପାରୁଥିଲେ ବଜାର ଭିତରେ ଭଲ ପାନଟିଏ ଖୋଜିବା ସାର ହେବ । ତଳପାରୁ ଚମ ଛିଡ଼ିଯିବ । ଏଣେ ଝିଅ ଖୁଣ୍ଟରେ ବୁଢ଼ୀ ହେବ ।

ଦଶରଥ ପଟ୍ଟନାୟକଙ୍କର ନ ଥିଲା କ'ଣ ? ତେଣୁ ନର୍ମଦା ପାଇଁ ସେ ଭଲ ପାତ୍ରଟିଏ କଣି ନ ପାରନ୍ତେ କାହିଁକି ? ଝିଅ ତ ଅସୁନ୍ଦରୀ ନୁହେଁ, ପାଠ ଯାହା ପଢ଼ିବା କଥା ପଢ଼ିଛି । ଏ ସବୁକୁ ମାର ଗୋଲି । ଅସଲ ତ ହାତରେ ଧନ ଅଛି ! କୁହ କେତେ ନେବ ?

ଗୋରୁ ହାଟରେ ଖରିଦ୍‌ଦାର ଟଙ୍କା ଗାଞ୍ଜିଆ ଝଣଝାଣ କଲା ପରି ପଟ୍ଟନାୟକେ କେବଳ ବନଶୀର ଥୋପ ଦେଖାଇ ଚାଲିଥାନ୍ତି । ନଗଦ ଟଙ୍କା ପାଞ୍ଚ ହଜାର ? ଦଶ ହଜାର ? ଆଚ୍ଛା କୋଠା ବନେଇ ଦେବି । ରାଜି ତ ? ମଧ୍ୟସ୍ଥିମାନଙ୍କଠାରୁ ଏତିକି ଶୁଣିବା ପରେ ପୁଅ ବାପମାନଙ୍କର ପାଟି ଲାଳେଇଲା । ଯାହା ହେଉ ଏତେ ବଡ଼ ଘର, ଏତେ ସମ୍ପତ୍ତି, ରାୟବାହାଦୂର ବୁନିଆଦି, ଭାଗ୍ୟରେ ଥିଲେ ମିଳେ । ନାହିଁ କରିବେ କେତକେ ?

ସେମାନେ ଆସିଲେ ବୋହୂ ଦେଖିବାକୁ । ବୋହୂ ତ ପସନ୍ଦ ହେବା କଥା, ହେଲା । କିନ୍ତୁ······ ।

ଏଇ 'କିନ୍ତୁ' ଶବ୍ଦଟା ବଡ଼ ଅନର୍ଥର କାରଣ । ଯେତେ ଯାହା କହ ଏଇ ଶବ୍ଦଟା ପାଇଁ ମଣିଷ କିଛି ନିଷ୍ପତ୍ତି କରି ପାରେ ନାହିଁ । ବାପ କହେ ସବୁ ଭଲ କିନ୍ତୁ·········· ।

ପଟ୍ଟନାୟକେ ପ୍ରଶ୍ନ କରନ୍ତି କ'ଣ ଆଉ ଦରକାର ?

ମୋତେ କ'ଣ ଦେଉଛନ୍ତି ? ଯାହା ଦେଉଛନ୍ତି ସେସବୁ ଆପଣଙ୍କ ଝିଅ ଜୋଇଁଙ୍କୁ । ତେଣୁ ସେଥିରେ ମୋର ଆପତ୍ତି କରିବାର କ'ଣ ଅଛି । କିନ୍ତୁ······ ।

କଣ ପୁଅ ଦେଖିବ ?

ଆପଣ କ'ଣ ଭାବୁଛନ୍ତି ମୋ ପୁଅର ମୋ ଉପରେ ଆସ୍ଥା ନାହିଁ ? କିନ୍ତୁ······ ।

ତେବେ ସେ 'କିନ୍ତୁ'ଟି କ'ଣ ?

ଆପଣ ବର ଦେଖନ୍ତୁ ତ······ ।

ହସି ଉଠନ୍ତି ଦଶରଥ ପଟ୍ଟନାୟକ । ଆରେ ମୁଁ ଯେତେବେଳେ ଝିଅ ବିଭା ଦେବି ସେତେବେଳେ ମୋର ଜୁଆଇଁ ଦେଖିବା କଥା ମୁଁ ଦେଖିବି । କିନ୍ତୁ ତୁମର ତ କନ୍ୟା ପସନ୍ଦ କରିବାର କଥା ।

ଯଶୋଦା ଦେବୀ ସେଇଠାରେ କହନ୍ତି କନ୍ୟା ସେମାନଙ୍କର ପସନ୍ଦ ହେଲେ ସିନା ସେମାନେ ବନ୍ଧୁ କରିବେ ।

ଦଶରଥ ପଟ୍ଟନାୟକ ଖିଙ୍କାରି ଉଠି କହନ୍ତି କବାଟ ଫାଙ୍କରେ କ'ଣ ଶୁଣୁଥିଲ । ଯାହା ଶୁଣିଥିଲ ସେଇଥିରୁ କ'ଣ ଏଇ କଥା ସମଝିଲ ? କନ୍ୟା ପସନ୍ଦ ଅପସନ୍ଦ କଥା ପଡ଼ି ନାହିଁ । ମୋର ଜ୍ୱାଇଁ ପସନ୍ଦ କରିବା କଥା ସେମାନେ ଭାବୁଛନ୍ତି, ଗର୍ବରେ ହସି ଉଠି ପୁଣି କହନ୍ତି ହେଃ-ହେଃ-ଶୁଣୁଛ କୁନା ବୋଉ । ରାୟବାହାଦୂର ଦଶରଥ ପଟ୍ଟନାୟକ ଝିଅ ବିବାହ ଦେବ ନାହିଁ ଯେ ବରଂ ଜୁଆଇଁ କିଣିବ ? ମୋ ଦୁଆରକୁ ଦେଖିବ ବାଉନ କୁଡ଼ା ଆସିବେ । ମୁଁ ବର ପସନ୍ଦ କରିବି । ନର୍ମଦା ମୋ ଝିଅଟି ! ତାକୁ ପୁଣି ବାଛିବ କିଏ ?

ପ୍ରକୃତରେ ଅଣ୍ଟାରେ ଯେଉଁ କନ୍ୟା ପିତାର ଧନ ଅଛି ତାକୁ ବର ଅପ୍ରାପ୍ତ ହେବ ନାହିଁ ।

ପୁରାଣରେ ଲେଖା ଅଛି ରାଜା ଜନକଙ୍କ ଝିଅ ସୀତାଙ୍କ ପାଇଁ ସ୍ୱୟମ୍ବର ସଭା ହୋଇଥିଲା । ସେ ବର ବାଛୁଥିଲେ ଦ୍ରୌପଦୀଙ୍କ ପାଇଁ ମଧ୍ୟ ସେୟା । ଠିକ୍ ସେଇମିତି ଦଶରଥ ପଟ୍ଟନାୟକ ରାୟ ବାହାଦୂର ହେବା ପରେ ଦ୍ରୁପଦ ଏବଂ ଜନକ ରାଜାଙ୍କଠାରୁ କେଉଁ ଗୁଣରେ କମ୍ କି ? ବର ଅନେକ ଆସିଲେ । ଶେଷରେ ବାଛୁ ବାଛୁ ଜ୍ୱାଇଁ କରାଗଲା ଅବିନାଶ ବାବୁଙ୍କୁ ।

ଅବିନାଶ ବାବୁଙ୍କର ଗୁଣକେଇଟି କେବଳ ସମ୍ବଲ, ସେ ସେପରି ବିତ୍ତବାନ ନୁହଁନ୍ତି । ରହିବାକୁ ଭଲ ଘର ଖଣ୍ଡିଏ ନଥିଲା । ଅବିନାଶଙ୍କ ବାପା ଦଶରଥ ପଟ୍ଟନାୟକଙ୍କ ଠାରୁ ନଗଦ ଦଶହଜାର ନେଲେ । ପୁଅକୁ ଜ୍ୱାଇଁ ରୂପେ ବିକି କରିଦେଲେ । ସେହିତକ ଟଙ୍କାରେ ଅବଶ୍ୟ ଟାଇଲ ବସ୍ତି ଛାତ ଘରେ ପାଞ୍ଚ ବଖରା ସେ କଲେ ।

ଯଶୋଦା ଦେବୀ ସେତେବେଳେ ଆଖିରୁ ଲୁହ ଥପ୍ ଥପ୍ ଝରାଇ ଦଶରଥ ବାବୁଙ୍କୁ କହନ୍ତି ମୋ ଝିଅକୁ ଏପରି ଘରେ ଦେଇଦେଲ ? କେବଳ ପିଲାଟିକୁ ଗୁଡ଼ଦେଲେ ଆଉ ବନ୍ଧୁ ସୁଖ କଣ ପାଇବା ?

ହସନ୍ତି ପଟ୍ଟନାୟକେ । କହନ୍ତି ଗରିବ ଘରୁ ଝିଅ ଆଣିଲେ ଲୋକଙ୍କର ବିଶ୍ୱାସ ସେ ଭଲ ବୋହୂ ପଣିଆ କରିବ । ସମସ୍ତଙ୍କୁ ଡରିମରି ଚଳିବ । କିନ୍ତୁ ମୋ ମତ ହେଲା, ବଡ଼ଘର ପିଲାକୁ ବ୍ୱାହାଁ କଲେ ସେ ଶଶୁରକୁ ଖାତିର କରିବ ନାହିଁ । ତେଣୁ ଅବିନାଶକୁ ପସନ୍ଦ କଲି । ପିଲା ହିସାବରେ ଅବିନାଶ ମନ୍ଦ ନୁହେଁ । ସରକାରୀ ଚାକିରୀଟିଏ କରିଛି । ଅଫିସର ହୋଇଛି । ସରକାର ତାର ରହିବା ପାଇଁ ଭଲ ବଙ୍ଗଳା, ଫୁଲ ବଗିଚା, ଆଉ ବୋଲ ହାକ କରିବା ପାଇଁ ଅଡ଼ଲି ପିଅନ ସବୁ ଖଞ୍ଜି ଦେଇଛନ୍ତି । ନର୍ମଦାର ପ୍ରକୃତ ଶାଶୁଘର ହେଉଛି ସେଇଠା । ଏଇ ଯେଉଁ ଗାଆଁକୁ ସେ ବୋହୂ ହୋଇଗଲା ସେଠାରେ ରହଣି ମାତ୍ର ସାତଦିନ କି ଆଠଦିନ । ତାପରେ ସେ ଚାଲିଯିବ ସହରକୁ । ସେଠାରେ ସବୁ ସୁବିଧା ଅଛି । ଏହିକ୍ଷଣି ଅବିନାଶର ଚାକିରୀ ଜୀବନ ଆରମ୍ଭ । ତେଣୁ ଝିଅ ତୁମର ବୁଢ଼ୀ ହେବା ପର୍ଯ୍ୟନ୍ତ ରହିବ ସରକାରୀ ଘରେ । ବାର ହାତ କୂଅରୁ ପାଣି କାଢ଼ିବାକୁ ପଡ଼ିବ ନାହିଁ । କଳ ମୋଡ଼ିଲେ ଝର ଝର ପାଣି । କାନ୍ଥରେ ହାତ ମାରିଲେ ଲାଇଟ୍ ଜଳି ଉଠିବ । ଆଉ ଡିବିରି ଲଣ୍ଠନ ପୋଛି ହାତ କଳା କରିବ ନାହିଁ । ଚାକର ବାକର ମାଳ ମାଳ । ଯାଉଣୁ ଆସୁଣୁ ମାଆ ଡାକ । ଯିବା ଆସିବାକୁ ସରକାରୀ ଗାଡ଼ି । ଆଉ କମିତିକା ବ୍ୱାହାଁ କରିଥିଲେ ତୁମ ମନ ସନ୍ତୋଷ ହୋଇଥାନ୍ତା ? ନର୍ମଦା ଯଦି ମୋର ପ୍ରକୃତ ଝିଅ ହୋଇଥିବ ତେବେ ତାକୁ ନିଜର କୋଠବାଡ଼ି କରିବାକୁ ବେଶୀ ସମୟ ଲାଗିବ ନାହିଁ । ଯଦି ତୁମ ଭଳି ହୁଣ୍ଡୀ ହୋଇଥିବ ତେବେ ପତି ପରମଗୁରୁ କହି ଆଦେଶ ଶିରୋଧାର୍ଯ୍ୟ କରୁଥିବ । ନିଜର ବୁଦ୍ଧି ବିବେକ କିଛି ଖଟାଉ ନଥିବ ।

ଯଶୋଦା ଦେବୀ ପଟ୍ଟନାୟକଙ୍କ ମୁହଁରୁ କଥା ଛଡ଼ାଇ ନେଇ କହି ବସନ୍ତି କ'ଣ କହିଲ ? ମୋ ଝିଅ ପତିକୁ ପରମଗୁରୁ ବୋଲି ମାନିବ ନାହିଁ ? ସେତିକି ଯଦି ନ କରେ ତେବେ ମୁଁ କହିବି ସେ ମୋ ଝିଅ ନୁହେଁ । ମାଇପି ଜନମ ସାର୍ଥକ ହୁଏ ପତି ସେବାରେ । ପୁରୁଷ

ପୁଅକୁ ମାଇପି ଝିଅ କ'ଣ ବୁଦ୍ଧି ଦେବ ? ଶୁଣିନ ଶାସ୍ତ୍ର ସଦାବେଳେ କହନ୍ତି ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ । ଯିଏ ମାଇପ କଥାରେ ଚାଲେ, ସେଇଟା ମାଇଚିଆ । ସବୁ ଦୁର୍ଦ୍ଦଶା ଭଗବାନ ତାହାର କପାଳରେ ଲେଖିଥାନ୍ତି । ପୁରୁଷ ପୁଅର କେତେ ବିବେକ ! ତାକୁ ପୁଣି ବୁଦ୍ଧି ବତାଇବ ସ୍ତ୍ରୀ ?

ଅଛା କର ପଟ୍ଟନାୟକେ କହନ୍ତି ଭଲ କଥା, ଠିକ୍ ତୁମର ଭଳି ଯାହାର ସ୍ତ୍ରୀ ଥିବ ତାହାର ତ କପାଳ ଜାଣ ତେଜାଲ୍ । ଆଜିକାଲିକାର ଟୋକାଗୁଡ଼ାକ ତେବେ ଏତେ ପାଠୋଇ ଝିଅ ବାହା ହେବାକୁ କାହିଁକି ମନ କରୁଛନ୍ତି ?

: ପାଠୋଇ ଝିଅକୁ ଯଦି ନକର ଗୁମାସ୍ତା ନକର ମନ୍ତ୍ରୀ କରିବାକୁ ଇଛା କରୁଥାନ୍ତି ତେବେ ସେମାନେ ଭୁଲ କରୁଛନ୍ତି । ଏଇଥି ପାଇଁ ଦେଖୁନ ବାହାହେଲା ପରେ ସ୍ୱାମୀମାନଙ୍କର ବହପ ପାଇ ଆଜିକାଲିକାର ଝିଅଗୁଡ଼ାକ କପର ଉଦ୍ଧଣ୍ଡୀ ହୋଇ ଉଠୁଛନ୍ତି । ସ୍ୱାମୀକୁ ଖାତିର କରୁ ନାହାନ୍ତି । ସେମାନଙ୍କ ଲେଖାରେ ସ୍ୱାମୀ ହେଉଛି କଣା ଚାକର ।

ହସି ପଟ୍ଟନାୟକେ କହନ୍ତି ଅସିଝା ସିଝେନା, ଆଉ ଅବୁଝା ବୁଝେନା । ତୁମର ସିନା ଜ୍ଞାନ ଥିଲେ ବୁଝନ୍ତ ?

ସ୍ୱାମୀଙ୍କ କଥାକୁ ହସରେ ଉଡ଼ାଇ ଦେଇ ଯଶୋଦା ଦେଈ କହନ୍ତି, ହଁ ହେ, ମୋର ତ ଏଇମିତି ଗଲାଣି କାଳକ, ଆଉ ବାକି ଅଛି ଫାଳକ । ଭଗବାନ ଚାହିଁଲେ ସେତକ ସେଇମିତି ଚାଲିଯିବ । ମୁଁ ଜାଣିଛି ମନରେ ଛନ୍ଦ କପଟ ନଥିଲେ ମୋର ଭଗବାନ କିଛି କ୍ଷତି କରିବେ ନାହିଁ । ସୁରୁଖୁରୁରେ ହାତରେ କାଚ, ମୁଣ୍ଡରେ ସିନ୍ଦୂର ନାଇ ମୁଁ ଅଧ୍ୟ ତେଙ୍ଗୁରା ପିନ୍ଧି ଚାଲିଯିବି·········

ବିରକ୍ତିରେ ମୁହଁ ଫେରାଇ ଉଠି ଯାଆନ୍ତି ଦଶରଥ ପଟ୍ଟନାୟକ ।



ମନ ଗୁଣେ ଫଳ ଫଳେ ।

ଯଶୋଦା ଦେବୀଙ୍କ ଭାବନା ତାହାଙ୍କୁ ମିଳିଲା । ସତକୁ ସତ ସେ ...ଏବଣୀ ହୋଇ ଡେଙ୍ଗୁର୍ ପିଟିଦୁଇ ହାତରେ କାଚ ଦୁଇମୁଠା, ମଥାରେ ସିନ୍ଦୂର ଧରି ଚାଲିଗଲେ । ଯେଉଁ ପଟ୍ଟନାୟକଙ୍କ ଘରକୁ ଦିନେ ସେ ବାଜା ବଜାଇ ସବାରିରେ ବୋହୂ ହୋଇ ଆସିଥିଲେ ସେହି ଘରେ ବୋଉ ଡାକ ଶୁଣି ପୁଣି ବାଜା ବଜାଇ କୋକେଇରେ ଶୋଇ ବିଦାୟ ନେଇଗଲେ ।

ପଟ୍ଟନାୟକଙ୍କ ଘରକୁ ଏକା ଆସିଥିଲେ । ଗଲାବେଳେ ବି ଏକା ଚାଲିଗଲେ । ଏଇ ଆସିବା ଓ ଯିବା ଭିତର ବ୍ୟବଧାନରେ ... ଯେଉଁ ଜଞ୍ଜାଳ ସୃଷ୍ଟି କରିଗଲେ ସେ ସବୁକୁ ଛାଡ଼ିଦେଇ ଗଲେ । ... ଜଞ୍ଜାଳକୁ ନେଇ ଧାଣ୍ଡିହେଲେ ଦଶରଥ ପଟ୍ଟନାୟକ । ଜନ୍ମଦାତା ...ବରେ ଝିଅ ନର୍ମଦାକୁ ହାତକୁ ଦୁଇହାତ କରାଇଲେ । ପୁଅ ...କୁ ବାହା କରି ଘରକୁ ବୋହୂଟିଏ ଆଣିଲେ । ବାପର ସୁପୁତ୍ର ...ବରେ ପୈତୃକ ସମ୍ପତ୍ତିକୁ ଗୁଣକରୁ ଚାରିଗୁଣ କଲେ ।

ଏ ଜନ୍ମଭୂମି ମୋର, ମୁଁ ତୁମମାନଙ୍କ ପାଇଁ, ଏ ସଂସାର ଅନିତ୍ୟ, ମିଛ ମାୟାରେ ପଡ଼ି ମଣିଷ ଘାଣ୍ଟି ହେଉଛି ଏହିଭଳି ଛଳନାର ବାଣୀମାନ ଜୀବନ ସାରା ଶୁଣାଇ ଯେତେବେଳେ ପଟ୍ଟନାୟକ ଗାଆଁ ମୁଣ୍ଡ ମଶାଣିକୁ ସବୁ ଛାଡ଼ି ବାହାରି ଗଲେ; ତାଙ୍କ ପଛରେ ଲୋକମାନେ କହିବାକୁ ଲାଗିଲେ : ଓହୋ ! ଏଡ଼େ ଧର୍ମଠକ ଥିଲା ? କେତେ ଗରିବଙ୍କୁ ନ ସନ୍ତୁଳିଛି ? ଜୀଇଥିବା ପର୍ଯ୍ୟନ୍ତ ତ ଏତେ ଲୋଭ କରୁଥିଲା ଆଉ ଗଲାବେଳେ ସଙ୍ଗରେ ନେଇଗଲା କଣ ? ସିଏ କ'ଣ ଭାବିଥିଲା ତାକୁ ମଧ୍ୟ ଛ ଖଣ୍ଡ ବାଉଁଶରେ ଶୁଆଇ ଦଉଡ଼ିରେ ବାନ୍ଧି ଏଇ ଗାଆଁ ଲୋକେ ନେଇ ନିଆଁରେ ପୋଡ଼ି ଦେଇ ଆସିବେ ?

ସେଥିପାଇଁ କହନ୍ତି ପ୍ରାଣୀର ଭଲ ମନ୍ଦ ପ୍ରାଣୀ, ମରଣକାଳେ ତାହା ଜାଣି ।

ରାୟବାହାଦୂର ଦଶରଥ ପଟ୍ଟନାୟକ ପ୍ରତିଦିନ ଭାଗବତରୁ ଅଧ୍ୟାୟଟିଏ ପଢ଼ି ପଢ଼ି ସେ କଥା ବୁଝିଲେ ନାହିଁ; ଆଉ ତାଙ୍କ ପୁଅ ଦୁଷ୍ମନ୍ତବାବୁ, ଏତେ ପାଠ ପଢ଼ି ସେ ଅବା କ'ଣ ସମଝିଲେ କି ? ସେ ଯଦି ବିଚାର କରିଥାନ୍ତେ; ଆପଣା କଲା କର୍ମମାନ ଆଗୁ ହୋଇବ ସାବଧାନ ତେବେ ସେ କ'ଣ ସତର୍କ ହୋଇ ନଥାନ୍ତେ ?

ଠିକ୍ କଥା । ଏଇକଥା କହିଲା ବେଳକୁ କେତେଗୁଡ଼ିଏ କଥା ମନେ ପଡ଼େ । ସେଗୁଡ଼ିକ ହେଲା—ବାପ ଗୁଣେ ପୁଅ । ଆମ୍ବ ଗଛରେ କ'ଣ ଆମ୍ବଡ଼ା ଫଳିବ ? ନହେଲେ ଧାର୍ଯ୍ୟ ଗୁଣେ ମିରିଗ ଫୁଟୁ ଫୁଟିକା ।

ପିଲାଟିଏ ଜନ୍ମ କରିଦେବା କଥା ସହଜ ହୋଇପାରେ କିନ୍ତୁ ବାପ ହେବା ସହଜ ନୁହେଁ । କେତେ ଭାବିଲେ; କେତେ ଚିନ୍ତିଲେ ତୁମେ ଅନ୍ୟ ଆଖିରେ ଆଦର୍ଶ ହୋଇପାରିବ । ଆଉ କେତେ ସଦ୍‌ଗୁଣ ଭେଟିଲେ ପିଲାଏ ତୁମକୁ ଅନୁକରଣ କରିବେ । ଗୁଣିର ହେବେ । ତୁମର ନାମ ରଖିବେ ।

ସଂସାରୀ ହେବାକୁ ହେଲେ ବହୁତ ତ୍ୟାଗ କରିବାକୁ ହୋଇଥାଏ । ସେ ତ୍ୟାଗ କେବଳ ସୁନା, ଟଙ୍କା, ଧନ ସମ୍ପତ୍ତି ନୁହେଁ; ତାହା ହେଉଛି ବିଳାସ ବ୍ୟସନ ଆଉ ସ୍ୱାର୍ଥପରତା ।





ରାଜୁ ସାହୁ ବଡ଼ ଗପୁଡ଼ି ।

ସେ ଯଦି କଥା କହି ବସିବ ଶୁଣିବା ଲୋକ ସିନା ଧୈର୍ଯ୍ୟ ହରାଇ ପାରେ କିନ୍ତୁ ସେ ଗପି ଚାଲିଥିବ । ପାଖକୁ ତାର ଦୁଇ ଚାରିଟା ଶ୍ରୋତା ଥିବା ଦରକାର । କେବଳ ସେମାନେ ଶୁଣୁଥିବେ । କଥା ମଝିରେ ମଝିରେ ହୁଁ ମାରୁଥିବେ । ସେଥିପାଇଁ ଦରକାର ପଡ଼ିଲେ କପେ, ଦି କପ ଚାହା ମାଗଣା ଦେବାପାଇଁ ସେ ମନାକରେ ନାହିଁ ।

ସେଦିନ ସକାଳୁ ରାଜୁ ସାହୁ ଗପି ଚାଲିଥାଏ କମଳପୁରର ଇତିହାସ । କିପରି ଏଇ ଗାଆଁ ସଁବାଳୁଆ ପୋକରୁ ସୁନ୍ଦର ପ୍ରଜାପତିଟିଏ ହେଲା । ଚାରି ପାଞ୍ଚଟା ରେକ୍ସାବାଲା ଟୋକା ହାତରେ କପେ କପେ ଚାହା ଧରି ନିବିଷ୍ଟ ଚିତ୍ତରେ ଶୁଣୁଥାନ୍ତି ।

ଦୁଷ୍ମନ୍ତ ବାବୁ କଟକରେ ପାଠ ପଢ଼ିଲା ବେଳେ ଖଦଡ଼ ପିନ୍ଧିଲେ । ଯେଉଁ ଦିନ ଦଶରଥ ପଟ୍ଟନାୟକ ଖବର ପାଇଲେ ଯେ ପୁଅ ଖଦଡ଼ ପିନ୍ଧିଲାଣି ସେହିଦିନ ତାଙ୍କର ମନର ବ୍ୟସ୍ତତା ଆଉ କହିଲେ ନସରେ । ଖାଲି ମାରିବେ କି ମରିବେ ହେଉଥାନ୍ତି ।

ସେତେବେଳେ ଇଂରେଜମାନଙ୍କ ବିରୁଦ୍ଧରେ ଲୋକମାନେ ମେଳି ବାନ୍ଧୁଥାନ୍ତି । ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଦେଶରୁ ସେମାନଙ୍କୁ ହଟାଇବାକୁ କଂଗ୍ରେସ ଆନ୍ଦୋଳନ ଚଳାଇଥାଏ ।

ଧନ କେତେଥର ବାପ ପୁଅ ଭିତରେ ଖୁବ୍ ଝଗଡ଼ା ଲାଗିଲା । ମୁହଁ ଫୁଲା ଫୁଲି ହେଲା । ପଟ୍ଟନାୟକେ ସମସ୍ତଙ୍କ ଆଗରେ କହିବାକୁ ଲାଗିଲେ, ପୁଅ ଯଦି ଅଯୋଗ୍ୟ ହୁଏ ତେବେ ଧନ କାହିଁ ପାଇଁ ସଞ୍ଚୁ ? ଏ'ତ ବାଲୁଙ୍ଗା ହେଲାଣି, ଖଦଡ଼ ପିନ୍ଧିଲାଣି, ଗାନ୍ଧି ପତାକା ଧରିଲାଣି । କେତେବେଳେ ଜେଲରେ ପଶିବ ତାର କେଉଁ ଥୟ ଅଛି ? ବଂଶ ବୁଡ଼ିବା ବେଳକୁ ଘୋଡ଼ାମୁହାଁ ପୁଅ ମୋ କୋଳକୁ ଆସିଛି । ତେଣୁ ଆଗରୁ ସାବଧାନ ।

ପୁଅ ପାଠ ପଢନ୍ତି କଟକରେ । ପଟ୍ଟନାୟକଙ୍କର ଖଣ୍ଡିଏ ନିଜର ଘର ଥାଏ । ସେଇଠାରେ ରହନ୍ତି । ବୋର୍ଡିଂର ନାଲି ବଗଡ଼ା ଭାତ ପୁଅ ତଣ୍ଟିରେ ଗଳିବ ନାହିଁ ଜାଣି ଯଶୋଦା ଦେବୀ ଖମାରରୁ ଦୁଇ ତିନି ବର୍ଷର ପୁରୁଣା ସରୁ ଧାନକୁ କୁଟି ଚାଉଳ କରି ପଠାନ୍ତି । ପାଖରେ ଥାଏ ଘରର ପୁରୁଣା ଚାକର କାର୍ତ୍ତିକଆ । ମାଇପିଆଟିଏ ହେଲେ କ'ଣ ହେବ ଘୋଷେଇବାଠୁ ସବୁ ନିଜପରି କରି କରେ । କେବଳ ପୁଅର ଖାଇବା ପିଇବାର ସେ ତଦ୍ଧି ନିଏ ତାହା ନୁହେଁ ଘରକୁ କୁକୁର ପରି ଜଗି ପଡ଼ିଥାଏ । ମାଆ ଠାରୁ ବଳି ସେ । ରୂପରେ ସିନା ମରଦ ପୁଅ; ହେଲେ ଗୁଣରେ ସାତ ମାଇକିନିଆଙ୍କୁ ବଳିଯିବ ।

ଶେଷରେ ସେଇ କାର୍ତ୍ତିକଆ ପାଇଁ ବାପ, ପୁଅ ଦୁହିଁଙ୍କ ଭିତରେ ମିଳନ ହେଲା । ମନର ଅମେଳ, ଭୁଲ ବୁଝାମଣା ଦୂର ହେଲା । ସେଇ ଗୁମର କଥା କେବଳ କାର୍ତ୍ତିକଆକୁ ମାଲୁମ । ସଦାବେଳେ କାର୍ତ୍ତିକଆ କହେ ତୁମ ଯୁଗ ଆଉ ରହିବ ନାହିଁ । ପିଲାମାନଙ୍କୁ ଛାଡ଼ିଦିଅ । ସେମାନେ ଚଳନ୍ତୁ । ବର୍ଷା ଯୁଆଡୁ ଆସିବ ସେ ଆଡକୁ ଛତା ସେମାନେ ଆପେ ଆପେ ଦେଖାଇବେ ।

କାର୍ତ୍ତିକଆର ଠିକ୍ ବଲୁଆ ଭଳି ଚତୁର ବୁଦ୍ଧି । ସେ କହିଲେ : ଘର ଭିତରେ ଜଣେ ଏକଲା ଜଗି ରହିଲେ କ'ଣ ଚଳିବ ? ତେଣୁ ଆପଣ ଦାଣ୍ଡ ଜଗିଲେ ତାଙ୍କୁ ବାଡ଼ ଜଗିବାକୁ ଛାଡ଼ି ଦିଅନ୍ତୁ । ଆପଣ ତ ବର୍ତ୍ତମାନ ମଜଭୁତ ଅଛନ୍ତି । ଆପଣଙ୍କ ଅନ୍ତେ ସାନବାବୁ ହିଁ ନା ଘରର ମାଲିକ ହେବେ । ସେଥିପାଇଁ ଏଇ କେତେଦିନ ତାଙ୍କୁ ବାବନାଭୂତ ଭଳି ଅଭିନୟ କରିବାକୁ ଛାଡ଼ି ଦିଅନ୍ତୁ । ଲାଭ ନ ହେଲେ କ୍ଷତି ତ ହେବନାହିଁ ।

କଥାଟା ଦଶରଥ ପଟ୍ଟନାୟକଙ୍କ ମନକୁ ବେଶ୍ ପାଇଲା, ସେ ଦେଖିଲେ ପ୍ରକୃତରେ ଗାଆଁରେ ଯେଉଁ ଦିନଠାରୁ ଅପର ପ୍ରାଇମେରି ସ୍କୁଲଟା ମାଇନର ହେଲାଣି ସେହି ଦିନ ଠାରୁ ପାଠ ଦିଅକ୍ଷର ପଢ଼ି ଇତର ଜାତିର ଲୋକମାନେ ଆଉ ସେତେ ମାନୁ ନାହାନ୍ତି । କେତେଟା ଟୋକା ନରି ମହାନ୍ତିଙ୍କୁ ମୁହଁ ମୁହେଁ ଜବାବ ଦେଲେଣି । ଆଜି ନରି ମହାନ୍ତିଙ୍କୁ କହିଲେଣି, ତାଙ୍କୁ କହିବାକୁ କେତେ ଦିନ ଅବା ଲାଗିବ ? ସବୁ ତ କାଳର ଗତି । ତେଣୁ ପୁଅ ଯଦି କହୁଛି କାଠ ହୋଇ ଟାଙ୍ଗିଆ ଭିତରେ ପଶି ଗଛକୁ ହାଣି ପାରିବ ତେବେ ଭଲ କଥା । ଦେଶ ଯୁଆଡ଼େ ଯାଉଛି ଯାଉ । କିନ୍ତୁ ତାଙ୍କର ଦୁଇ ବାଟିର ସଂପତ୍ତି ଯେପରି ଆସି ଦୁଇ ମାଣରେ ନ ପହଞ୍ଚେ ।

ପାଠ ପଢ଼ା ଛାଡ଼ି ଜାତି ଅଜାତି ନମାନି ଗାନ୍ଧି ପତାକା ଧରି ବୁଲୁଥିବା ଯେଉଁ ପୁଅକୁ ପଟ୍ଟନାୟକ ଘରେ ପୁରାଉ ନଥିଲେ ସେ ଯେତେବେଳେ ଅନେକ ଦିନ ପରେ ଗାଆଁକୁ ଆସିଲା ତାହାକୁ ଘର ଭିତରକୁ ଆପେ ଡାକି ନେଲେ । ଖାଇବାକୁ ପିଇବାକୁ ଦେଲେ । ସେତେବେଳେ ନରି ମହାନ୍ତିଙ୍କ ଭଳି କେତେ ଜଣ ପାଖ ଲୋକ ବିସ୍ମିତ ହୋଇ ଉଠିଲେ ସେମାନଙ୍କୁ ପ୍ରବୋଧନା ଦେଇ ଦଶରଥ ପଟ୍ଟନାୟକ କହି ଉଠିଲେ ମାଆ ଛେଉଣ୍ଡ ପିଲାଟା । ଯାହା କରୁଛି କରୁ । ଯାହା ଅର୍ଜୁଥିଲି, ଯାହା ସଞ୍ଚୁଥିଲି ସବୁ ତାହାରି ପାଇଁ । ମୋର ଅବା କେତେ ଦିନ ? ମୁଁ ଏଣିକି ପାଚିଲା ପତ୍ର, କେତେବେଳେ ଯେ

ଫବନରେ ଖସି ପଡ଼ିବ ତାହାର କେଉଁ ଇସ୍ପୁର୍ଭ ଅଛି ? ସେ କହିଥିଲେ, ଜଗିଥିଲେ ଖାଇଥାନ୍ତା । ସୁଖ କରିଥାନ୍ତା । ନକଲେ ନଖାଇବ । ତାର ସମ୍ପତ୍ତି ଭୂତ ଖାଇବେ । ବାବନଖାନଆ ହୋଇ ବୁଲିବ । ବୁଝିଲ ମହାନ୍ତିଏ, କଥା କହିବେ ସମସ୍ତେ, ଦେବାକୁ କେତେଜଣ ଭଲ ପାଆନ୍ତି ? ଖାଇ ନଥିଲେ ମାଆ ସିନା ପେଟ କଥା ପଚାରିବ ; ପିନ୍ଧି ନଥିଲେ ବାପ ସିନା ପିଠି ପାଇଁ କନା ଖଣ୍ଡିଏ କରିଦେବ । ଦୁନିଆଁରେ ଏଇ ଦୁଇଟାକୁ ଛାଡ଼ିଦେଲେ ବାକି ସମସ୍ତେ ଭିକ ମୁଠାକୁ ଭରସା ନୁହନ୍ତି । ଭେଣ୍ଡା ପୁଅ, ପାଠ ପଢ଼ାଇଲ । ସେ ଯଦି ପାଠ ନପଢ଼ି, ହାଡ଼ି ପାଣଙ୍କ ସଙ୍ଗରେ ମିଶିଲା, ବୋଲର ବାଣୀର ନହେଲା ତାକୁ କ'ଣ ଏ ବଅସରେ ଘରୁ ତଡ଼ି ଦେବ ?

ନର ମହାନ୍ତିଙ୍କ ମନକୁ କଥାଟା ପାଇଲା । ସତରେ ପଟ୍ଟନାୟକ ଅବା କଣ କରିବେ ? ଟୋକାଟା ଯେପରି ବୃଷାଳିଆ ହୋଇ ବଢ଼ୁଛି ନା ଭଲ ଅଛି କି ମନ୍ଦ ଅଛି ଯଦି ବୁଢ଼ାକୁ ଗୃପୁତ୍ରାଏ ଥୋଇ ଦିଏ ତେବେ ବୁଢ଼ା ମାଟି କାମୁଡ଼ି ଶୋଇବ । ବୁଢ଼ା ଯାହା କରୁଛି ତାହା ଭଲ । ବଗିଚ଼ ଭିତରେ ଥିବା ବୈଠକ ଘରଟାକୁ ଛାଡ଼ିଦେଇ ବୁଦ୍ଧିମାନର କାର୍ଯ୍ୟ କରିଛି । ସେହିଠାରେ ବସି ସେ ବାର-ଲୋକଙ୍କ ସଙ୍ଗେ ନାଚୁ, କମ୍ପା ମସ୍ତ ହେଉ । କେତେ ଲୋକ ତ ଖାଇ ଯାଉଛନ୍ତି । ସେ ଗଣ୍ଡେ ଖାଇଲେ ଖାଉ । ଯିଏ ବୋଲର ବାଣୀର ନହେଲା ସେ ଦୁଷ୍ଟ ଲୋକ । ତାଙ୍କୁ ବାପ୍ ଶହେ ହାତରୁ ଦଣ୍ଡବତ ।

ପାଠ ପଢ଼ା ଛାଡ଼ିବା ପରେ ଦୁଷ୍ମନ୍ତ ବାବୁଙ୍କର କଣ୍ଠରେ ଗୋଟାଏ ଗୋଡ଼ ତ ଆଉ ଗୋଟାଏ ଗୋଡ଼ ଗାଆଁରେ । ଲୋକମାନଙ୍କୁ ଏକାଠି କରିବା, ତାଙ୍କ ସଙ୍ଗେ ମିଶି ଗାଆଁର ଉନ୍ନତି କରିବା ପାଇଁ ଆଲୋଚନା କରିବାରେ ସମୟ ଯାଏ । ପିଲାଠାରୁ ବୁଢ଼ାଯାଏ ତାଙ୍କୁ ଜାଣନ୍ତି । ସେ ସମସ୍ତଙ୍କ ସହିତ ମିଶନ୍ତି । ବାପ, ଜେଜେ ବାପ ଅମଳର ଥିବା ବ୍ୟବଧାନ ତୁଟିଲା । ଲୋକମାନେ କହିଲେ ଦୁଷ୍ମନ୍ତ ବାବୁ ମଣିଷ ଭିତରେ ହୀରା ଖଣ୍ଡିଏ ।

କଷ୍ଟଭଦନ ପଟରେ ଦଶରଥଙ୍କ ରାଜୁତି ଗଲା । ରାମ ସିଂହାସନରେ ବସିଲେ । ଘରକୁ ସୀତା ଠାକୁରାଣୀ ଭଲ ଗୋଟିଏ ଗୃହଜଳରେ ଗଢ଼ା ବୋହୂ ଆଣି, ତାହାର ହାତରେ ଗୃହ କର୍ମ ସବୁ ସମର୍ପି ଦେଇ ଧନେ ପଞ୍ଚନାୟକେ ଆଖି ବୁଜିଲେ ।

ଦୁଷ୍ମନ୍ତ ବାବୁଙ୍କର ରାଜନୀତି ଭଲ ତ ସେ ଭଲ । ଘର କଥା ବୁଝିବାକୁ ବେଳ ନଥାଏ । ଘରର ହାନି ଲାଭ ବୁଢ଼ା ଗୁମାସ୍ତା ନର ମହାନ୍ତି ଆଉ ସ୍ତ୍ରୀ ନନ୍ଦିକା ଦେଖି ବୁଝନ୍ତି । ଘର ବିଷୟରେ ତାଙ୍କୁ କେତେବେଳେ କେହି ପ୍ରଶ୍ନ କଲେ ସେ ଆଙ୍ଗୁଠି ଦେଖାନ୍ତି ନର ମହାନ୍ତିଙ୍କ ଆଡ଼େ । କହନ୍ତି ବାପା ଥିଲେ ଜଗନ୍ନାଥ । ଆଉ ମଉସା ହେଉଛନ୍ତି ମଦନମୋହନ । ତେଣୁ ମୋତେ ସେ ବିଷୟରେ ପୁଚ୍ଛନ୍ତୁ ନାହିଁ ।

ଏତିକରେ ନର ମହାନ୍ତି ନିଜକୁ କୃତାର୍ଥ ମନେ କରନ୍ତି । ମନେ ମନେ ଭାବନ୍ତି, ଟୋକାଟା ବାଁଖାଡ଼ିଆ ହୋଇଯିବ ବୋଲି ସେ ଯାହା ବିଚାରୁଥିଲେ ତାହା ନୁହେଁ ତ । ଠିକ୍ କଂସାରି ଘର ପାଣ୍ଡି । ବାପ ଯିମିତି ସବୁ କଥାକୁ ମହାନ୍ତିଏ, ମହାନ୍ତିଏ ହେଉଥିଲେ ପୁଅ ମଧ୍ୟ ପ୍ରତ୍ୟେକ କଥାକୁ କହୁଛି ମଉସା ଯାହା କରିବେ । ମାନ ସମ୍ମାନ ଦେଉଛି; ସେଇ ଯଥେଷ୍ଟ । ସତ ଥିଲେ ଭାତ ଥିବ । ମୁଁ ଯଦି ମୋ ନିମକ ଜଗିଥିବି ମୁଁ ମଲା ପର୍ଯ୍ୟନ୍ତ ସିରସ୍ତା ମୋ ହାତରେ ଥିବ । ବୋହୂଟା ମଧ୍ୟ ମନ୍ଦ ନୁହେଁ । ପ୍ରତ୍ୟେକ କଥାକୁ ତାର ଦୃଷ୍ଟି । ସବୁ ବିଷୟରେ ପ୍ରଶ୍ନ ପଚାରି ବୁଝୁଥିବ । ହେଲେ ଶାଶୁ ଯାହା ଥିଲା ବୋହୂଟି ଠିକ୍ ତା'ର ଓଲଟା ।

ଦେଶ ସ୍ୱାଧୀନ ହେଲା । ଇଂରେଜ ସରକାର ପେଡ଼ି ପୁଟୁଳା ବାନ୍ଧି ଯିମିତି ସାତ ସାଗର ତେର ନଈ ପାରି ହୋଇ ଆସିଥିଲା ସେଇମିତି ଆପଣା ବାଟେ ବାଟେ ଚାଲିଗଲା । ଦେଶଟାକୁ କଂଗ୍ରେସ ହାତରେ ଛାଡ଼ିଦେଇ ଗଲା । ମହାତ୍ମା ଗାନ୍ଧିଙ୍କର ତପସ୍ୟା ପୂର୍ଣ୍ଣ ହେଲା । ସେ କହିଲେ କଂଗ୍ରେସକୁ ଏକ ସେବାମୂଳକ ଅନୁଷ୍ଠାନରେ ପରିଣତ କର । କ୍ଷମତା ରାଜନୀତି ଠାରୁ କଂଗ୍ରେସ ଦୂରେଇ କରି ରହୁ ।

ପଣ୍ଡିତ ନେହେରୁ କହିଲେ ଯେଉଁ ସନ୍ଧିମୁହୂର୍ତ୍ତରେ ସ୍ୱାଧୀନତା ଆସିଛି ତାହାକୁ କଂଗ୍ରେସ ବ୍ୟତୀତ ଆଉ ସମ୍ଭାଳିବାକୁ ପୁଅ

କେହି ନାହିଁ । ତେଣୁ ଦେଶ ଶାସନ କରିବା ପାଇଁ କଂଗ୍ରେସ ହିଁ ଏକମାତ୍ର ସାମରଥ । ଦେଶରେ ନିର୍ବାଚନ ଆରମ୍ଭ ହେଲା । ଲୋକଙ୍କୁ କୁହାଗଲା ଜନତାଙ୍କ ପ୍ରତିନିଧିଙ୍କ ଦ୍ୱାରା ଶାସନ ଚାଲିବ । ଆମ ଦେଶକୁ ଆମେ ଚଳାଇବା । ଏହାକୁ କହନ୍ତି ଗଣତନ୍ତ୍ର ।

ରାଜୁ ସାହୁ ତ ଗପି ଚାଲିଥାଏ । ଶୁଣୁଥାନ୍ତି ରେକ୍‌ସାବାଲା ପଞ୍ଚାନନ । ସତେ ଯେପରି ସେମାନେ ଇତିହାସ ପଢ଼ୁଛନ୍ତି । ସାହୁଏ କହିଲେ ଆମ କମଳପୁର ଗୋଟିଏ ନିର୍ବାଚନ ମଣ୍ଡଳୀ ହେଲା । ସେହି ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହେଲେ ଦୁଷ୍ମନ୍ତବାବୁ । ତାଙ୍କ ସଙ୍ଗେ ଲଢ଼େଇ କରିବାକୁ କେହି ନଥାନ୍ତି । ସେ ବିନା ଲଢ଼େଇରେ ବିଧାନ ସଭାକୁ ଗଲେ । ସାରା ଅଞ୍ଚଳଟାର ବିଶ୍ୱାସ, କିଛି ନହେଲେ ମଧ୍ୟ ଦୁଷ୍ମନ୍ତବାବୁ ଏ କମଳପୁର ଗାଆଁଟା ପାଇଁ କିଛି କରିବେ । କେତେକ କହିଲେ ଯାହାର ଅଭାବ ଥାଏ, ସେ ସିନା ପାଞ୍ଚ ପଇସାକୁ ଆଶା କରିବ । ଦୁଷ୍ମନ୍ତ ବାବୁଙ୍କର ନାହିଁ କ'ଣ ? ବାପ ଯେତିକ କମେଇ ରଖି ଯାଇଛନ୍ତି ଖାଇ ବସିଲେ ଉମର ବିତିଯିବ । ପଇସା ପତ୍ର, ଧନ ସମ୍ପତ୍ତି ପ୍ରତି ତାଙ୍କର ଯଦି ମାୟା ମମତା ଥାଏ ତେବେ ସେ ସରକାରୀ ଚାକିରୀ ନ କରି ରାଜନୀତି କାହିଁକି କରିଥାନ୍ତେ ?

ଜେଲଖାନା ପାଚେରୀ ଭିତରକୁ ନଯାଇ, କେବଳ ଖଦଡ଼ି ପିନ୍ଧି ଦୁଷ୍ମନ୍ତ ବାବୁ ନିର୍ଦ୍ୱନ୍ଦରେ ନିର୍ବାଚିତ ହେଲେ । ଏହାକୁ କହନ୍ତି ଭାଗ୍ୟ ।

ଏମ. ଏଲ. ଏ. ହୋଇ ହେଉ ମନ୍ତ୍ରୀ ହେଲେ ।

କମଳପୁରିଆ କହିହେଲେ ଆମେ ଠିକ୍ ଲୋକଙ୍କୁ ଭୋଟ ଦେଇଛୁ । ଦୁଷ୍ମନ୍ତ ବାବୁଙ୍କ ବ୍ୟତୀତ ଆଉ ଯିଏ ଯାଇଥାନ୍ତା ସେ ହୁଏତ ଜଣେ ସାଧାରଣ ସଭ୍ୟ ହୋଇଥାନ୍ତା; କିନ୍ତୁ ମନ୍ତ୍ରୀ କ'ଣ ହୋଇ ପାରିଥାନ୍ତା ? ଏଣିକି ଦେଖିବ କମଳପୁରର ଭାଗ୍ୟ ଝଲସି ଉଠିବ...

ରାଜୁ ସାହୁ ପାଟିରୁ କଥା ଛଡ଼ାଇ ନେଇ ରେକ୍‌ସାବାଲା ପଞ୍ଚାନନ କହିଲେ ହଁ ମଉସା, ଉନ୍ନତିର ରାସ୍ତାରୁ ଜଣା ପଡ଼ୁଛି ।

ଗାଆଁ ମାନଙ୍କୁ ରାସ୍ତା ଖଣ୍ଡିଏ ନାହିଁ । ଆଉ ରେକ୍ସା ଆମର ଯେମିତି ଚ୍ଛଳଛି ତାହା ଆମେ ଜାଣୁ । ଯେଉଁ କେତେ ଖଣ୍ଡ ରାସ୍ତା ଅଛି କେଉଁଠାରେ ଆଣୁଏ ଗାଡ ହେଲେ ତ ଆଉ କେଉଁଠାରେ ଫୁଟେ ।

ରାଜୁ ସାହୁ ହସି ହସି କହିଲ : ମାଆ ଝିଅ ଦୁହେଁ ଦେଉଳେ ପଶିଲେ, ଯେଝା ଶୁଭ ସିଏ ମନାସିଲେ ।





ଗାଂଧି ବୁଢ଼ା ଯେଉଁ ରାମରାଜ୍ୟ ସ୍ୱପ୍ନ ଦେଖୁଥିଲେ ତାହାର ସଫଳ ରୂପାୟନ ଦେଖିବାକୁ ଭଗବାନ ତାଙ୍କୁ ରଖିଲେ ନାହିଁ । ଭାରତର ସ୍ୱାଧୀନତା ଆଣିବା ପରେ ଏହି ଭୂଇଁରେ ରାମାୟଣର ରାମରାଜ୍ୟ ପ୍ରତିଷ୍ଠା କରିବାର ଦାୟିତ୍ୱ ସେ ଦେଇଗଲେ ଜବାହାର ଲାଲ ପ୍ରଭୃତି କଂଗ୍ରେସର କେତେ ଜଣ ବଡ଼ପଣ୍ଡାଙ୍କ ଉପରେ । ଦୀର୍ଘ ଦୁଇ ଶହ ବର୍ଷ ଧରି ଅବହେଳିତ ହୋଇ ପଡ଼ିଥିବା ଭାରତର ସର୍ବାଙ୍ଗୀନ ଉନ୍ନତି କରିବା ପାଇଁ ସେମାନେ ତିଆରି କଲେ ପଞ୍ଚବାର୍ଷିକ ଯୋଜନା । ଶିକ୍ଷା, ଚିକିତ୍ସା, ରାସ୍ତାଘାଟ, କୃଷି ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ବିପୁଳ ପରିବର୍ତ୍ତନ ଲକ୍ଷ୍ୟ କରାଗଲା ।

ଶାସନ କ୍ଷମତା ବିକେନ୍ଦ୍ରୀକରଣ କରାଗଲା । ଗାଆଁର କଜିଆ କୋର୍ଟ କଚେରୀକୁ ନଯିବା ପାଇଁ ଏବଂ ଶ୍ରେଷ୍ଠ ଶ୍ରେଷ୍ଠ ଉନ୍ନତିମୂଳକ କାର୍ଯ୍ୟ ପାଇଁ ପଞ୍ଚାୟତ ରାଜ ପ୍ରତିଷ୍ଠା କରାଗଲା । ଏହାକୁ ଯେଉଁମାନେ ପରିଚାଳନା କଲେ ସେମାନେ ହେଲେ ସରପଞ୍ଚ ଓ ପଞ୍ଚାୟତ ସମିତି ଚେୟାରମ୍ୟାନ୍ । ମନ୍ତ୍ରୀଙ୍କ ଠାରୁ ସରପଞ୍ଚଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ରହିଲେ । କାରଣ ଯୋଜନାର ପାଣି ଏଇ ସବୁ କେନାଲ

ଦେଇ ଲୋକମାନଙ୍କ ପାଖରେ ପହଞ୍ଚିବ । ଫଳରେ ମନ୍ତ୍ରୀମାନଙ୍କ ବଙ୍ଗଳାରେ ଗୋଟିଏ ଗୋଟିଏ ମିନି ଦରବାର ସୃଷ୍ଟି ହେଲା । ସେହିଠାରେ ଦେଖିବାକୁ ମିଳିଲା ରାଜମାତ୍ରକୁ ଭେକ କରି ଚାଲୁଥିବା କେତେକ ଠାକୁରଙ୍କୁ । ସେମାନେ ହେଲେ ସେ ଅଞ୍ଚଳର ବାର୍ତ୍ତାବହ ବନାମ କାନକୁହା ବାଲା । ମନ୍ତ୍ରୀମାନଙ୍କର ନିଜ ନିଜ ନିର୍ବାଚନ ମଣ୍ଡଳୀକୁ ଯିବା ଦରକାର ପଡ଼ିଲା ନାହିଁ । ଫୋନ ପରି ଗାଆଁରେ ସୋରିଷ ଫୁଟିଲେ କାନକୁ ଆସିଲା । ତେଣିକି ଟିକିଏ ବୁଦ୍ଧି ଖଟାଇ ମନରୁ ଫାନ୍ଦି ଏ କଥାକୁ ସେକଥା କରି ପାରିଲେ ଅସଲ କଥା ଜଣା ପଡ଼ିଲା । ଶ୍ୟାମ କଥା ରାମ ଆଗରେ ଆଉ ରାମ ନାମରେ ଶ୍ୟାମ ଆଗରେ କହିଲେ ଆପେ ଆପେ ଦୁହିଁଙ୍କ ଗୋହି ଦୁହେଁ ଖୋଳି ବାହାର କରିଦେବେ, ଏହାକୁ କହନ୍ତି ରାଜମାତ୍ର ।

ଦେଶୀୟ ରାଜ୍ୟ ସବୁ ସ୍ୱାଧୀନ ଭାରତରେ ମିଶିବା ପରେ ରାଜାମାନେ ପ୍ରଜା ପାଲଟି ଗଲେ । ନେତାମାନେ କହିଲେ ଆମ ସଂଗ୍ରାମର ଗୋଟାଏ ଅଧ୍ୟାୟ ସରିଲା । ଅର୍ଥାତ୍ ପ୍ରବଳର ଆଉ ଦୁର୍ବଳ ଉପରେ ଅତ୍ୟାଚାର ହେବ ନାହିଁ । ରଜା ବୋଲି ଶବ୍ଦ ହୁଏତ ଇତିହାସରେ ପିଲାମାନେ ପଢ଼ିବେ କିମ୍ବା ଅପେରା ନାଚ ପାର୍ଟିରେ ମନୋରଞ୍ଜନ ପାଇଁ ରଜାଙ୍କ ଅଭିନୟ କରୁଥିବା ବ୍ୟକ୍ତିକୁ ଦେଖି ପାରିବେ । ନଚେତ୍ ବାସ୍ତବ କ୍ଷେତ୍ରରେ ସାରା ଭାରତବର୍ଷରେ ଖୋଜିଲେ ରାଜା କେଉଁଠାରେ ସିଂହାସନରେ ବସି ଶାସନ କରୁଥିବାର ଦେଖିବାକୁ ମିଳିବ ନାହିଁ ।

ପ୍ରକୃତରେ ରାଜାମାନେ ପ୍ରଜା ହେଲେ । ରାଜ ସିଂହାସନ ତାଙ୍କର ଗଲା । ହାତରୁ ଶାସନ ଦଣ୍ଡ ଖସିଲା । ପରିବର୍ତ୍ତନଶୀଳ ସମାଜରେ ବଞ୍ଚି ରହିବାକୁ ହେଲେ ସବୁ ସହିବାକୁ ହେବ । କାଲି ଯିଏ ରାଜେନ୍ଦ୍ରାସନରେ ଥିଲେ ଆଜି ସେମାନେ ଫକିର ହେଲେ । ମନକୁ ମନ ବୁଝାଇ କହିଲେ ଭାଗ୍ୟଠାରୁ ବଳି ବଳୀୟାନ କେହି ନାହିଁ ।

ଶାସନ ଗାଦି କ'ଣ ଖାଲି ପଡ଼ିଲା ? ତାହା ନୁହେଁ । ପ୍ରଜା-ମାନଙ୍କର ନିର୍ବାଚିତ ପ୍ରତିନିଧିମାନେ ଶାସନ ଚଳାଇଲେ । ସେମାନଙ୍କୁ

ଆଉ ରଜା କୁହା ନ ଯାଇ ମନ୍ତ୍ରୀ କୁହାଗଲା । ଲୋକମାନଙ୍କର ସ୍ନେହ ଶ୍ରଦ୍ଧାର ବିପୁଳ ସମ୍ବର୍ଦ୍ଧନା ଗ୍ରହଣ କଲେ । ଗଜଗାଦିର କିନ୍ତୁ ଅଶେଷ ଗୁଣ । ସେ ତାହାର ଗୁଣ ସହଜରେ ଛାଡ଼ିଲା ନାହିଁ । ବିକ୍ରମାଦିତ୍ୟଙ୍କର ବତିଶ ସିଂହାସନ ଉପରେ ଖେଳ ଜଗୁଥିବା ପିଲା ବସିବାବେଳେ ଯେପରି ବଦଳି ଯାଇଥିଲା, ସେହିଭଳି ଶାସନ କ୍ଷେତ୍ରକୁ ଆସିବା ପରେ ଜନତାର ପ୍ରତିନିଧିମାନେ ବଦଳିଗଲେ । ଗଜଗାଦିର କୁହୁକ ସେମାନଙ୍କୁ ବଶ କଲା । ସେମାନେ ତାହାର ମାୟାରେ ଭୁଲି ଗଲେ ।

ଶାସକ ହେବା ବଡ଼ ଗୁରୁତର କାର୍ଯ୍ୟ । ଛୁରୀର ଦୁଇପାଖ ଭଳି ସେଥିରେ ବିପଦ । ଯଦି ନିଜକୁ ସଂଯତ ରଖି ପ୍ରକୃତ ଜନସେବକ ହୋଇ ପାରିବ ତେବେ ଲୋକମାନେ ତୁମକୁ ଫୁଲମାଳ ପିନ୍ଧାଇବେ । ନଚେତ୍ ଯେଉଁ ଝୋଟକେଇରୁ ଦିନେ ଲୋକମାନେ ତୁମକୁ ଫୁଲମାଳ ପିନ୍ଧାଇଥିଲେ, ସମୟ ଆସିବ ଦିନେ ସେମାନେ ସେହି ଝୋଟକେଇରୁ ତୁମକୁ ଠେକା ମାରିବେ ।

ଏହି କଥା କିନ୍ତୁ ବୁଝନ୍ତି କେତେଜଣ ? ଶାସନ ଗାଦିର ମୋହ ଅଲଗା, ସେଥିରେ ବସିଲା ପରେ ପାଖରେ ଚଣ୍ଡୀ ଚାମୁଣ୍ଡା ଆସି ଜୁଟି ଯାଆନ୍ତି । ବେକରେ ଫୁଲମାଳ ପିନ୍ଧାଇଥିବା ଲୋକମାନଙ୍କୁ ନିଜର ଭାଇ ଓ ଭଉଣୀ ବୋଲି ଭାବନ୍ତି ନାହିଁ । ସେମାନଙ୍କର ସ୍ନେହକୁ ଗ୍ରହଣ କରନ୍ତି ଭକ୍ତି ରୂପରେ । ଭକ୍ତି ଓ ସ୍ନେହ ଭିତରେ ଥିବା ତଫାତ୍ ସେମାନେ ଅନୁଭବ କରି ପାରନ୍ତି ନାହିଁ । ସେଇଥି ପାଇଁ ଦୁର୍ଘଟଣା ଘଟେ । ଭୁଲ ବୁଝାମଣା ସୃଷ୍ଟି ହୁଏ ।

ସ୍ୱାଧୀନତାର ପ୍ରକୃତ ରୂପାୟନ ପାଇଁ ଗାନ୍ଧିଜୀ ପଲ୍ଲୀକୁ ଫେରିଯିବା ପାଇଁ କହିଥିଲେ । ତାଙ୍କ ପରାମର୍ଶର ଅସଲ ଉଦ୍ଦେଶ୍ୟ ଥିଲା – ଭାରତ ହେଉଛି ଗ୍ରାମବହୁଳ ଦେଶ । ପଲ୍ଲୀର ଉନ୍ନତି ହେଲେ ଭାରତର ସାମୂହିକ ଅଗ୍ରଗତି ସମ୍ଭବ ହୋଇପାରିବ । ତେଣୁ ସହରର ପ୍ରତି ଆଉ ଅଧିକ ଦୃଷ୍ଟି ନ ଦେଇ ଗାଁ ଗହଳରେ ରହୁଥିବା ଅଗଣିତ,

ଅଶିକ୍ଷିତ, ଲଙ୍ଗଳା, ଫୁଙ୍ଗୁଳା, ଭେକଲ୍ ଜନତା ଜନାର୍ଦ୍ଦନଙ୍କର ଯତ୍ନ ନେବା ସର୍ବାଦୌ କର୍ତ୍ତବ୍ୟ ହେବା ଉଚିତ୍ ।

ଦୁଷ୍ମନ୍ତ ବାବୁ କିନ୍ତୁ ଏହି ମହାନ୍ କର୍ତ୍ତବ୍ୟକୁ ରୂପ ଦେବା ପାଇଁ ଗାଆଁ ଛାଡ଼ି ସହରକୁ ଆସିଲେ । ସରକାରୀ ବଙ୍ଗଳା ପାଇବା ପରେ ନିଜ ପିଲା କବିଲା ସମସ୍ତଙ୍କୁ ପାଖକୁ ନେଇ ଆସିଲେ ।

କମଳପୁର ତାଙ୍କର ଗୋଟାଏ ଗୃହ ଗାଆଁ ହୋଇ ରହିଗଲା ।





ଜୀବନ ଆଉ ନଦୀ ଦୁହେଁ ସମାନ । ନଦୀରେ ବହିଯାଉଥିବା ଜଳକୁ ଆନିକଟ ଦ୍ୱାରା ବନ୍ଧ କରାଯାଇ ଯେତେବେଳେ ନିୟନ୍ତ୍ରିତ କରାଯାଏ ସେତେବେଳେ ବହୁତ ଉପକାର ମିଳେ । ନଦୀ ସଦାବେଳେ ସୁନାବ୍ୟା ନହେଲେ ମଧ୍ୟ ଜଳସେଚନ ଏବଂ ବିଦ୍ୟୁତ୍‌ଶକ୍ତି ଉତ୍ପାଦନରେ ସାହାଯ୍ୟ କରେ । ଦେଶ ସମୃଦ୍ଧ ହୁଏ । ନଦୀର ସମ୍ମାନ ଆଉ ଗୌରବ ବୃଦ୍ଧି ପାଏ । ସେହିପରି ଜୀବନର ଗତିପଥକୁ ଯଦି ଏହିପରି ବଦଳାଇ ହୁଏ ତେବେ ଜୀବନର ମୂଲ୍ୟବୋଧ ବଢ଼େ । ସେ ମଣିଷ ସମାଜରେ ପୂଜା ପାଏ । ଜୀବନର ଗତିପଥକୁ ନ ବଦଳାଇ ଯଦି ସେମିତି ଛୁଡ଼ି ଦିଆଯାଏ ତେବେ ନଦୀ ସମୁଦ୍ରରେ ପଡ଼ି ନିଶ୍ଚିହ୍ନ ହେଲା ପରି ଏହା ମୃତ୍ୟୁ ସିନ୍ଧୁରେ ସିନା ବିଲୀନ ହେବ କିନ୍ତୁ ଚହଲିବାକୁ ବା ଚହଲାଇବାକୁ କିଛି ଅବଶିଷ୍ଟ ନଥିବ ।

ଲୋଚନ ମାଷ୍ଟ୍ରେ । ସେ ଥିଲେ ମଣିଷ ତିଆରି କାରଖାନାର ମିସ୍ତ୍ରୀ । ଶିଳ୍ପୀ ଯଦି କୁଶଳୀ ହୋଇଥିବ ଖରାପ କାଠ ଖଣ୍ଡିଏ ପାଇଲେ ସୁଦ୍ଧା ତାହାକୁ ସେ ଲୋଭନୀୟ ଏବଂ ଶୋଭନୀୟ ରୂପ ଦେଇ ପାରିବ । କୁନ୍ତଳା ଭଳି ଗୋଟାଏ ଅର୍ଦ୍ଧଦଗ୍ଧ ଜୀବନକୁ ସଜାଡିବାକୁ

ଲୋଚନ ମାଷ୍ଟ୍ରେ ଚିନ୍ତା କଲେ । ସେ ଯଦି ଉପଯୁକ୍ତ ଦିଗଦର୍ଶନ ନ ଦିଅନ୍ତି ତେବେ ଅଥଳ ସାଗରରେ ନିଷ୍କପ୍ର ତାର ଜୀବନ ନୌକାଟି ବୁଡ଼ିଯିବ । ଏଥିରେ ସନ୍ଦେହ କରିବାର କିଛି ନାହିଁ ।

ବାହାରେ ପର ଦୁଆରେ ଦିନ ମିହନ୍ତ କରି ଖଟିବ ରାଣ୍ଡ ବୁଢ଼ୀ ମା'ଆ । ଘର ଭିତରେ ଉଚ୍ଛୁଳା ଯୌବନ ଧରି ଲାବଣ୍ୟବତୀ ଯୁବତୀ ଝିଅ ରହିବ । କୋଳରେ ତାହାର ଅନାଥ ପିଲା । ଏ ସମାଜର ମାଉଁସ ଖିଆ କୁକୁରଙ୍କୁ ସେ ଘଉଡ଼ାଇବ ନା ନିଜ ପିଲାକୁ ସମ୍ଭାଦି ମଣିଷ କରି ପାରିବ ? ବେଙ୍ଗ କୂଅରେ ପଡ଼ିଥିଲାବେଳେ ସମସ୍ତେ ଢେଳାଟିଏ ମାରିବାକୁ ଭଲ ପାଆନ୍ତି । ପର ଧନରେ ଅମରମତା ହେବାକୁ କିଏ ସୁଖ ନ ପାଏ ?

ନିରାଶ୍ରୟ, ନିପାରିଲା ଜୀବ କେବଳ କାନ୍ଦି ଜାଣେ ସିନା କିନ୍ତୁ ପ୍ରତିରୋଧ କିମ୍ବା ପ୍ରତିଶୋଧ ନେବାର ଶକ୍ତି ତାହାର ନଥାଏ ।

ସବୁଦିନ ସମାନ ଯାଏନାହିଁ । ଯୁଗ ବଦଳୁଛି । ମଣିଷ ବଦଳି ଯିବ । ବେଶ୍ୟାପୁତ୍ର ଯଦି ବଶିଷ୍ଠଙ୍କ ଭଳି ମହର୍ଷି ହୋଇ ପାରିଲେ ଏବଂ ଧୀବରୀଙ୍କ କୋଳରେ ପରାଶରଙ୍କର ଔରସରୁ ଏକ ନିର୍ଜନ ଦ୍ୱୀପରେ ଜାତ ହୋଇଥିବା ପୁତ୍ର କୃଷ୍ଣ ଦ୍ୱୈପାୟନ ବ୍ୟାସଦେବ ଯଦି ମହାଭାରତ ଗ୍ରନ୍ଥ ରଚନା କରି ପାରିଲେ ସେହିପରି କିଏ କହିପାରିବ ଏଇ ଭରତ ଭାଗ୍ୟରେ କ'ଣ ଲେଖା ଅଛି ?

ପରକୁ ସାହାଯ୍ୟ କରିବାକୁ ହେଲେ ଦେହକୁ ସାମାନ୍ୟ କଷ୍ଟ ହୋଇପାରେ କିନ୍ତୁ ମନକୁ ବହୁତ ଆନନ୍ଦ ଲାଗେ । ମାନସିକ ସଂତୋଷ ନିକଟରେ ଧନସମ୍ପଦ ସବୁ ତୁଚ୍ଛ ।

ଲୋଚନ ମାଷ୍ଟ୍ରେ କ'ଣ କରିବେ କିଛି ସ୍ଥିର କରି ପାରିଲେ ନାହିଁ । ଦେଶକୁ ନୂଆ କରି ସ୍ୱାଧୀନତା ମିଳିଥାଏ । ଦୁଃଖିନୀ ଭାରତ-ବର୍ଷ ମୁହଁରେ ହସ ଫୁଟାଇବା ପାଇଁ ନେହେରୁ ସରକାର ଯୋଜନା ପରେ ଯୋଜନା ପ୍ରସ୍ତୁତ କରୁଥାନ୍ତି । ମାଷ୍ଟ୍ରେ ଏହାର ସୁଯୋଗ ନେଲେ, ।

କୁନ୍ତଳାକୁ ବୁଝାଇ ଶୁଝାଇ ଗ୍ରାମସେବକା ଟ୍ରେନିଙ୍ଗ୍‌ରେ ଭର୍ତ୍ତି କରିଦେଲେ ।

ଗାଆଁର ମାୟା ମମତା ଛୁଟାଇ, ବୁଢ଼ୀ ମାଆ ଆଉ ବାଳୁତ ପୁଅକୁ ଧରି କୁନ୍ତଳା ଦାଣ୍ଡକୁ ବାହାରି ପଡ଼ିଲା । ଘରୁ ଗୋଡ଼ କାଢ଼ି ଆସିଲାବେଳେ ତାର ମନରେ ଗୋଟିଏ ପ୍ରଶ୍ନ ଗୁମୁରି ଗୁମୁରି ଉଠୁଥିଲା । ପେଟକୁ ଦାନା, ପିଠିକି କନା ସେ ଏଣିକି ପାଇ ପାରିବ ସତ; କିନ୍ତୁ ବାଆକୁ ବତା ଆଉ ଖରାକୁ ଛତା ଭଳି ତାକୁ କିଏ ରକ୍ଷା କରି ପାରିବ ? ଗୃହକାନ୍ଥ ଭିତରେ ଏଇ ଦେହଟାକୁ ଧରି ସେ ରହିଥିଲାବେଳେ ବାହାରର ମାଉଁସଲୋଭୀ ଗୁଣ୍ଡାଙ୍କୁ ଭୟ ଲାଗେ ବୋଲି ଗାଆଁରେ ମାଆ କାମରୁ ଫେରିବା ପର୍ଯ୍ୟନ୍ତ କବାଟ କିଳି ଦେଉଥିଲା; ଏଣିକି ସରକାରୀ ବସା ଘରେ ପୁଅକୁ ମାଆ ପାଖରେ ରଖି ଦେଇ ଦେହକୁ ସଜେଇ, ସାହି ସାହି ବୁଲି ବାହାରିବ । କିଏ ତାର ସାହା ଭରସା ହେବ ?

ପୁଣି କୁନ୍ତଳା ମନେ ମନେ ଭାବେ ବାଟରେ ପୁଅ ଜନମ କରି କ'ଣ ଡାହାଣୀକୁ ଭୟ କଲେ ଚଳିବ ? ଦ୍ରୌପଦୀଙ୍କୁ କୁରୁ ସଭାରେ ଲଜ୍ୟାରୁ ଯିଏ ଉଦ୍ଧାର କରିଥିଲେ ସେହି ଭଗବାନ ହିଁ ତାହାର ସହାୟ ହେବେ । ସେ କେବଳ ଦ୍ରୌପଦୀଙ୍କର ମନ ନେଇ ତାଙ୍କୁ ଭାବି ପାରିଲେ ହେଲା ! ଭଗବାନ ଅଛନ୍ତି ବୋଲି ତ ଏ ସଂସାର ଚାଲିଛି ।

ଏ ସଂସାରରେ ଭାଗ୍ୟ ଆଉ ଭଗବାନଙ୍କୁ ଭରସା କରି ମନୁଷ୍ୟ ଠାରୁ ବହୁତ ଦୁର୍ବଳ ପ୍ରାଣୀ ଅଛନ୍ତି । ନିଜ ଉପରକୁ ବିପଦ ଆସିଲେ ଆତ୍ମରକ୍ଷା ପାଇଁ ଭଗବାନ ସେମାନଙ୍କୁ ଶକ୍ତି ଦେଇଛନ୍ତି । କଙ୍କଡ଼ା ବିଛାର ଲାଙ୍ଗୁଡ଼ରେ ନାହୁଡ଼, ଝିଙ୍କ ଦେହର କଣ୍ଟା, ସାପ ଦାନ୍ତରେ ବିଷ ରଖିଲା ପରି ମଣିଷ ଭଳି ପ୍ରବଳ ପରାକ୍ରମୀ ବୁଦ୍ଧିଆ ପ୍ରାଣୀକୁ ପିମ୍ପୁଡ଼ି ପରି କ୍ଷୁଦ୍ର ଜୀବଟିକୁ ମଧ୍ୟ ଛୁଟ୍ କରି କାମୁଡ଼ି ଦେବାର ଅଧିକାର ଦେଇଛନ୍ତି । ଯେଉଁ ବାଘୁଣୀକୁ ଧରି ମଣିଷ ସର୍କସରେ ଖେଳ ଦେଖାଏ, ସେହି ବାଘୁଣୀ ଯେତେବେଳେ ଯନ୍ତାରୁ ଫିଟି ଜଙ୍ଗଲକୁ ଚାଲିଯାଏ ସେ କ'ଣ ଆଉ ମଣିଷର ହୁକୁମ ତାମିଲ କରେ ? ମଣିଷ ବାସ୍ନା ପାଇଲେ ସେ ତାହା ଉପରକୁ ଝାମ୍ପି ପଡ଼େ । ତାହାର ତର୍ଣ୍ଣି

କଣା କରି ରକ୍ତ ପିଏ । ଗୃହିକାନ୍ଥ ଭିତରେ ଥିଲାବେଳେ କୁନ୍ତଳା ସର୍କସର ବାଘୁଣୀ ଥିଲି । ଯନ୍ତ୍ରାରୁ ଫିଟିଛି ଏବେ । ତାହା ଦେହର ହଳଦିଆ ପଟା ପଟା ଦାଗ ଦେଖି ଯିଏ ତାକୁ ପୋଷା ମନାଇବାକୁ ଚେଷ୍ଟା କରିବ ସେ କେବଳ କାମୁଡ଼ା ଖାଇବ । ଯନ୍ତ୍ରା ଭିତରର ଯନ୍ତ୍ରଣା ସେ ଭୋଗିଛି । ଛଳନାର ଇନ୍ଦ୍ରଜାଲରେ ସେ ଥରେ ପଡ଼ିଛି, ଆଉ ଏଣିକି ଭୁଲିବନି । ସେ ଜାଣେ ଯେଉଁମାନେ ତାକୁ ହସି ହସି ଆଦର କରିବେ ତାଙ୍କ ମନ ଭିତରେ ହଳାହଳ ବିଷ ଭର୍ତ୍ତି ହୋଇ ରହିଛି ।

ଲୋଚନ ମାଷ୍ଟ୍ରେ କୁନ୍ତଳା ଜୀବନର ଗତିକୁ ନଦୀରେ ବନ୍ଧ କଲା ପରି କରି ନିୟନ୍ତ୍ରିତ କରିଦେଲେ । ଅସଜ୍ଜ ହୋଇ କଳଙ୍କର ପସରା ଧରି ସେ ବାର ଦୁଆର ଶୁଣ୍ଢୀପିଣ୍ଡା କମ୍ବା ପାଞ୍ଚ ପଡ଼ିଶଙ୍କଠାରୁ ଗଞ୍ଜଣା ମାଡ଼ ସହ୍ୟ ପୁଣି ଘଷି ପାରି, ପର ଦୁଆରେ, ବାର ବାସି ପାଇଁଟି କରି ବଞ୍ଚିବାକୁ ହେବାର ନୋହିଲା ।

କୁନ୍ତଳା ତାହାର ଶିକ୍ଷାର ସଦ୍‌ବ୍ୟବହାର କଲା । ଲୋଚନ ମାଷ୍ଟ୍ରଙ୍କ ତ୍ୟାଗକୁ ସମ୍ମାନ ଦେଲା । ଗ୍ରାମ ସେବାରେ ମନ ଢାଳି ଦେଲା । ତାହାର ନିରଳସ କାମ ଏବଂ ମଧୁର ବ୍ୟବହାରରେ ପରଲୋକ ଆପଣାର ହେଲେ । ବାହାର ଦୁନିଆଁ କଥା ସେ ଜାଣି ପାରିଲା । ପାଞ୍ଚପଡ଼ିଶଙ୍କ ସମ୍ପର୍କରେ ଆସିବା ଫଳରେ ସେ ମାର୍ଜିତ ହେଲା । ତାହାର ରୁଚି ଚାଲିଚଳନ ସବୁ ବଦଳି ଗଲା ।

ଜୀବନର ଗୋଟିଏ ଲକ୍ଷ୍ୟ ତାହାର ରହିଲା ଭରତ ପାଠ-ପଢ଼ିବ, ମଣିଷ ହେବ । ଭଦ୍ର ହେବ । ନମ୍ର ଓ ବିନୟୀ ହେବ । ଅନ୍ୟାୟ, ଅତ୍ୟାଚାର ଆଉ ଅନାଚାର ବିରୁଦ୍ଧରେ ପୁଅ ତାହାର ଆୟୁଧ ହେବ । ଅବଳା ଦୁର୍ବଳା ହେତୁ ସେ ଯେଉଁ ପ୍ରତିଶୋଧ ନେଇ ପାରିଲା ନାହିଁ ଭରତ ଯେପରି ତାର ମାତୃ ଅପମାନର ଉପଯୁକ୍ତ ପ୍ରତିଶୋଧ ନେଇ ପାରିବ ।





ମନୁଷ୍ୟର ଇଚ୍ଛା ବୋଲି ଗୋଟିଏ ଜିନିଷ ଅଛି । ସେଇଟା ହିଁ ତାକୁ ହସାଏ; କନ୍ଦାଏ ନଚାଏ ଏବଂ ତାହାର ଲାଗିସେ ଘର ସଂସାର କରେ । ସାଂସାରିକ ଜୀବନରେ ମନୁଷ୍ୟର ଇଚ୍ଛା ହେଲି ମୂଳ । ସେଥିପାଇଁ ସେ ପୁଅ ଝିଅ ଧରି ଜଞ୍ଜାଳରେ ବାନ୍ଧି ହେଲାବେଳେ ଇଚ୍ଛା କରେ ମୁଁ ତ ଯାହା ହେବାର ହେଲି, ମୋ ପୁଅ କିପରି ମୋହଠାରୁ ବଡ଼ ହେଉ । ମୋ ଝିଅ କିପରି ସମାଜରେ ପ୍ରତିଷ୍ଠା ପାଉ । 'ମୁଁ' ଟା ଶେଷରେ "ଆମେ"ରେ ପରିଣତ ହୁଏ ।

କେବଳ ଯେ ଗୀତାର ଶ୍ରୀକୃଷ୍ଣ କହିଛନ୍ତି ତାହା ନୁହେଁ ତ୍ରିପିଟକର ବୁଦ୍ଧଦେବ· ବାଇବେଲର ଯୀଶୁ ଏବଂ କୋରାନର ମହମ୍ମଦ ସମସ୍ତେ କହିଛନ୍ତି କାମନା ଠାରୁ ଶତ୍ରୁ କେହି ନାହିଁ । ସେଥିପାଇଁ ମଣିଷ ଅଶେଷ ଯାତନା ଭୋଗ କରେ । ଅଳ୍ପକେ ସନ୍ତୋଷ ହେଲେ ଦୁଃଖ ରହିବ ନାହିଁ ।

ଦୁଷ୍ମନ୍ତ ବାବୁ କିନ୍ତୁ କହନ୍ତି ଆଶା ନଥିଲେ, ଆକାଂକ୍ଷା ନଥିଲେ, ମନୁଷ୍ୟ ପଙ୍ଗୁ ହୋଇଯାଏ । ପଙ୍ଗୁ ହିଁ ଅଳ୍ପକେ ସନ୍ତୁଷ୍ଟ ହୁଏ । କିନ୍ତୁ ଯେ ସମର୍ଥ ପୁରୁଷ, ଯାହାର ଅର୍ଜନ କରିବାର ଶକ୍ତି ଅଛି ସେ କ'ଣ

ଭାଗ୍ୟ ଆଉ ଭଗବାନଙ୍କ ଉପରେ ନିର୍ଭର କରି ନୀରବ ହୋଇ ବସି ପାରିବ ? ଉଦ୍‌ଯୋଗିନଂ ପୁରୁଷ ସିଂହ ମୁପୈତି ଲକ୍ଷ୍ମୀଂ ଭାଗ୍ୟେନ ଦେୟଂ ଇତି କାପୁରୁଷାଃ ବଦନ୍ତି । ତୁମେ ଯେଉଁ ଅବସ୍ଥାରେ ଅଛ ତାହାଠାରୁ ଅଧିକ ହେବାକୁ ହେଲେ କଠିନ ପରିଶ୍ରମ କରିବାକୁ ପଡ଼ିବ, ସ୍ଥାଣୁ ହୋଇ ବସି ରହିଲେ ଚଳିବ ନାହିଁ, ତୁମକୁ ଉଠିବାକୁ ହେବ, ଅଧିକ ଫଳ ପାଇବା ପାଇଁ ଚେଷ୍ଟା କରିବାକୁ ହେବ ।

ଏମ୍. ଏଲ୍. ଏ. ରୁ ମନ୍ତ୍ରୀ ହେବାପରେ ଦୁଷ୍ମନ୍ତ ବାବୁ ଅନୁଭବ କଲେ ସତେ ଯେପରି ତାଙ୍କର ଦାୟିତ୍ୱ ବହୁ ଗୁଣରେ ବଢ଼ି ଯାଇଛି । କଠିନ ପରିଶ୍ରମ ସଙ୍ଗେ ସଙ୍ଗେ ଚଉଆଖିଆ ନ ହେଲେ ଏ ସିଂହାସନ ତାଙ୍କୁ ଠେଲି ବାହାର କରିଦେବ । ତାଙ୍କର କାର୍ଯ୍ୟକଳାପକୁ ସମାଲୋଚନା କରିବା ପାଇଁ ଯେପରି ବିଧାନ ସଭାରେ ବିରୋଧୀ ଦଳ ରହିଲେ ବାହାରେ ମଧ୍ୟ କୁତ୍ସାରଟନା କରିବାକୁ ପରଶ୍ରୀକାତର ବନ୍ଧୁମାନେ ରହିଲେ । ପ୍ରତ୍ୟୁତ୍ପନ୍ନମତି, କାର୍ଯ୍ୟ ଦକ୍ଷତା ଏବଂ ସର୍ବୋପରି ହାତରେ ପ୍ରଚୁର ଅର୍ଥ ନରହିଲେ ରାଜନୀତି ପଡ଼ିଆରେ ଖେଳୁଆଡ଼ି ହୋଇ ଅବତୀର୍ଣ୍ଣ ହେବା ଏକ ପ୍ରକାର ନିର୍ବୋଧତା କହିଲେ ଭୁଲ୍ ହେବ ନାହିଁ । ତିନୋଟି ବିଷୟରୁ ତାଙ୍କର ଦୁଇଟି ଅଛି । ଶେଷ ଜିନିଷଟି କିନ୍ତୁ ନାହିଁ । ସେଥିପାଇଁ ତାଙ୍କୁ ଉଦ୍‌ଯୋଗୀ ହେବାକୁ ପଡ଼ିବ; ନଚେତ୍ ଲକ୍ଷ୍ମୀଙ୍କୁ ପାଇ ପାରିବେ ନାହିଁ ।

ଘର ଭିତରେ ପଟ୍ଟନାୟକ ଘରର କୂଳବଧୂ ଯିଏ ପରଦା ପକାଇ ସଦାବେଳେ ରହୁଛନ୍ତି, ତାହାଙ୍କୁ ତାଲିମ୍ ଦେବାକୁ ଦୁଷ୍ମନ୍ତ ବାବୁଙ୍କୁ ବେଶୀ ସମୟ ଲାଗିଲା ନାହିଁ । ନନ୍ଦିକା ଦେବୀଙ୍କୁ ସେ ସହ-ଧର୍ମିଣୀରୁ ସହକର୍ମିଣୀରେ ରୂପାନ୍ତର କଲେ । ସଭା ସମିତି, ପୁରସ୍କାର ବିତରଣ ଉତ୍ସବକୁ ସଙ୍ଗରେ ନେଇ ତାଙ୍କୁ ଯେତେବେଳେ ବାହାର ଦୁନିଆଁ ବିଷୟରେ ସମ୍ୟକ୍ ଧାରଣା ଦେଇଦେଲେ ସେତେବେଳେ ନନ୍ଦିକା ଦେବୀ ହସି ହସି କହିଲେ, ଏଣିକି ତୁମେ ବାହାର କଥା ବୁଝ । ଘର ଦାୟିତ୍ୱ ମୋର । ରାୟବାହାଦୂର ବଂଶର ବୋହୂ ମୁଁ । ମୁଁ ଜାଣେ ଯାହା ଥରେ ଏ ଘର ଭିତରକୁ ନୋଟ ବଡ଼ା ଆକାରରେ ଆସିବ ତାହା

ସଙ୍ଗେ ସଙ୍ଗେ ସୁନା ପାଲଟି ଏତେ ଟିକିଏ ହୋଇ ଆଇରନ୍ ଚେଷ୍ଟରେ ରହିଯିବ । ଲକ୍ଷ୍ମୀ ସଦାବେଳେ ଚଞ୍ଚଳା । ତାଙ୍କୁ କିନ୍ତୁ ଅଚଞ୍ଚଳା କରି ଯିଏ ରଖିପାରେ ତାକୁ ହିଁ କୁହନ୍ତି ପ୍ରକୃତ ଘରଣୀ ।

ଟଙ୍କା ସାଇତିବାକୁ ନନ୍ଦିକା ଦେବୀଙ୍କୁ ଫୁରସତ୍ ନଥାଏ । ଭୁବନେଶ୍ୱର ରାଜଧାନୀ ହେବାପରେ ଏଠା ଜାଗାର ପଡ଼ିଆର ମୂଲ୍ୟ ବହୁତ ବଢ଼ି ଯାଇଛି । ରହିବାକୁ ଏହିଠାରେ କୋଠା ଖଣ୍ଡିଏ ନିହାତି ପକ୍ଷରେ ଦରକାର । ସେଇଟି ହେବ ଭବିଷ୍ୟତର ସମ୍ବଳ । ପ୍ଲଟ ଖଣ୍ଡିଏ ଭଲ ଯାଗା ଦେଖି ନିଆ ଯାଇଛି । କୋଠା ତୋଳା ସରିବ । ନିର୍ବାଚନ ତ ଯୁଦ୍ଧର କଥା, କିଏ ଜାଣେ ଭବିଷ୍ୟତରେ କ'ଣ ହେବ ? ତେଣୁ ଯାହା କରି ନେବା କଥା ଏଇ ଦିନରୁ କରିନେଲେ ଭଲ । ନଚେତ୍ କରିବି କରିବି ହେଉ ହେଉ ସମୟ ଯିବ ପଛରେ ଅନୁତାପ ହିଁ ସାର ହେବ ।

ଏହାପରେ ନନ୍ଦିକା ଦେବୀ ଏକ ବ୍ୟସ୍ତ ଯନ୍ତ୍ର ହୋଇ ଉଠିଲେ । ଫୁରସତ ନାହିଁ । ସଦାବେଳେ କାମ ଏତେ କାମ ଭିତରେ । କିନ୍ତୁ ମୁହଁରେ ଲାଗି ରହିଥାଏ ହସ । ସେ ହସର ଅର୍ଥ କିଏ କେତେ ପ୍ରକାରର କରନ୍ତି । ନନ୍ଦିକା ଦେବୀଙ୍କୁ ତାହା ଶୁଣିବାକୁ ବେଳ ନଥାଏ । ସେ କହନ୍ତି ହାତୀ ତା ବାଟରେ ବଜାରରେ ହଲି ଦୋହଲି ଗଲାବେଳେ ହଜାରେ କୁକୁର ଭୁକନ୍ତି । ହାତୀ କ'ଣ ସେ ସବୁକୁ ପରୱା କରେ ?

କମଳପୁରର ରାୟ ବାହାଦୁର ଦଶରଥ ପଟ୍ଟନାୟକଙ୍କର କୂଳ-ବଧୂ ଆଉ ମନ୍ତ୍ରୀ ଦୁଷ୍ମନ୍ତ ପଟ୍ଟନାୟକଙ୍କର ସ୍ଲିଭଲେସ ବ୍ଲାଉଜ ପିନ୍ଧା ପତ୍ନୀଙ୍କ ଭିତରେ ଆକାଶ ପାତାଳ ପରି ତଫାତ୍ ଜଣା ପଡ଼ିଲା ।





ଝିଅମାନଙ୍କର ମନ କିଛି ନୁହେଁ, ଦେହର ସୌନ୍ଦର୍ଯ୍ୟର ମଧ୍ୟ କିଛି ମୂଲ୍ୟ ନଥାଏ, ବରଂ ବଡ଼ ହେଉଛି ସେମାନଙ୍କର କପାଳ ।

ଯେଉଁ ଦିନ କୁନ୍ତଳା ପ୍ରଥମ କରି ଖବର କାଗଜ ପୃଷ୍ଠାରେ ନବ ଗଠିତ ମନ୍ତ୍ରିମଣ୍ଡଳର ଫଟୋ ଦେଖିଥିଲା ସେହିଦିନ ତାହା ଆଖି ଦୁଇଟା ଦୁଷ୍ମନ୍ତ ବାବୁଙ୍କୁ ଚିହ୍ନିବାରେ ଭୁଲ କରି ନଥିଲା । ଖବରକାଗଜ ପୃଷ୍ଠାରେ ଦୁଷ୍ମନ୍ତ ବାବୁଙ୍କର ଫଟୋ ବଡ଼ ମନୋରମ ଦିଶୁଥିଲା । ମୁଣ୍ଡରେ ଗାନ୍ଧି ଟୋପି, ଦେହରେ ଖଦଡ଼ ପଞ୍ଜାବୀ ଆଉ ମୁହଁରେ ପରିତୃପ୍ତିର ହସ । କୁନ୍ତଳା ଅପଲକ ନୟନରେ ଘଡିଏ ଚାହିଁ ରହିଲା । ଏ ହେଉଛନ୍ତି ତାର ବାବୁ । ଯାହାହେଉ ଏତେବଡ଼ ବିଶାଳ ପ୍ରଦେଶ ଓଡ଼ିଶା ସେଥିରେ ସେ ବାବୁଙ୍କର ପତ୍ତା ପାଇପାରୁ ନଥିଲା । ବର୍ତ୍ତମାନ ତ ଜାଣି ପାରିଲା । ଭରତର ବାପା ! ଦେଶର ଭାଗ୍ୟ ବିଧାତା । କାଗଜ ଖଣ୍ଡି ମୁଣ୍ଡରେ ଲଗାଇଲା । ମନେ ମନେ ଭାବିଲା ସେ ସିନା ମୁଖ୍ୟମନ୍ତ୍ରୀଙ୍କ ନିକଟରେ ମନ୍ତ୍ରୀ କିନ୍ତୁ ତାହାର ସେ ପ୍ରଭୁ । ଏଇ ଦେହରେ, ଏଇ ମନରେ, କେବଳ ତାଙ୍କର ଅଧିକାର ଥିଲା, ଅଛି, ଏବଂ ଥିବ ।

ହଜିଲା ଜିନିଷକୁ ବହୁ ଦିନ ପରେ ଖୋଜି ପାଇବାର ଆନନ୍ଦରେ କୁରୁଳି ଉଠିଲା କୁନ୍ତଳା । ଗୁଣ୍ଡିତଳେ ତାର ଅକଳନ୍ତ

ବିଶ୍ୱାସ ଜାଗି ଉଠିଲା । ଦିନେ ନା ଦିନେ ନିଶ୍ଚୟ ବାବୁଙ୍କ ସହିତ ସାକ୍ଷାତ ହେବ । ସେତେବେଳେ ତାଙ୍କୁ ନିଜ ବସାକୁ ଟାଣି ଆଣି ତାଙ୍କର ପାଦକୁ ଅଶ୍ରୁ ଜଳରେ ଧୋଇ ଦେଇ କେବଳ ଏତିକି କହିବି ମହାପ୍ରଭୁ, ମୁଁ ବୃନ୍ଦାବତୀ, ତୁମେ ରାଧାଙ୍କୁ ଧରି ପ୍ରୀତି କର ମୋର ଆପତ୍ତି ନାହିଁ । ତୁମେ ରୁକ୍ମଣୀଙ୍କୁ ହରଣ କରି ଅଷ୍ଟପାଟବଂଶୀ ନେଇ ବୈକୁଣ୍ଠରେ ରୁହ ସେଥିପାଇଁ ମୋର ଅଭିମାନ ନାହିଁ । କିନ୍ତୁ ମୋର ହାତର କାଚକୁ ବଜ୍ର କରିବା ପାଇଁ ଏବଂ ମଥାର ସିନ୍ଦୂରକୁ ଉଜ୍ଜଳ କରିବା ପାଇଁ ମୋତେ ତୁମ ମନ ଅଗଣାରେ ତୁଳସୀଗଛ ପରି ରହିବାର ସୌଭାଗ୍ୟ ଦିଅ । ତୁମର ରକ୍ତରୁ ଫୁଟିଥିବା ପଦୁଅଁ ଫୁଲକୁ ମୁଁ ତୁମକୁ ଭେଟି ଦେଉଛି । ଜାତିରେ ପାଲୁଣୀ ମୁଁ । ଯେତିକି ପାରିଛି ସେତିକି ତାକୁ ପାଠ ପଢ଼ାଇଛି । ଏଣିକି ତୁମ ଜିନିଷ ତୁମେ ସମ୍ଭାଳ । ତାକୁ ଦାଣ୍ଡରେ ମଣିଷ କରି ଠିଆ କରାଅ ।

ପ୍ରଭୁ ହେ, ତୁମେ ଜନତାର ସେବା କରିବା ପାଇଁ ଜନ୍ମରୁ ଶପଥ ନେଇଥିଲ । ମନ୍ତ୍ରୀ ହୋଇ ଶାସନ ଗାଦିରେ ବସିବାର ଅହଂକାର ତୁମର ନଥିଲା । ତୁମେ ମୋତେ କହିଥିଲ ମୋ ଜାତି ଭଲ ଏକ ଅଛିବ ଜାତିର ପ୍ରତିନିଧି ଅଛି କହି କହି ଧୀମ ଘୋଇ । ତାଙ୍କର ଆଦର୍ଶ ଥିଲା, ଏ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ । ସେହିପରି ତୁମେ ବାପ ମାଆଙ୍କର ସ୍ନେହ, ବିଶାଳ ସମ୍ପତ୍ତିକୁ ତୁଚ୍ଛ କରି ଦରିଦ୍ର ନାରାୟଣଙ୍କର ସେବା ପାଇଁ ଚାଲି ଆସିଥିଲ । ଯାହାହେଉ ଦେଶବାସୀ ବିଳମ୍ବରେ ହେଉପଛେ ତୁମ ଗୁଣ ଚିହ୍ନିଲେ । ଏ ଦେଶର ପାଣି ପବନକୁ ଯେମିତି ଭଲ ପାଇଥିଲ ତାହାର ଉନ୍ନତି ତୁମ ବିନା ଅନ୍ୟ ଦ୍ୱାରା କ'ଣ ସମ୍ଭବ ?

ପ୍ରଭୁ ହେ, ତୁମେ ଜାତିରେ, ପାଠରେ, ଗୁଣରେ, ଆଉ ରୂପରେ ସବୁଥିରେ ମୋ ଠାରୁ ବଡ଼ । ଦେବତା ଠାରୁ ଉଚ୍ଚ ଆସନରେ ତୁମକୁ ସଦାବେଳେ ବସାଇ ଆସିଛି । ସ୍ତ୍ରୀର ସ୍ୱାମୀ ବ୍ୟତୀତ ବଡ଼ ଠାକୁର କିଏ ଅଛି ? ମୁଁ ଯାହା ଶୁଣିଥିଲି ତାହା କ'ଣ ସତ ? ବଡ଼ ଲୋକମାନେ ଶ୍ରେଷ୍ଠ ଲୋକମାନଙ୍କର କଥା ଭୁଲିଯାଆନ୍ତି । ପ୍ରଭୋ !

ତୁମେ ତ ମୋ ଆଖିରେ ପୁରୁଷ ନ ଥିଲ ? କିନ୍ତୁ ମହାପୁରୁଷ ଥିଲ । କାରଣ ଏତିକି ଜାଣିଥିଲି, ଯିଏ ସମସ୍ତଙ୍କ ଇଚ୍ଛା ସହିତ ନିଜର ଇଚ୍ଛାକୁ ମିଶାଇ ଦେଇ ପାରେ ସେ ହିଁ ଆପଣାର ଜୀବନକୁ ପରିପୂର୍ଣ୍ଣ କରେ, ସଫଳ କରେ । ତାହା ପକ୍ଷରେ ବିସ୍ମରଣ କ'ଣ ସମ୍ଭବ ହୋଇପାରେ ?

ପ୍ରଭୁ ହେ ! ଦିନ କେତୋଟା ମିଳାମିଶାର ସ୍ମୃତିକୁ ଧୋଇ ଶୁଖାଇ ମୁଁ ମନରେ ଏପର୍ଯ୍ୟନ୍ତ ସାଇତି ରଖିଛି । ପ୍ରତ୍ୟେକଟି ମୁହୂର୍ତ୍ତର ଘଟଣା ଏବେ ବି ମନରେ ଜାଗରୂକ ଅଛି, ମୋତେ ତୁମେ କହିଥିଲ ନା ତେଲ ଲୁଣ ପାଇଁ ସଂଗ୍ରାମ କରି ବଞ୍ଚିବାକୁ ମଣିଷ ଜନ୍ମ ହୋଇନାହିଁ । ମଣିଷ ଜୀବନରେ ଆନନ୍ଦଟା ହିଁ ମୂଳ । ଏହି ଆନନ୍ଦ କୁଆଡ଼େ ସୌନ୍ଦର୍ଯ୍ୟରୁ ମିଳେ । ଯେଉଁଠାରେ ଆନନ୍ଦ କଥା ଉଠିଥାଏ ସେହିଠାରେ ସୌନ୍ଦର୍ଯ୍ୟ କୁଆଡ଼େ ରହିଥାଏ । ମୁଁ କିନ୍ତୁ ଆଜି ସେହି କଥାକୁ ମନରେ ତଉଲିବା ବେଳେ ଭାବୁଛି ଆଜିକାଲି ସମସ୍ତେ ନିଜ ନିଜ ସ୍ୱାର୍ଥରେ ବ୍ୟସ୍ତ । ସୌନ୍ଦର୍ଯ୍ୟ କଥା କିଏ ଦେଖୁଛି ନା ମନେ ପକାଉଛି । ପଛ ଜିନିଷ ପୁରୁଣା ହୁଏ । ନୂଆ ଜିନିଷରେ ସୌନ୍ଦର୍ଯ୍ୟ ଥାଏ । ଯାହା କହନ୍ତି ପୁରୁଷ ପୁଅର ପ୍ରଜାପତି ମନ । କେତେବେଳେ କେଉଁ କୁସୁମରେ ବସନ୍ତି ତାର ଠିକଣା ନଥାଏ । କିନ୍ତୁ ନାରୀ ଥରେ ରୂପକୁ ଭଲ ପାଇଲେ ତାକୁ ବିହି ବାଧା ବନ୍ଧନ ସହିବାକୁ ହୁଏ । ପ୍ରେମିକ ବ୍ୟକ୍ତି ଯେତେ କନ୍ଦର୍ପ ପୁରୁଷ ଦେଖିଲେ ମଧ୍ୟ ତାହା ମନରେ ସେମାନେ କୁରୂପ ଦିଅନ୍ତି । ସେଥିପାଇଁ ବିବାହ ପରେ ଆଦ୍ୟ ଜୀବନର ପ୍ରେମିକକୁ ସେ ଭୁଲିପାରେ ନାହିଁ । ପତ୍ନୀ ହୋଇ ପତି ନିକଟରେ ସୋହାଗିନୀର ଅଭିନୟ କରେ । ସମସ୍ତେ ତ ବିବାହ ପୂର୍ବରୁ ପ୍ରେମ କରି ନଥାନ୍ତି ତେଣୁ ବିବାହ ପରେ ନାରୀର ଭଲ ପାଇବା ଏତେ ନିଗଢ଼ ହୁଏ ଯେ ପତିର ମୃତ୍ୟୁ ପରେ ସେ ବିଧବା ହୁଏ । ତାହାର ସ୍ମୃତିକୁ ମନେ ରଖିବା ପାଇଁ ଚବିଶ ଏକାଦଶୀ କରେ । ବିଳାସ ବ୍ୟସନକୁ ଦୂର କରିଦିଏ ।

ପ୍ରଭୁ ! ମୁଁ ଘୁରି ଛୁଁକରି ଅଙ୍କବିଜ୍ଞାନରେ ଝିଅଟାଏ । କେତେ ଅବା ପାଠ ପଢ଼ିଥିଲି ? ସବୁ ତ ତୁମକୁ ଜଣା । ତୁମରି ପାଇଁ ଘରୁ ପାଦ କାଢ଼ି ବାହାରକୁ ଆସିଲା ପରେ ପାଞ୍ଚ ଲୋକଙ୍କ ସଙ୍ଗେ ମିଶିଲି ।

ପଚଶ କଥା ଶିଖିଲି । ସେଥିରୁ କେତୋଟି କଥା ମନେ ପଡ଼େ । ସହିବା ଗୁଣଠାରୁ କୁଆଡ଼େ ପ୍ରତିଶୋଧ ନେବାର ଆଉ କିଛି ଉତ୍କୃଷ୍ଟ ଉପାୟ ନାହିଁ । ଦୁଃଖ ହିଁ ମଣିଷର ପରମ ଗୁରୁ । ଯେଉଁ ହୃଦୟ ଦୁଃଖ ନ ସହିଛି ତାହା ମଶାଣି ଭୂଇଁ । ଦୁଃଖ ସମାନ ବନ୍ଧୁ ନାହିଁ । ସେ ମଣିଷକୁ ବହୁତ କଥା ଶିକ୍ଷା ଦିଏ । ଭବିଷ୍ୟତକୁ ସତର୍କ କରାଇଦିଏ ।

ମୁଁ ଯାହା ସହ୍ୟ କରି ଆସିଛି କ'ଣ ତୁମ ଉପରେ ପ୍ରତିଶୋଧ ନେବା ପାଇଁ ? ନା, ତାହା କଦାପି ନୁହେଁ । ସ୍ୱାମୀର ସ୍ତ୍ରୀ ହେଉଛି ଚରଣ ସେବିକା । ଦୁଃଖ ତୁମେ ବହୁତ ସହିଛ କିନ୍ତୁ ତୁମକୁ ଦୁଃଖ କ'ଣ ଶିକ୍ଷା ଦେଲା ?

ପ୍ରଭୁ ! ମୁଁ ସରଳା ନାରୀଟିଏ, ଛଳ ଛଦ୍ମ କ'ଣ ଜାଣି ନଥିଲି, ତୁମର ମିଠା କଥାରେ ଭୁଲିଥିଲି, ତୁମକୁ ଦେବତା ଭଳି ଭଲ ପାଇଥିଲି, ଏବେ ମଧ୍ୟ ମୋ ହୃଦ ସିଂହାସନରେ ତୁମ ବ୍ୟତୀତ ଆଉ କାହାର ସ୍ଥାନ ନାହିଁ, ମୁଁ କଣ ତୁମ ଉପରେ ପ୍ରତିଶୋଧ ନେଇ ପାରିବି ? ମୁଁ କେବଳ ଅଭିମାନ କରି ପାରିବି । ମୋତେ ଯେଉଁ ଦୁଃଖ ଦେଉଛ ସେଥିକି ପାଇଁ ମୁଁ ଭଗବାନଙ୍କୁ ପ୍ରାର୍ଥନା କରିବି ଅଭିବ ଜାତିର ଝିଅକୁ କୌଣସି ସବର୍ଣ୍ଣ ଜାତିର ପୁଅ ଭଲ ପାଇ, ଅଇଁଠା କରି, ଦାଣ୍ଡରେ ବସାଇ ଦେଇ ନଯାଆନ୍ତୁ । ତାହା କପାଳରେ ଭଗବାନ ମୋ ପରି ଏତେ କଷ୍ଟ ନ ଲେଖନ୍ତୁ ।

ପ୍ରଭୁ ହେ ! ମୋ ମନରେ ଦୁଃଖ ଏତିକି ରହିଗଲା ଯେ ସଂସାରର ଅସରନ୍ତି ପିଚ୍ଛିଳ ପଥରେ ମୋତେ ଚାଲିବାକୁ ଏକା ଏକା କଷ୍ଟ ଲାଗୁଛି । ବେଳେ ବେଳେ ଭାବେ ତୁମେ ଯଦି ସାଥୀରେ ଥାନ୍ତ ତେବେ ପଥ ଶ୍ରମ ଜନିତ କ୍ଳାନ୍ତି ଜଣା ପଡନ୍ତା ନାହିଁ । ଚାଲିବାଟା ସହଜ ହୁଅନ୍ତା ।

ପ୍ରଭୁ ହେ ! ଦୁଃଖ, ଶୋକ, ଆଉ ଅପବାଦ ତିନୋଟି ତାରକାରେ ମୋ ଜୀବନର ମାଳା ଗୁନ୍ଥା ହୋଇଛି । ସୁଖ ତେଣୁ ଆଶା ଅବା କରିବି କିପରି ?

ଯାହା ହେଉ ଏତିକ ମୋର ସୌଭାଗ୍ୟ, ଏଣିକି ତୁମର ରୂପ ନଦେଖି ପାରିଲେ ପ୍ରତିରୂପ କାଗଜ ମାନଙ୍କରେ ଦେଖି ପାରିବ । ଆପଣ ଯେଉଁଠାରେ ରହନ୍ତୁ ନା କାହିଁକି ମୁଁ କିନ୍ତୁ ସବୁବେ ଆପଣ ମୋର । ମୋର ସକଳ ତୀର୍ଥ ହେଉଛି ଆପଣଙ୍କର ଚରଣ ଯୁଗଳ ।

ପ୍ରଭୁ ହେ ! ମୋର ଅନ୍ତିମ ପ୍ରାର୍ଥନା, ତୁମେ ମୋତେ ଆପଣା ନକରି ପାର; କିନ୍ତୁ ମୋର ରୁକ୍ମୁଣୀ ରତନ ଭରତକୁ ଥରେ କୋଳକୁ ଆଉଜାଇ ନିଅ । ସେ ଏତିକି ଜାଣୁ ସେ ହେଉଛି ଘୋଡ଼ାଚଢ଼ା ବାପର ପୁଅ, ଅଣବାବୁଆ ନୁହେଁ ।

ହଜିଲା ମାଣିକକୁ ପାଇଲା ପରେ ସେହିଦିନ କୁନ୍ତଳା ଆଖିରୁ ଯେଉଁ ଅଶ୍ରୁର ଝରଣା ଝରଝର ହୋଇ ବହି ଯାଉଥିଲା ତାହା ଦୁଃଖର ନୁହେଁ । ସେଥିରେ ହଜିଲା ଦିନର ବୁକୁଭରା ପ୍ରୀତି ଓ ପ୍ରଣୟର ସ୍ୱାକ୍ଷର ଥିଲା ।





ଜଗତଟା ପରିବର୍ତ୍ତନଶୀଳ ।

ଆଜି ଯିଏ ସତ୍ ଏବଂ ସନ୍ଥ ବୋଲି ଖ୍ୟାତ ସେ କାଲି ଚୋର ହୁଅନ୍ତି । ଦସ୍ୟୁ ରତ୍ନାକର ଦିନେ ବାଲ୍ମୀକି ଋଷି ହେଲେ । ଅଯୋଧ୍ୟାର ରାଜା ହରିଶ୍ଚନ୍ଦ୍ର ଶ୍ମଶାନ ଜଗିଲେ । ଆଉ ଯିଏ ଦିନେ ରାଜପୁତ୍ର ସିଦ୍ଧାର୍ଥ ଥିଲେ ସେ ତଥାଗତ ବୁଦ୍ଧଦେବ ହେଲେ । ଏହି ପରିବର୍ତ୍ତନ ଲାଗି ରହିଛି ବୋଲି ଜୀବନରେ ଏତେ ବୈଚିତ୍ର୍ୟ ପରିଲକ୍ଷିତ ହୁଏ ।

ଗୋଟିଏ ଅଳସ ଅପରାହ୍ଣରେ ଦୁଷ୍ମନ୍ତ ବାବୁ ନିଜ ବାପାଙ୍କ କଥା ଭାବୁଥିଲେ । ବାପା କହୁଥିଲେ ପୁଅ ଯଦି ଯୋଗ୍ୟ; ତେବେ ଧନ କାହିଁପାଇଁ ସଞ୍ଚୁ ? ପୁଅ ଯଦି ଅଯୋଗ୍ୟ ତେବେ ଧନ କାହାପାଇଁ ସଞ୍ଚୁ ? ତାଙ୍କ କଥା ଅକ୍ଷରେ ଅକ୍ଷରେ ସତ ହେଲା । ଦୁଷ୍ମନ୍ତବାବୁ ତାଙ୍କର ସୁଯୋଗ୍ୟ ଦାୟାଦ ହୋଇପାରିଛନ୍ତି । କିନ୍ତୁ ତାଙ୍କର ଏକମାତ୍ର ପୁଅ ଲଳିତ ବିଷୟରେ କ'ଣ ଗର୍ବର ସହିତ କହି ପାରିବେ ଯେ ତାଙ୍କ ପରେ ସେ ଉପଯୁକ୍ତ ଉତ୍ତରାଧିକାରୀ ହୋଇପାରିବ ?

ଲଳିତକୁ ମଣିଷ କରିବା ପାଇଁ ଭଗବାନ କିଛି ତ ଅଭାବ ରଖି ନାହାନ୍ତି । କିନ୍ତୁ ସେ ମଣିଷ ହୋଇ ପାରୁଛି କେତେକ ? ନା ପାଠ ଅଛି, ନା ଶାଠ ଅଛି । କେବଳ ବାୟାରିଆ ହୋଇ ବୁଲିବା ସାର ହେଉଛି । ଆଜି ତାଙ୍କର ପ୍ରତିପତ୍ତି ଅଛି, କେହି କିଛି କହୁ ନାହାନ୍ତି । ସବୁଦିନ କ'ଣ ସମାନ ଥିବ ? ରାଜନୀତିରେ ଶତ୍ରୁ ଗୃହିଅଡ଼େ । ଲଳିତକୁ ଯେତେ ଯାହା ବୁଝାଇଲେ ସେ ଶୁଣିବାକୁ ପ୍ରସ୍ତୁତ ନୁହେଁ । ଗୁଡ଼ାଏ ବାଜେ ସାଙ୍ଗ, ଆଉ ମଠର କାର୍ ଖଣ୍ଡିଏ ଧରି ସେ ଅନବରତ ଆଡ଼୍ଡା ମାରୁଛି ।

ଦେଶ ସେବାରେ ନିଜକୁ ନିୟୋଜିତ କଲାପରେ ସେ ଏବେ ଖୁବ ଅଳ୍ପ ସମୟ ପାଉଛନ୍ତି ନିଜ ଘର ଏବଂ ପରିବାର ପ୍ରତି ଦୃଷ୍ଟି ଦେବା ପାଇଁ । ସ୍ତ୍ରୀ ନନ୍ଦିକା ଦେବୀ କେବଳ ସମ୍ପତ୍ତି ପଛରେ ଧାଇଁଛନ୍ତି । ନିଜ ଭବିଷ୍ୟତ ପ୍ରତି ତାଙ୍କର ଦୃଷ୍ଟି ନାହିଁ । ଘର ସଂସାର ବିଷୟରେ ଆଜିକାଲି ସ୍ୱାମୀ ସ୍ତ୍ରୀ ଭିତରେ କ୍ୱଚିତ୍ ଆଲୋଚନା ହୋଇ ପାରୁଛି । ତାଙ୍କ ପରି; ଲୋକମାନେ ମଧ୍ୟ ନନ୍ଦିକା ଦେବୀଙ୍କୁ ନେଇ ବିଭିନ୍ନ ସଂସ୍କାର ପୃଷ୍ଠପୋଷିକା ଭାବରେ ରଖିଲେଣି । ମନ୍ତ୍ରୀଙ୍କ ଘରଣୀ ଭାବରେ ସାଂସ୍କୃତିକ ଉତ୍ସବରେ ଯୋଗ ଦେବା ନିମିତ୍ତ ଇଚ୍ଛା ନ ଥିଲେ ସୁଦ୍ଧା ସେ ବାରଣ କରିପାରୁ ନାହାନ୍ତି ।

ଏହିଭଳି ଚିନ୍ତା କରୁଥିବାବେଳେ ତାଙ୍କ ମନ ଭିତରୁ ଯେପରି କିଏ କହି ଉଠିଲା, ଏ ଜଞ୍ଜାଳ, ଏତେ ଝାମେଲା, ସବୁଥିରୁ ମୁକ୍ତି ପାଇବ ଯଦି ମନ୍ତ୍ରୀ ପଦର ଖୋଳ ଭିତରୁ ନିଜକୁ ବାହାର କରି ଆଣି ପାରିବ ।

ଚମକ ଲାଗିଲା ଦୁଷ୍ମନ୍ତବାବୁଙ୍କ ମନରେ । ଏତେ ସହଜରେ କ'ଣ ଏତେବଡ଼ ତ୍ୟାଗ କରିହେବ ? ଯେଉଁ ଗଳାରେ ମାଳ ମାଳ ହୋଇ ଫୁଲ ଚଢୁଛି, ସଭା ସମିତିରେ ଯାହାଙ୍କୁ ସ୍ତୁତି କରି ମାନପତ୍ରମାନ ପଢ଼ା ଚାଲିଛି, ଯିଏ ଚାଲିଗଲେ ଆଇ. ଏ. ଏସ୍. ଅଫିସରମାନଙ୍କର ମୁଣ୍ଡ ନଇଁ ଯାଉଛି, ସେ ସବୁକୁ କ'ଣ ଏତେ ସହଜରେ ଏଡ଼ାଇ ଦେଇ ହେବ ?

ପୁଣି ମନରେ ଦୁଷ୍ମନ୍ତବାବୁଙ୍କର ପ୍ରଶ୍ନ ଉଠିଲ——ନୀତି ଛାଡ଼ିଲେ କରିବେ କ'ଣ ? ଦେଶସେବା କରିବା ପାଇଁ ତ ଜୀବନ ଉତ୍ସର୍ଗ କଲେ । କେତେ କଷ୍ଟ ସହିଲେ । ଆଉ ଅସଲ ବେଳକୁ··· । ହଁ, ଗାଆଁକୁ ଚାଲିଯାଆନ୍ତେ । କିନ୍ତୁ ଗାଆଁ କ'ଣ ଆଉ ଭଲ ଲାଗିବ ପିଲାମାନେ କ'ଣ ଗାଆଁରେ ରହିବାକୁ ମାଗିବେ ? ସେଠାକାର ସଂକୀର୍ଣ୍ଣ ରାଜନୀତି ଏବଂ ସମାଲୋଚକମାନଙ୍କଠାରୁ ସେ କ'ଣ ନିଜକୁ ଦୂରେଇ ରଖି ପାରିବେ ?

ରାଜନୀତି ଛାଡ଼ି ଦେଲେ ସମୟ କଟିବ କିପରି ? କୃଷିବାସ କଥା । ସେଥିରେ ସେ କ'ଣ ଅଭ୍ୟସ୍ତ ? ହଳ ଲଙ୍ଗଳ ଉତ୍ସବ କିମ୍ବା ବନମହୋତ୍ସବରେ ଆଦର୍ଶ ସୃଷ୍ଟି କରିବା ପାଇଁ ସେ ସିନା କଣ୍ଟି ଦେହରେ ହାତ ପକାଇ ଦିଅନ୍ତି ଅବା ନିଖୋଳା ହୋଇଥିବା ଗାତରେ ଚାରା ଗଛଟିଏ ରୋପି ଦିଅନ୍ତି, କିନ୍ତୁ ସେହିଭଳି କାର୍ଯ୍ୟକୁ କ'ଣ ଅନବରତ କରିହେବ ? ଅନବରତ ନିଜେ ନ କରି ପାରିଲେ ମୂଲିଆଙ୍କୁ ନେଇ ହିଡ଼ମୁଣ୍ଡରେ ବସି ସେମାନଙ୍କୁ କ'ଣ ଜଗି ପାରିବେ ? କୃଷିବାସ କରି ପେଟ ପୋଷିବା; କିମ୍ବା ଗୋଛି କରିଆ ପିନ୍ଧି ଉଚ୍ଚ ଚିନ୍ତା କରିବା ସିନା ଭାଷଣ ପାଇଁ ପ୍ରଯୁଜ୍ୟ ହୋଇ ପାରେ କିନ୍ତୁ ବାସ୍ତବ କ୍ଷେତ୍ରରେ ସେସବୁ କ'ଣ କରିହେବ ?

ମଣିଷ ସଂସାରକୁ କେବଳ ଖାଇ ପିଇ, ପିଲାଛୁଆ ଜନ୍ମ କରିବାକୁ କଣ ଆସିଛି ? ବୋଧହୁଏ ନୁହେଁ । ଏହି ସବୁ ସହିତ ତାହା ଜୀବନରେ ଆଉ ଗୋଟିଏ ଲକ୍ଷ୍ୟ ଥାଏ ସେଇଟି ହେଲା ମୋତେ ପାଞ୍ଚ ଜଣରେ ବଡ଼ ବୋଲି ସମସ୍ତେ କହନ୍ତୁ । ମୋର କ୍ଷମତା ରହୁ । ମୋର ବଚନର ମୂଲ୍ୟ ରହୁ । ମୁଁ ସଦାବେଳେ ଯେପରି ନିର୍ଦ୍ଦେଶକ ହୁଏ । କଦାପି ନିର୍ଦ୍ଦେଶିତ ନ ହୁଏ ।

ପ୍ରତ୍ୟେକ ମଣିଷ ସେଥିପାଇଁ ଗୋଟିଏ ଗୋଟିଏ ଅହଂକାରର ପ୍ରତିମୂର୍ତ୍ତି । କେଉଁମାନଙ୍କ ଭିତରେ ଏହି ଅହଂ ଭାବଟା ସ୍ପଷ୍ଟ ହୋଇ କଥା କହେ ତ କାହା ଭିତରେ ଗୋପନରେ ରହି ଫୁସ୍‌ଫୁସ୍ ଏବଂ ଗଳା ନଳୀକୁ ପ୍ରତି ମୁହୂର୍ତ୍ତରେ ପୋଡ଼ି ପକାଉଥାଏ ! ଅହଂକାରକୁ

ତ୍ୟାଗ କରିବାକୁ ହେଲେ ମଣିଷକୁ ସଂସାର ତ୍ୟାଗ କରିବାକୁ ହେବ । ସଂସାର ତ୍ୟାଗ କରିବା ଅର୍ଥ ଏଠାରେ ନିଜକୁ ତ୍ୟାଗ କରିବା । ନିଜକୁ ତ୍ୟାଗ କରିବା ମାନେ ମରଣ ନୁହେଁ । ତାହା ହେଉଛି "ମୁଁ ତ୍ୱ" । ଯିଏ "ମୁଁ ତ୍ୱ" ତ୍ୟାଗ କରେ ସେ ମାନବ ହୋଇ ରହେ ନାହିଁ । ସେ ମହା ମାନବ ହୁଏ ।

କରିବା ଏବଂ କହିବା ଏହି ଦୁଇଟା ସହଜ କଥା ନୁହେଁ । ଆଚରଣ କରି ନିଜ ଜୀବନରେ ଏହାକୁ ଦେଖାଇ ପାରିଥିଲେ ମୋହନ ଦାସ କରମଚାନ୍ଦ ଗାନ୍ଧୀ । ସେଥିପାଇଁ ସେ ହେଲେ ଜାତିର ପିତା, ମହାପୁରୁଷ ଏବଂ ମହାମାନବ ।

ଏହି ତକ ଯେଉଁମାନେ ତ୍ୟାଗ କରି ପାରି ନ ଥିଲେ ସେହିମାନେ ହୋଇଥିଲେ ଦେଶର ଶାସକ ।

ସତ୍ୟ କହିବା ଏବଂ ସତ୍ୟକଥନ ପାଇଁ ଭାଷଣ ଦେବା ଦୁଇଟା ସମାନ ଜିନିଷ ନୁହେଁ । ଗୋଟିଏ ବାସ୍ତବ ହେଲେ ଅନ୍ୟଟି ଛଳନା ।

ରାଜନୀତି କରିବାକୁ ହେଲେ ସତର ମୁଣ୍ଡକୁ ଚୋବାଇ କରି ଖାଇବାକୁ ହୁଏ । ଛଳନାର ଶିକାର ହୋଇ ସମସ୍ତ ପ୍ରତିଶ୍ରୁତିମାନ ଦେବାକୁ ପଡ଼େ ।

ରାଜନୀତିରେ ଯିଏ ଯେତିକ ଛଳନା ପଟୁ, ସେ ସେତିକି ଧୂର୍ତ୍ତ, ବିଚକ୍ଷଣ ଏବଂ କରିତ୍‌କର୍ମା ବ୍ୟକ୍ତି ହୋଇ ପାରେ । ମଧୁର ହସ ସହିତ କହିଣ କୋମଳ ବଚନ, ତୋଷିବ ସମସ୍ତଙ୍କ ମନ । ଯେଉଁ ମୁହୂର୍ତ୍ତରେ ଯାହାକୁ ଦେଖିବ ସେତିକି ସମୟ ପର୍ଯ୍ୟନ୍ତ ତାହାର ହୋଇ ପାରୁଥିବ । ତେବେ ସେ ସାର୍ଥକ ରାଜନୈତିକ ବ୍ୟକ୍ତି କିମ୍ବା ନେତା ହୋଇ ପାରିବ ।

ସିଦ୍ଧାର୍ଥରୁ ତଥାଗତ ହେବା ଯେପରି କଷ୍ଟ ତାହାଠାରୁ ଅଧିକ ଦୁଃଖ କରିବାକୁ ହୁଏ ଦସ୍ୟୁ ରତ୍ନାକରରୁ ବାଲ୍ମୀକୀ ହେବା । ଦୁଇଟା ପାଇଁ ତପସ୍ୟା କରିବାକୁ ହୁଏ । ଆତ୍ମାକୁ ତିଳ ତିଳ କରି କ୍ଲେଶ ଦେବାକୁ ହୁଏ । ତପ୍ପରେ ଏତିକି ଗୋଟିକରେ ପ୍ରାକ୍‌ପର୍ଯ୍ୟକୁ ତ୍ୟାଗ କରିବା

ଅର୍ଥାତ୍ ଅହଂକୁ ବର୍ଜନ କରିବା ଆଉ ଅନ୍ୟଠିରେ ଅନ୍ଧାରରୁ ଆଲୋକ ଆଡ଼କୁ ଯିବା ।

ଦୁଷ୍ମନ୍ତବାବୁ ଭାବୁଥିଲେ ସାମ୍ପ୍ରତିକ କ୍ଷେତ୍ରରେ ସେ ବର୍ତ୍ତମାନ ଦସ୍ୟୁ ରତ୍ନାକର । ତାଙ୍କ ପକ୍ଷରେ ବାଲ୍ମୀକୀ ହେବା ପାଇଁ ଯେଉଁ ସାଧନା ଦରକାର ସେଥିପାଇଁ ତାଙ୍କର ବଳ ବୟସ ନାହିଁ । ଆଉ ଆଜିକାଲିର ରାଜନୀତିର ବାୟୁମଣ୍ଡଳ ଯାହା ସେଥିରେ ସେ ଯଦି ମନ୍ତ୍ରୀତ୍ୱରୁ ଇସ୍ତଫା ଦେଇ ସକ୍ରିୟ ରାଜନୀତିରୁ ଦୂରେଇ ରହି ନିଜକୁ ଗଠନମୂଳକ କାର୍ଯ୍ୟରେ ନିୟୋଗ କରନ୍ତି ତେବେ ସେ କଦାପି ତଥାଗତର ଗୌରବ ପାଇ ପାରିବେ ନାହିଁ । ତେଣୁ 'ବର୍ତ୍ତମାନ' ସମୟଟି ହିଁ ଶ୍ରେଷ୍ଠ । ଯାହା ହୋଇ ପାରିବା ସଂଭାବନା ନାହିଁ; ତାହା ଅପେକ୍ଷା ଯେତିକି ହୋଇ ପାରିଛନ୍ତି ସେତିକିରେ ସନ୍ତୁଷ୍ଟ ହୋଇ ରହିବା ବିବେକୀର କାର୍ଯ୍ୟ ହେବ ।

ଆପେ ବଞ୍ଚିଲେ ବାପର ନାମ ! ଲଳିତ ତାହାର ଭାଗ୍ୟ ଭୁଞ୍ଜିବ । ସେ'ତ ଆଉ ପିଲା ହୋଇ ନାହିଁ । ଯୁବକ ହେଲାଣି । ବିଚାର, ବିବେଚନା କରିବା ପାଇଁ ତାହାର ବୟସ ମଧ୍ୟ ହେଲାଣି । ସେ ନିଜେ ଯଦି ନିଜର ଭବିଷ୍ୟତ କଥା ଚିନ୍ତା କରି ନପାରିବ ତେବେ ସେ ଅବା ତାହାପାଇଁ କ'ଣ କରି ପାରିବେ ? ଯେତେ ହେଲେ ସେ ବାପ । ତାଙ୍କ କାମ ଦାଣ୍ଡରେ । ନନ୍ଦିକା ଦେବୀ ହେଉଛନ୍ତି ମାଆ । ତାଙ୍କର କର୍ତ୍ତବ୍ୟ ହେଉଛି ଘର କହିଲେ ଯାହା ବୁଝାଏ ସେ ସବୁର ଦାୟିତ୍ୱ ନେବା । ସେ ଯଦି ତାଙ୍କ ଦାୟିତ୍ୱ ତୁଲାଇବେ ନାହିଁ, ପୁଅକୁ ଭଲ ମନ୍ଦରେ ପଦେ କହିବେ ନାହିଁ, ତେବେ ସେଇଟା ତାଙ୍କର ଭୁଲ । ସେ ଭୁଲ୍ ପାଇଁ ସେ ଦିନେ ନିଶ୍ଚୟ ଅନୁତାପ କରିବେ ।

ଦୁଷ୍ମନ୍ତବାବୁ ସେଦିନ ଆତ୍ମବିଶ୍ଳେଷଣ କରି ନିଜକୁ ନିରପରାଧୀ ବୋଲି ଜାହିର କରିବାକୁ ଚେଷ୍ଟା କରୁଥିଲାବେଳେ ଶଙ୍କରାଚାର୍ଯ୍ୟଙ୍କ ମୋହ ମୁଦ୍‌ଗରରୁ ପଦେ ତାଙ୍କର ମନେ ପଡ଼ିଗଲା—କାତେ କାନ୍ତା କସ୍ତେ ପୁତ୍ରଃ ।

ଠିକ୍ ସେତିକିବେଳେ ତାଙ୍କ ପାଇଁ ବ୍ୟସ୍ତ ଏବଂ ବିଚଳିତ ହୋଇ ଉଠୁଥିବା ମନ ସେପାଖରୁ କହି ଉଠିଲା-ସଂସାରେଽସ୍ମି ମହାବ ବିଚିତ୍ରଃ ।

ଜୀବନର ବୈଚିତ୍ର୍ୟ ସମଝି ହୁଏ ନାହିଁ । ସ୍ନେହ, ମାୟା, ମମତାରେ ଗଢ଼ା ଏ ସଂସାର । ସେତକ ଭୁଲାଇ ଦେବା କ'ଣ ଏତେ ସହଜ ! ପୁଅ ବୟସରେ ବୁଢ଼ା ହେଲେ ବି ବୁଢ଼ୀ ମାଆ ବଞ୍ଚିଥିଲେ କହେ ମୋ ପିଲା ପୁଅଟା । ତାର କ'ଣ ବୁଦ୍ଧି ହେଲାଣି ? କାଲିକ କାଲି ସେ ତାର ଧନ୍ଦା କରିବ ନାହିଁ ।

ପୁରୁଷ କହେ ଘରଟିଏ ଥିଲେ କ'ଣ ହେବ, ଘରଣୀଟିଏ ନଥିଲେ ତାହା ଶୋଭା ପାଏ ନାହିଁ ! ଘରକୁ ଘରଣୀଟିଏ ନଥିଲେ ବୁଢ଼ା ଦିନେ ଦେହ ମୁଣ୍ଡରେ କିଏ ହାତ ଦେବ ? ରୋଗ ବାଧକାରେ ପଡ଼ିଲେ ତୁଣ୍ଡକୁ କିଏ ପାଣି ଟିକିଏ ଟେକି ଦେବ ? ଦୁଷ୍ଟା ହେଉ କିମ୍ବା କଳହୁଣ୍ଡୀ ହେଉ ପଛେ ସେଥିରୁ ଗୋଟିଏ ନିହାତି ଦରକାର । ବର୍ଷେ ଦୁଇବର୍ଷ ତାହା ସହିତ ଘରସଂସାର କଲାବେଳେ ଆପେ ଆପେ ସ୍ତ୍ରୀର **ପକ୍ଷ** ନେଇ କହେ ସେ ଦୁଷ୍ଟା ହୋଇଛି କିମ୍ବା କଳହୁଣ୍ଡୀ ହୋଇଛି କ'ଣ ତାହାର ନିଜର ସ୍ୱାର୍ଥ ପାଇଁ ? ନିଜ ସ୍ୱାମୀର ମଙ୍ଗଳ ପାଇଁ ସିନା ସେ ପର ସଙ୍ଗରେ ଯୁଝିବାକୁ ଅଣ୍ଟାରେ ଲୁଗା ଭିଡ଼ି ବାନ୍ଧୁଛି । ନଚେତ୍ ଯାନ ଯାଆ ସଙ୍ଗେ କଜିଆ କରନ୍ତା କାହିଁକି ? ଦିଅରମାନଙ୍କ ନାମରେ ଲଗାଇ ଜୁଟାଇ ଭିନ୍ନେ କରିଦେବାକୁ କହନ୍ତା କାହିଁକି ? ଏ ସମ୍ପତ୍ତି, ଏ ଘରବାଡ଼ି ସେ କ'ଣ ସଙ୍ଗରେ ନେଇ-କରି ଯିବ ? ତେଣୁ ତାହା କଥାରେ ନ ଚାଲିଲେ ଛତରରେ ପଶିବାକୁ ହେବ ।

ଦୁଷ୍ମନ୍ତବାବୁ ଭାବନ୍ତି ଏ ସଂସାର ବଡ଼ ବିଚିତ୍ର । ଏ ସଂସାରକୁ ଯେଉଁ ବିଧାତା ସର୍ଜ୍ଜନା କରିଛି ସେ ମଧ୍ୟ ବିଚିତ୍ର କର୍ମୀ । ଭଲ ମାୟା ଲଗାଇ ଦେଇଛି ମାୟାଧର । ଗାଈ ବାଛୁରୀକୁ ଛାଡ଼ି ରହି ପାରୁ ନାହିଁ, ଆଉ ବାଛୁରୀ ଗାଈକୁ ନ ଦେଖିଲେ ହମ୍ବାରଡ଼ି କରି ଗୁହାଳ ଭାଙ୍ଗୁଛି । କେହି କାହାକୁ ଛାଡ଼ିବାକୁ ନାରାଜ ।

ନିଜ କଥା ଆଜିକାଲି ଚିନ୍ତାକରିବାକୁ ଦୁଷ୍ମନ୍ତବାବୁ ଅଳ୍ପ ସମୟ ପାଆନ୍ତି । ସେକ୍ରେଟେରିଏଟ୍‌କୁ ଗଲେ ଫାଇଲର ପାହାଡ଼, ଯୋଜନାର ଲମ୍ବା ଫର୍ଦ୍ଦ । ଘରକୁ ଫେରିଲେ ଗୃହ ପାଖରେ ଲୋକଙ୍କର ଗହଳି । କେବଳ ଆପତ୍ତି, ଅଭିଯୋଗର ଦରଖାସ୍ତ ମାଳକୁ ମାଳ । ସରକାର ଆମକୁ ଏଇଟା ଦେଉ । ସେଇଟା କରୁ । ଆମ ଅଞ୍ଚଳକୁ ବୈମାତୃକ ଭାବ ଦେଖା ନଯାଉ ।

ଏ ସବୁ ବ୍ୟତୀତ ଫୋନରୁ ଅନବରତ ଝିଂ-ଝିଂ ଶବ୍ଦ—ହ୍ୟାଲୋ, ହ୍ୟାଲୋ । ଏ ପାଖରୁ ଉତ୍ତର ଦିଅନ୍ତି । ସେହି ଉତ୍ତରରେ ଥାଏ ପ୍ରତିଶ୍ରୁତି, ପ୍ରୀତି ମଧୁର ବଚନ ଆଉ ବିନୟ ସମ୍ଭାଷଣ । ଯାହାକୁ ଯେପରି କହିବା କଥା ସେହିପରି କହି ସେ କ୍ରେଡ଼ଲ ଉପରେ ଫୋନ ଥୁଅନ୍ତି ।

ଏଇ ମନ୍ତ୍ରୀତ୍ୱ ଧନ୍ଦା କମ୍ ଜଞ୍ଜାଳକର ନୁହେଁ । କାମ କର କି ନ କର ସମସ୍ତଙ୍କୁ କଅଁଳ ବଚନ କହି ତୋଷିବାକୁ ହେବ । ମନରେ ଦରଦ ନଥିଲେ ସୁଦ୍ଧା ଆଖିରେ ଲୁହ ଆଣିବାକୁ ହେବ । ସେଥିପାଇଁ ଅଭିନୟ କରିବାକୁ ହେବ । ନିପୁଣ ଅଭିନେତା ହୋଇ ପାରିଲେ ଆସନ୍ତା ନିର୍ବାଚନରେ ଭୋଟ ପାଇବା ପାଇଁ ଆଶା ରଖି ପାରିବ ।

ଦୁଷ୍ମନ୍ତବାବୁ ଭାବୁଥିଲେ—ପ୍ରକୃତରେ ପ୍ରତ୍ୟେକ ରାଜନୈତିକ ନେତା; କିମ୍ବା ମନ୍ତ୍ରୀ ସମସ୍ତେ ଜଣେ କୁଶଳୀ ଅଭିନେତା । ସେମାନଙ୍କର ବାହାର ଯାହା ଭିତର ସେଇୟା ନୁହେଁ । କୁମ୍ଭାରର ଉହା ଭଳି ବାହାରକୁ ଭଲ ଦିଶୁଥିଲେ ମଧ୍ୟ ସେମାନଙ୍କ ଭିତରେ ନିଆଁ ଜଳୁଥାଏ ।

ଠିକ୍ ଯେପରି ସେ ଅନବରତ ଜଳୁଛନ୍ତି ।





ସେ ଜଣେ ବଡ଼ ସାଧକ ଥିଲେ । ତାଙ୍କର ଆଶ୍ରମରେ ଶିଷ୍ୟ ଶିଷ୍ୟାଙ୍କ ଭିତରେ ବାୟୁାଣୀ ନାମରେ ଝିଅଟିଏ ଥିଲି । ତାର ଦୈନନ୍ଦିନ କାର୍ଯ୍ୟ ଥିଲି ଠାକୁରଙ୍କ ପାଇଁ ଫୁଲ ତୋଳିବା ଆଉ ଆଶ୍ରମର ପରିବେଶକୁ ସଫା ସୁତୁରା ରଖିବା । କେତେବେଳେ ତାକୁ ଅଳସରେ ବସିଥିବାର କେହି କେବେ ଦେଖି ନଥିବେ । ସଦାବେଳେ କିଛିନା କିଛି କାମ ସେ କରୁଥିବ । ତାର ସରଳ ବ୍ୟବହାର ପାଇଁ ସମସ୍ତଙ୍କର ତା ପ୍ରତି ଧାରଣା ଥାଏ ସେ ହୁଣ୍ଡୀଟିଏ ।

ସ୍ବାମୀଜୀ ଥରେ ତୀର୍ଥ ପର୍ଯ୍ୟଟନ କରିବାକୁ ବାହାରିଲେ ।

ସେ ଯେତେବେଳେ ତୀର୍ଥ କରିବା ପାଇଁ ଆଶ୍ରମରୁ ବାହାରିଲେ ବାୟୁାଣୀ ଦୁଇଟି ସଜ ତୋଳା ଚମ୍ପାଫୁଲ ହାତରେ ଧରି ଆସି ପହଞ୍ଚି କହିଲି : ବାବା, ଏ ଚମ୍ପାଫୁଲ ଦୁଇଟି ନିଅନ୍ତୁ । ଯେତେବେଳେ ଗଙ୍ଗା ନଦୀରେ ସ୍ନାନ କରିବାକୁ ଯିବେ ସେତେବେଳେ ଏ ଚମ୍ପାଫୁଲ ଦୁଇଟି ଗଙ୍ଗା ମାତାଙ୍କୁ ଦେଇ କହିବେ ଆଶ୍ରମରୁ ତାଙ୍କର ବାୟୁାଣୀ ଝିଅ ପଠାଇଛି । ଯଦି ଗଙ୍ଗାମାତା ହାତ ବଢାଇ ଫୁଲ ଦିଓଟି ନିଅନ୍ତି ତାହାହେଲେ ତାଙ୍କୁ ଦେବେ ନହେଲେ ମୋ ଫୁଲ ଦୁଇଟି ଫେରାଇ ଆଣିବେ ।

ବାଘୁଣୀର ଚପଳତାକୁ ଉପହାସରେ ଉଡ଼ାଇ ଦେଲେ କାଳେ ତା ମନରେ କଷ୍ଟ ହେବ, ଏହା ବିଚାରି କରି ସ୍ୱାମିଜୀ ତାହାଠାରୁ ଫୁଲ ଦୁଇଟି ଗ୍ରହଣ କରି ନିଜ କମଣ୍ଡଳୁ ଭିତରେ ରଖିଦେଲେ ।

ବାଘୁଣୀ ଆଶ୍ରମରେ ରହିଲା ।

ସ୍ୱାମିଜୀ ତୀର୍ଥ ପର୍ଯ୍ୟଟନ କରିବାକୁ ଚାଲିଗଲେ । ଦୀର୍ଘ ଆଠଦିନ ବିଭିନ୍ନ ସ୍ଥାନ ପରିଭ୍ରମଣ ପରେ ସ୍ୱାମିଜୀ ଗଙ୍ଗା କୂଳରେ ତର୍ପଣ କରିବା ପାଇଁ ପହଞ୍ଚିଲେ । ହଠାତ୍ ସେହିଠାରେ ତାଙ୍କର ବାଘୁଣୀ ଝିଅଟି କଥା ମନେ ପଡ଼ିଲା । ସେ କମଣ୍ଡଳୁଟିକୁ ଚାହିଁ ଆଶ୍ଚର୍ଯ୍ୟ ହୋଇ ଉଠିଲେ । ଦେଖିଲେ ଚମ୍ପାଫୁଲ ଦୁଇଟି ପୂର୍ବଭଳି ସତେଜ ଅଛି ।

ଏହାପରେ ସେ ତାଙ୍କର ସ୍ନାନାଦି ନିତ୍ୟକର୍ମ ସାରିବା ପରେ ଗଙ୍ଗା ଦେବୀଙ୍କୁ କହିଲେ ମାଆ ! ତୁମର ବାଘୁଣୀ ଝିଅ ଏହି ଦୁଇଟି ଫୁଲ ମୋ ହାତରେ ତୁମ ପାଇଁ ପଠାଇଛି । ତୁମେ ଯଦି ନିଜେ ଆସି ନେବ ତାହାହେଲେ ତୁମକୁ ଦେବି । ନଚେତ୍ ସେ କହିଛି ତା ଫୁଲ ନେଇ ତାକୁ ଫେରାଇ ଦେବି ।

କିଛି ସମୟ ପରେ ସ୍ୱାମିଜୀଙ୍କୁ ବିସ୍ମିତ କରି ଏକ ଲହରୀ ଆସି ତାଙ୍କ ପାପୁଲିରୁ ଫୁଲ ଦୁଇଟି ନେଇଗଲା । ବାଘୁଣୀ ଭକ୍ତି କଥା ସୁମରି ସେ ହତବାକ୍ ହୋଇ ଉଠିଲେ ।

ଆଶ୍ରମକୁ ଫେରିବା ପରେ ସ୍ୱାମିଜୀ ବାଘୁଣୀ ଆଗରେ ସବୁକଥା ବର୍ଣ୍ଣନା କଲେ । କିପରି ତାର ଏତେ ଆସ୍ଥା ଆସିଲା ସେହିକଥା ପଚାରିଲେ ।

ବାଘୁଣୀ କହିଲା ବାବା, ମୁଁ ଜପ, ତପ, ମନ୍ତ୍ର ଯନ୍ତ୍ର କିଛି ଜାଣେ ନାହିଁ । ଯେଉଁ ମାତା ମୋତେ ଆଦର କରି ଏହି ଆଶ୍ରମରେ ସ୍ଥାନ ଦେଇଥିଲେ ସେ ଯେଉଁଦିନ ଆଶ୍ରମ ଛାଡ଼ି କରି ଗଲେ, ମୋତେ ଏତିକି ଉପଦେଶ ଦେଇଗଲେ ମାଆ, ତୋତେ ଦେବାକୁ ମୋ ପାଖରେ କିଛି ନାହିଁ । କିନ୍ତୁ କହିବା ପାଇଁ ଅନେକ କିଛି ଅଛି ।

ତେବେ ଏତିକି କହିବି, ପରିସ୍ଥିତି ଯାହା ହେଉନା କାହିଁକି ତୁ ସଦାବେଳେ ସତ କହିବୁ । ସେହିଦିନଠାରୁ ଆଜ୍ଞା, ମୁଁ କେବଳ ସତ କହି ଆସିଛି । ମୋର ଆତ୍ମବିଶ୍ୱାସ ଥିଲା, ମୁଁ ଯଦି ସତ କହୁଥିବି ତେବେ ଗଙ୍ଗାମାତା ନିଶ୍ଚୟ ମୋ ଉପହାର ଗ୍ରହଣ କରିବେ । ଯଦି ଗଙ୍ଗାମାତା ଫୁଲ ଦୁଇଟି ଗ୍ରହଣ କରି ନଥାନ୍ତେ, ତେବେ ମୁଁ ବୁଝିଥାନ୍ତି ଯେ, ମୋର ଆଚରଣରେ କେଉଁଠାରେ ନିଶ୍ଚୟ ଭୁଲ ରହି ଯାଇଛି ।

ନିଜକୁ ବଡ଼ ସଙ୍କୁଚିତ ମନେ କରି ସ୍ୱାମିଜୀ କହିଲେ ତୁ ଯାହା ଆଚରଣ କରିପାରିଛୁ ସେତିକି ମୁଁ କରିପାରି ନାହିଁ । ମୁଁ ସମସ୍ତଙ୍କୁ ସତ କହିବାକୁ ଉପଦେଶ ଦେଲାବେଳେ ପରିସ୍ଥିତି ଦୃଷ୍ଟିରେ କେବେ କମିତି ଆଚରଣରେ ଖିଲାପ କରିଛି ଉଦାହରଣ ସ୍ୱରୂପ—ମୋ ଶିଷ୍ୟମାନେ ଯେତେବେଳେ ବିପଦରେ ପଡ଼ି ମୋର ଶରଣାପନ୍ନ ହୁଅନ୍ତି ସେମାନଙ୍କୁ ସାନ୍ତ୍ୱନା ଦେବା ନିମିତ୍ତ ମୁଁ ମିଛ ପ୍ରତିଶ୍ରୁତିମାନ ଦେଇଥାଏ । ସେମାନଙ୍କର ବିପଦରେ ଭଗବାନଙ୍କ ବ୍ୟତୀତ ଆଉ କିଏ ସାହାଯ୍ୟ କରିପାରିବ ମାଆ କହିଲୁ ?

ଏହିପରି କେତେ ଦିନ ବିତିଗଲା । ଆଶ୍ରମରେ ଚ ମନ୍ଦିର ଧର୍ମଶାଳା ପ୍ରଭୃତି ଅନେକ ନିର୍ମାଣ କାର୍ଯ୍ୟ ଲାଗିଥାଏ । ଦିନକରି ସେଠାରେ କାମ କରୁଥିବା ମୂଲିଆମାନଙ୍କର ଆସିବାରେ ବିଳମ୍ବ ହୋଇ ଯାଇଥାଏ । ସ୍ୱାମିଜୀ ପଦଚାରଣା କରୁଥାନ୍ତି । ବାସୁଣୀ ଆଶ୍ରମ ପରିବେଶ ସଫା କରିବାରେ ଲାଗିଥାଏ ।

ଏହି ସମୟରେ ମୂଲିଆମାନେ କାମରେ ଆସି ଯୋଗଦେବା ନିମିତ୍ତ ପହଞ୍ଚିଲେ । ସେମାନଙ୍କୁ ଦେଖି ସ୍ୱାମିଜୀ କହିଲେ, ବେଳ ଆସି ପହରରେ ହେଲାଣି, ତୁମେମାନେ ଏତେବେଳକୁ ଆସି କ'ଣ ଦିନ ଯାକର ମଜୁରି ନେବ ?

ଏତିକି ଶୁଣି ବାସୁଣୀ ମୁହଁ ଫେରାଇ ସ୍ୱାମିଜୀଙ୍କୁ କହିଲା ଆଜ୍ଞା, ବର୍ତ୍ତମାନ ଆପଣ ମିଛ କହିଲେ । ବର୍ତ୍ତମାନ କ'ଣ ପହରରେ

ସମୟ ହେଲାଣି ? ହେଇ, ହେଇ, ଘଣ୍ଟାଏ କି ଦୁଇ ଘଣ୍ଟା ବିଳମ୍ବ ହୋଇଥିବ ।

ସ୍ୱାମିଜୀ ଆଶ୍ଚର୍ଯ୍ୟ ହୋଇ କହିଲେ ବାମ୍ଭଣୀ ତୁ ଏତିକ ମିଛ ସୁଦ୍ଧା କହୁ ନାହୁଁ ?

ବାମ୍ଭଣୀ କହିଲା ସତ୍ୟ କହିବାକୁ ଅଭ୍ୟାସ କଲେ ମିଛ ଆପେ ଆପେ ଗୁଲିଯିବ ।

ଏହି ଗପଟି ସିନେ ମାଆ ଠାରୁ ଭରତ ଶୁଣିଥିଲା ।

ଅତି ପିଲାବେଳେ ଭରତ ମାଆର ତାକୁ ଏକମାତ୍ର ଉପଦେଶ ଥିଲା ତୁ ସତ କହିବାକୁ ଡରିବୁ ନାହିଁ । ସତ୍ୟ ଠାରୁ ବଡ଼ କିଛି ନାହିଁ । ସତ୍ୟ ହିଁ ଭଗବାନ ।

ମାଆ କହିଥିଲେ ବହୁ ପୁଣ୍ୟ ଫଳ ବଳରେ ପ୍ରାଣୀ ମନୁଷ୍ୟ ଜନ୍ମ ନିଏ, ଆଉ ସେହି ମଣିଷ ଭିତରେ ଭେଦଭାବ ସୃଷ୍ଟି କରିଥିଲେ ସେମାନଙ୍କ ଭିତରେ ଥିବା କପଟିଆ ମିଛୁଆ ମଣିଷମାନେ । ସ୍ରେଷ୍ଠ ବଡ଼ ଭେଦଭାବ ଉଠାଇ, ଆମ ହାଡି, ପାଣ, ଡମଙ୍କୁ ଯିଏ ଗୋଟିଏ ହରିଜନ ଜାତିର ପରିଣତ କଲେ ସେ ହେଉଛନ୍ତି ମହାତ୍ମା ଗାନ୍ଧୀ । ଏହି ସ୍ୱାଧୀନ ଭାରତର ପିତା ସେ ଥିଲେ । ସତ୍ୟକୁ ସେ ଭଲ ପାଉଥିଲେ । ଏହି ସତ୍ୟକୁ ସମ୍ବଳ କରି ସେ ପରାକ୍ରମଶାଳୀ ଇଂରେଜ ଜାତିକୁ ଏ ଦେଶରୁ ଘଉଡ଼ାଇ ଦେଇଥିଲେ । ସତ୍ୟର ଏକନିଷ୍ଠ ଭକ୍ତ ଅଯୋଧ୍ୟାର ରାଜା ରାମଚନ୍ଦ୍ର ଆମ ଭିତରେ ପୂଜା ପାଉଛନ୍ତି । ସତ୍ୟକୁ ରକ୍ଷା କରିବାକୁ ଯାଇ କର୍ଣ୍ଣ ଦାନୀ ପଣିଆ ନେଲେ ।

ସତ୍ୟ ଅପ୍ରିୟ ହେଲେ ବି ତାହାକୁ ପ୍ରକାଶ କରିବାକୁ କୁଣ୍ଠାବୋଧ କରିବୁ ନାହିଁ ।

ଆଇନ କଲେଜର ଶେଷ ବର୍ଷର ଛାତ୍ର ଭରତ ନାଏକ ସେଦିନ ତାର ମାଆ କଥା ଭାବୁଥିଲା । ବେଳେ ବେଳେ ମାଆ ତାର ବେଶୀ ମନେ ପଡ଼େ । ମାଆ କଥା ଭାବିଲାବେଳେ ତା ଆଖିରେ ଲୁହ ଦେଖାଦିଏ । ତାର ଜନ୍ମ ପରେ ପରେ ମାଆ କେତେ କଷ୍ଟ ସହିଛି ତାକୁ ମଣିଷ କରିବା ପାଇଁ, ସବୁ କଥା ସେ ଜାଣିଛି । ବାପା

ତାର ମାଆକୁ ଛାଡ଼ି କୁଆଡ଼େ ଚାଲିଗଲା ଯେ ଆଉ ଫେରିଲା ନାହିଁ । ମାଆ ଶିକ୍ଷା ପାଇ ଚାକିରୀ କରି ନଥିଲେ ସେ କ'ଣ ମଣିଷ ହୋଇ ପାରିଥାନ୍ତା ? ହେତୁ ପାଇଲା ଦିନରୁ ଦେଖି ଆସିଛି ମାଆ ତାର ଗଙ୍ଗା ଜଳ ଠାରୁ ପବିତ୍ର । ସବୁ ଦୁଃଖ ଅନୁଶୋଚନାକୁ ବୁକୁତଳେ ଚାପିଧରି ସେ କେବଳ ଏତିକି ଉପଦେଶ ଦେଇଛନ୍ତି ଭରତରେ ! ଆମର ଧନ ବଳ ନାହିଁ; ଆଭିଜାତ୍ୟର ବଳ ନାହିଁ କିମ୍ବା ଜନ ବଳ ନାହିଁ, ଅଛି ମନବଳ । ସେହି ମନବଳ ଦୃଢ଼ ହୁଏ ମଣିଷ ଯଦି ଚରିତ୍ରବାନ ହୁଏ । ଚରିତ୍ରବାନ ଲୋକର ମଣିଷ ପଣିଆଁ ଥାଏ । ଯାହାର ମଣିଷ ପଣିଆଁ ନଥାଏ ସେ ଆକାର ପ୍ରକାରରେ ସିନା ମଣିଷ ହୋଇ ଜନ୍ମ ହୋଇଥାଏ କିନ୍ତୁ ପ୍ରକୃତରେ ମଣିଷ କହିଲେ ଯାହା ବୁଝା-ଯିବା କଥା ତାହା ସେ ନୁହେଁ ।

ମାଆ କହନ୍ତି ଟଙ୍କା ଅର୍ଜନ କରି ମୋତେ ପୋଷିବାକୁ ମୁଁ ତୋତେ ପାଠ ପଢ଼ାଉ ନାହିଁ । ସେହିଭଳି କାମନା ମୋର ଥିଲେ ମାଟ୍ରିକ୍ ପାଶ୍ ପରେ ତ ଆମ ହରିଜନମାନଙ୍କ ପାଇଁ କେତେ ଧନ୍ଦା ଥିଲା । ସେଥିରେ ତ ଅକ୍ଳେଶରେ ତୁ ଭର୍ତ୍ତି ହୋଇ ପାରିଥାନ୍ତୁ । ମୁଁ ଜାଣେ ଯେଉଁମାନେ ବ୍ୟଗ୍ର ସେମାନେ ପାଗଳ । ଧୀର ପାଣି ପଥ ପଥର କାଟେ । ତୋ ବ୍ୟତୀତ ଦୁନିଆଁରେ ମୋର କିଏ ଅଛି ? ତୁ ଭଲ ପାଠ ପଢ଼ିଲେ ମୁଁ ତୋତେ ପଢ଼ାଇବାକୁ ପ୍ରସ୍ତୁତ ଅଛି । ପାଠ ମଣିଷକୁ ଆଲୋକ ଦିଏ । ତାର ଚିନ୍ତା ଧାରାକୁ ଉନ୍ନତ କରେ ।

ମାଆ ପୁଣି କହନ୍ତି : ବଡ଼ ହେବାକୁ ହେଲେ ମଣିଷକୁ ଅନେକ କଷ୍ଟ ସହିବାକୁ ପଡ଼େ । ସେଥିପାଇଁ ଯେଉଁମାନେ ପୁରୁଷରୁ ମହାପୁରୁଷ ହୋଇଛନ୍ତି ସେହିମାନେ ଜୀବନରେ ବହୁ ଦୁଃଖ କଷ୍ଟ ସହିଛନ୍ତି । ଦୁଃଖ ଭିତରେ ସେମାନେ ସଂଗ୍ରାମ କରିଛନ୍ତି ବୋଲି ସମାଜର ହିତ କାମନା କରିଛନ୍ତି । ତୋତେ ଏତିକି ବୁଝାଇ ଦେଲେ, ଯଥେଷ୍ଟ ହେବ । ପଇଡ଼ କେତେ ଉଚ୍ଚରେ ନଥାଏ ? ଯାବତୀୟ ଖରା, ବର୍ଷା, କାକର ସହେ । କିନ୍ତୁ ରୋଗ ବଇରାଗ ହେଲେ ପଇଡ଼ ପାଣି ଔଷଧ ପରି କାମ କରେ ।

ଆଉ ପାଣି ସିଙ୍ଗଡ଼ା, ଅନବରତ ପାଣିରେ ଭାସୁଥାଏ । ତୋଳିବାକୁ କଷ୍ଟ କରିବାକୁ ପଡ଼େ ନାହିଁ । ହାତ ବଢ଼ାଇଲେ ଯାହାକୁ ଯେତେ । କିନ୍ତୁ ସେଗୁଡ଼ାକ ଦେହକୁ ଅହିତ । କ୍ଷତିକାରକ । ବଡ଼ ହେବାକୁ ହେଲେ କଷ୍ଟ ସହିବାକୁ ହୁଏ । ମହାତ୍ମା ଗାନ୍ଧିଜୀଙ୍କର ଜୀବନୀ ପଢ଼ିବୁ । ପଢିଲେ ଜାଣିପାରିବୁ କେତେ କଷ୍ଟ, ଦୁଃଖ, ଯାତନା ସେ ସହିଛନ୍ତି । ଉପାସରେ ଛଟପଟ ହେବା ଲୋକ କେବଳ ଭୋକର ଦାଉ କ'ଣ ଜାଣିପାରେ । ସେଥିପାଇଁ ଭିକାରି ଆଉ ଗୋଟିଏ ଭିକାରିକୁ ଦରକାର ପଡ଼ିଲେ ନିଜ ଭିକ୍ଷାନ୍ନରୁ କିଛି ହାତ ଟେକି ଦେଇଥାଏ ।

ଭରତ ଭାବୁଥିଲା ମାଆ ଯଦି ତାର ପାଠ ପଢ଼ି ନ ଥାନ୍ତା ତେବେ ତାର ଅବସ୍ଥା ଆଜି କ'ଣ ନହୋଇ ଥାନ୍ତା ? ସେ ମଧ୍ୟ ସାଉକାର ଘରେ ହଳିଆ କାମ କରୁଥାନ୍ତା । ମଦ କି ଗଞ୍ଜାଇ ଖାଇ ଚାଲୁଥାନ୍ତା । ତାଙ୍କର ଗାଆଁରେ ଯେଉଁମାନେ ଆଜି ଅଜ୍ଞାନ ଅନ୍ଧକାରରେ ସଢୁଛନ୍ତି ସେମାନଙ୍କୁ ମଣିଷ କରିବ କିଏ ? ସେମାନଙ୍କର ଦୁଃଖ ହରଣ କରିବ କିଏ ? ଆଜିକାଲିକାର ନେତାଏ ? ସେମାନେ କ'ଣ ଦୁଃଖୀ ? ଭୋକର ଦାଉ ସେମାନେ କ'ଣ ବୁଝିଛନ୍ତି ? ରାଜନୀତି ଯୁଦ୍ଧରେ ଜିତିବା ପାଇଁ ଅଗଷ୍ଟ ପନ୍ଦର କିମ୍ବା ଗାନ୍ଧି ଜୟନ୍ତୀ ଦିନ ସେମାନେ ବସ୍ତି ସଫେଇ କରିବାକୁ ହରିଜନ ବସ୍ତିମାନଙ୍କୁ ଆସିଥାନ୍ତି । ତାହାପରେ ସେମାନେ କ'ଣ ହରିଜନ, ଆଦିବାସୀଙ୍କ କଥା କେବେ ମନରେ ଚିନ୍ତା କରନ୍ତି ?

ମାଆ ଯାହା କହିଥିଲା ସତ, ଯେଉଁମାନେ ଭୁବନେଶ୍ୱର ରାଜଧାନୀରେ ଅଛନ୍ତି, କଳ ମୋଡ଼ିଦେଲେ ପାଣି ଯେଉଁମାନଙ୍କର ରବର ନଳ ସାହାଯ୍ୟରେ ବଗିଚାରେ ଲହଡ଼ୀ ଭାଙ୍ଗୁଛି ସେମାନେ କାହିଁ ବୁଝି ପାରିବେ ଖରାଦିନରେ ପିଇବା ପାଣି ଢୋପାକ ପାଇଁ କିପରି ଆଦିବାସୀ ଯୁବତୀକୁ ମାଇଲ ମାଇଲ ବାଟ ଯିବାକୁ ହୁଏ ।

ସେ ଆଜକୁ ଅନେକ ଦିନ ତଳର କଥା : ଆଈବୁଢ଼ୀ ଆଖି ବୁଜିବା ପୂର୍ବରୁ ତାହାକୁ ଥରେ ଜନମ ଭୂଇଁ ବୁଲାଇ ନେଇଥିଲା । ସେତେବେଳେ ସେହି ହରିଜନ ବସ୍ତିରେ ସେ ଦେଖିବାକୁ ପାଇଥିଲା ସେମାନଙ୍କର ହୀନ-ଅବସ୍ଥା । ନୁଆଁଣିଆ ଘର । କାହାରି ଘର ଚାଳ ଉପରେ ନଡ଼ା କୁଟା

ନାହିଁ । ଘରପାଖରେ ଅଳିଆଗଦା, ନାଗଅଇର ବଣ । କାଳିଆ, ଅସନା କୋଡରା ପିଲା ଧାଣ୍ଡରେ ଲଙ୍ଗଳା ହୋଇ ଖେଳୁଥାନ୍ତି । ବାଟି ଖେଳରେ ତାହାଠାରୁ ବଡ଼ ପିଲାଏ ମସ୍‌ଗୁଲ୍ । ବଡ଼ ବଡ଼ ବୁଢ଼ାଏ ଖୁଁ, ଖୁଁ କାଶୁଥାନ୍ତି । ପାଟିରେ ପିକା କମ୍ପା ଝଡ଼ । ମାଟି ଗୋବର ଲିପା ପିଣ୍ଡା ତଳକୁ ଲେଣ୍ଡା ଲେଣ୍ଡା ଗୁଳ ଭଳି ଖଙ୍କାର । ଭଣ ଭଣ ଗନ୍ଧ । ଗଣଗଣିଆ ମାଛି ଚକ୍‌କର କାଟି ଉଡ଼ୁଥାନ୍ତି । ଅଧିକାଂଶଙ୍କର ବଖରାଟିଏ ଘର । ସେହି ବଖରାକର ଗୋଟିଏ କଣରେ ଛେଳି, ଛେଳି ଛୁଆ । ଫାଳକରେ କୁକୁଡ଼ା ଘଡ଼ି । ଫାଳକରେ ରୋଷେଇ ଆଉ ସେହିମାନଙ୍କ ସଙ୍ଗରେ ତାଙ୍କ ଗାଆଁର ଲୋକମାନେ ଧନପାକର ଦାଢ଼ି ଭଙ୍ଗା ଖାଟେଣୀ ପରେ ଆସି କୁକୁରଚେଙ୍କ ମାରି ପଡ଼ିଯାଆନ୍ତି । ଓଡ଼ଣ ସରସର ଝଛଣା ପୁଇଁଆ ମୂତଗନ୍ଧ । ସେଥିପାଇଁ ବ ଖାତର ନ ଥାଏ । ଶେଯରେ ପଡ଼ିଗଲା ପରେ ନାକ ସବୁ ସେମାନଙ୍କର ଜୋରରେ ଘୁଡ଼ୁଡ଼ି ମାରନ୍ତି ।

ଆଇ କହୁଥିଲା ସୂରଯ ଉଇଁବା ମାତ୍ରେ ସମସ୍ତେ ଖିଦ୍‌ଖାଦ ଉଠି ପଡ଼ନ୍ତି । ଦାନ୍ତକାଠି, ଗୁଡ଼ାଖୁ ନେଇ ଦାନ୍ତ ଘଷିସାରି ନାଲି ଗୃହାରୁ ବେଲାଏ ପିଇ କାମକୁ ବାହାରି ପଡ଼ନ୍ତି । ପେଟକୁ ଓଳିଏ ଖାଆନ୍ତି । ପାଣ୍ଠହାତିଆ କରିଆ ଦୁଇ ଖଣ୍ଡ ସେମାନଙ୍କର ଲଜ୍ୟା ଢାଙ୍କିବା ପାଇଁ ଭୂଷଣ ।

ସେହି ଗାଆଁରେ ସେ ବଢ଼ିଥାନ୍ତା ।

ତା' ମାଆକୁ ଏ ନର୍କକୁଣ୍ଡରୁ ଉଦ୍ଧାର କଲେ ଯେଉଁ ଲୋଚନ ମାଷ୍ଟ୍ରେ ସେ'ତ ମଣିଷ ନୁହନ୍ତି, ଦେବତା ଯଦ ସମସ୍ତେ ବିଚାର ନ କରିବେ ତେବେ ଜଣେ ଲୋଚନମାଷ୍ଟ୍ରେ କ'ଣ ଦେଶକୁ ଉଦ୍ଧାର କରି ପାରିବେ ? ଜଣେ ଗାନ୍ଧୀ ବୁଢ଼ା ଯେଉଁ ଗାଆଁର ଉନ୍ନତି କଥା ଚିନ୍ତା କଲା ତାହା ପରେ ପରେ ଯେତେ ବ୍ୟକ୍ତି ଦେଶ ସେବା ପାଇଁ ବାହାରିଲେ ସେମାନେ ସେହି ବାଣୀକୁ ଏକ ସ୍ଲୋଗାନରେ ପରିଣତ କରି ଦେଲେ । ଫଳରେ ସ୍ୱପ୍ନ ତାଙ୍କର ସ୍ୱପ୍ନରେ ହିଁ ରହିଗଲା । ସତ ହୋଇ ପାରିଲା ନାହିଁ ।

ସେମାନଙ୍କ କଥା ବିଚାର କରିବ କିଏ ?

ସେମାନଙ୍କୁ ମଣିଷ କରିବ କିଏ ?

ଭରତ ମନ ଭିତରୁ ଯେପରି କିଏ କହି ଉଠିଲା ନିଜେ ନ ମଲେ କେହି ସ୍ୱର୍ଗ ଦେଖନ୍ତି ନାହିଁ । ତେଣୁ ତୋ ଭାଇମାନଙ୍କର ଉନ୍ନତି କରିବାକୁ ହେଲେ ତୋତେ ଗାଆଁକୁ ହିଁ ଫେରିଯିବାକୁ ହେବ ।

ଫେରିପାରିବୁ ସେହି ଗାଆଁକୁ ?

ସେହି ଅଳିଆ, ଅସ୍‌କରା, ଅରମା ପରିବେଶ ଭିତରେ ରହି ପାରିବୁ ?

ପାରିବୁ ସଂଗ୍ରାମ କରି ଦାରିଦ୍ର୍ୟ ବିରୁଦ୍ଧରେ ?

ଭରତ ଗୁହିଁଲା ଆଗକୁ ଆଉ ପଛକୁ । ଅତୀତ ଉପହାସ କରୁଛି ଆଉ ଭବିଷ୍ୟତର ଅନ୍ଧକାର ଭିତରେ ଦିସ ଅଣ୍ଡାଳି ହେଉଛି! ବାଟ ପାଉନାହିଁ ।

ଭରତ ମନ ପୁଣି ତାକୁ ଉପହାସ କରି କହି ଉଠୁଛି···ମାଆ ଯଦି ତୋତେ କୋଳରେ ଜାକି ପଳାଇ ଯାଇ ନଥାନ୍ତା, ତୁ ମଧ୍ୟ ଏହିଠାରେ ଏଇମିତି ପଡ଼ି ରହିଥାନ୍ତୁ । ଜନ୍ମର କେତେଟା ବର୍ଷ ପରେ ସରକାରୀ ଘରେ ରହିଲୁ । ହରିଜନ ବୋଲି ସରକାରୀ ଅନୁଗ୍ରହ ପାଇଲୁ । ରହିବା, ଖାଇବା, ପିଇବା, ମାଗଣା । ପାଠ ପଢ଼ିବାକୁ ଦରମା ଦେବାକୁ ପଡ଼ିଲା ନାହିଁ । ନଚେତ୍ ତୁ କେଉଁଠାରେ ଆଉ ଓକିଲାତି ପାଠ କେଉଁଠି ? କାଲି ସକାଳୁ ମାଆର ଭୁକେଶୀ ଖଣ୍ଡିକ ଗଲା ପରେ ମୁଣ୍ଡ ଗୁଞ୍ଜିବାକୁ କୁଡ଼ିଆ ଖଣ୍ଡିଏ ଅଛି କି ? ଦେଶସେବା ସେହିମାନଙ୍କୁ ପୋଷାଏ ଯାହା ପଛରେ ପ୍ରଚୁର ଟଙ୍କା ରହିଥାଏ । ଯାହାର ଖାଇବାକୁ, ରହିବାକୁ ଚିନ୍ତା ନ ଥାଏ । ଗାଆଁବାସୀଙ୍କ କଥା ଭାବୁଛୁ ? ସେମାନେ କିଏ ସେ ତୋର ? କି ସମ୍ପର୍କ ତୋହର ସେମାନଙ୍କ ସହିତ ? ନିଜ କଥା ନିଜେ ବୁଝ । ଭଲ ଚାକିରୀ ଖଣ୍ଡିଏ ସଂରକ୍ଷିତ କୋଟାରୁ ପାଇ ମଜଜରେ ସହରରେ ରହ । ବାହାସାହା ହୋଇ ପିଲାପିଲିଙ୍କୁ ମଣିଷ କର । ମାଆ ବୁଢ଼ୀ ଏତେ କଷ୍ଟ ସହିଲା । ତାହା କଥା

ଟିକିଏ ମନକୁ ଆଣ୍ । କହେ ଛୁଞ୍ଚରେ ଦାଆ ହୁଏ ନାହିଁ । ସମସ୍ତେ ମହାତ୍ମା ଗାନ୍ଧୀ, ଉତ୍କଳମଣି ଗୋପବନ୍ଧୁ କିମ୍ବା ଆଚାର୍ଯ୍ୟ ହରିହର ହୋଇ ପାରିବେ ନାହିଁ, ତୁ ଯାହା ଭାବୁଛୁ ସେଇଟା ହେଉଛି ତୋର ବୟସର ଦୋଷ । ଏହି ବୟସରେ ପାଦ ଦେଲେ ସବୁ ଯୁବକ ଏଇମିତି ବିପ୍ଳବର ସ୍ୱପ୍ନ ଦେଖନ୍ତି । କିନ୍ତୁ ଯେଉଁକ୍ଷଣି କଲେଜ ହତା ଛାଡ଼ନ୍ତି, ସେହିକ୍ଷଣି ଏମ୍ପ୍ଲଏମେଣ୍ଟ ଏକ୍ସଚେଞ୍ଜ ଅଫିସ ଦୁଆରେ କ୍ୟୁରେ ଠିଆ ହୁଅନ୍ତି, ଖବର କାଗଜ କିଣନ୍ତି ଆଉ ବେଶୀ ପଢ଼ନ୍ତି ଓ୍ୱାଣ୍ଟେଡ଼୍ କଲମଟା ।

ଭରତ ଚିନ୍ତା କଲା ହରିଜନ ଭାବରେ ସରକାରୀ ପ୍ରଦତ୍ତ ଅନୁଦାନ ନପାଇଥିଲେ ମଧ୍ୟ ସେ ପଢ଼ିପାରି ଥାନ୍ତା । ତାହାର ତ ବୁଦ୍ଧି କମ୍ ନଥିଲା ? ପରିଶ୍ରମ କରି ପାଠ ପଢ଼ି ଏବେ ସୁଦ୍ଧା ସେ ପ୍ରତ୍ୟେକ ଥର ଫାଷ୍ଟ ହୋଇ ଆସିପାରୁଛି । ଗ୍ରାଜୁଏସନରେ ଅନର୍ସ ଡିଷ୍ଟିଂସନ ସବୁ ସେ ରଖି ପାରିଛି । ତେଣୁ ସେ ଯେଉଁ ବୃତ୍ତି ପାଉଛି ତାହା ଯେକୌଣସି ସବର୍ଣ୍ଣ ଛାତ୍ରର ମଧ୍ୟ ପ୍ରାପ୍ୟ । ତେଣୁ ବିଚାର କଲେ ସରକାରୀ ପ୍ରଦତ୍ତ ଅନୁଗ୍ରହକୁ ସେ ତ ଆଦୌ ଗ୍ରହଣ କରିନାହିଁ ।

ଚାକିରୀ କଲେ ସେ ନିଜର ଏବଂ ନିଜ ପରିବାରର ଉନ୍ନତି କରି ପାରିବ ଏହା ନିଶ୍ଚିତ ସତ୍ୟ କଥା । କିନ୍ତୁ ତାହାର ଜାତି ଭାଇ ଯେଉଁମାନେ ଏବେ ସୁଦ୍ଧା ଅବହେଳିତ ହୋଇ ଅଛନ୍ତି ସେମାନେ ସେହିଭଳି ନିର୍ଦ୍ଧମାରେ ପଡ଼ି ସଡୁଥିବେ । ସମାଜର ଏହି ନିମ୍ନ ସ୍ତରର ଜୀବଗୁଡ଼ାକଙ୍କର ଉନ୍ନତି କରିବାକୁ ହେଲେ ତାକୁ ସରକାରୀ ଚାକିରୀର ମୋହ ଛାଡ଼ିବାକୁ ପଡ଼ିବ । ସେ ସ୍ୱାଧୀନ ହେବ । ସେ ମୁକ୍ତ ହେବ । ଠିକ୍ ଯେପରି ଗୋପବନ୍ଧୁ ସରକାରୀ ଚାକିରୀର ମୋହ ଛାଡ଼ିଦେଇ ଦୀନବନ୍ଧୁ ହେଲେ ।

ଭରତକୁ କିଏ ଯେପରି ମନେ ପକାଇ କହି ଉଠିଲା : ଆଖି ଆଗରେ ତୋହର ଥୁଆ ହୋଇଛି ଭାରତ ସଂବିଧାନର ନିୟମାବଳୀ ।

ଏହି ସଂବିଧାନକୁ ଯିଏ ତିଆରି କରିଥିଲେ ସେ ଜାତିରେ ଥିଲେ ହରିଜନ । ଛୋଟିଆ ଗୋଷ୍ଠୀର ପ୍ରତିନିଧି । ନାମ ତାଙ୍କର ଡକ୍ଟର ଆମ୍ବେଦକର । ସେ ବଡ଼ ହୋଇ ପାଠ ପଢ଼ି ନ ଥିଲେ ବାଜା ବଜାଇ ଥାନ୍ତେ ! ଗୋରୁ ଦେହରୁ ଚମଡ଼ା ଛାଲି ଥାନ୍ତେ । କିନ୍ତୁ ସ୍ୱାଧୀନ ଭାରତ ପାଇଁ ସଂବିଧାନ ସେ ତିଆରି କରିଦେଇ ଗଲେ । ତୁ କ'ଣ ସେହି ସଂବିଧାନର ସଫଳ ରୂପାୟନ ପାଇଁ ସଂଗ୍ରାମ କରି ପାରିବୁ ନାହିଁ ?

ସେ ଜଣେ ଆଇନ ବ୍ୟବସାୟୀ ଥିଲେ । ତୁ ଯଦି ଆଇନକୁ ନିଜର ବୃତ୍ତି ରୂପେ ଗ୍ରହଣ କରି ପାରିବୁ ତେବେ ତୋର ପେଟ କେବେ ଅପୋଷା ରହିଯିବ ନାହିଁ । ଆଇନ ବ୍ୟବସାୟ ହେଉଛି ବୁଦ୍ଧିର ଖେଳ । ସତ୍ୟର ପ୍ରତିଷ୍ଠା କେବଳ ଆଇନ ଦ୍ୱାରା ସମ୍ଭବ । ସେଥିପାଇଁ ମଧୁବାବୁ ଓକିଲ ହୋଇ ବାରିଷ୍ଟର ବୋଲି ଖ୍ୟାତ ହୋଇଥିଲେ ।

ଚାକିରି କଲେ ପେଟ ପୋଷିହେବ କିନ୍ତୁ ନିର୍ଭୀକତା ରହିବ ନାହିଁ । ଯିଏ ନିଜର ଚିନ୍ତାଧାରାକୁ ସ୍ୱାଧୀନ ଭାବରେ ପ୍ରକାଶ କରିପାରେ ନାହିଁ ସେ ମଣିଷ ହୋଇପାରେ କିନ୍ତୁ ମଣିଷପଣିଆଁ ତାହାଠାରେ ଆଦୌ ନଥାଏ ।

ସତ୍ୟ ସବୁବେଳେ ଅପ୍ରିୟ । ସତ୍ୟ କହୁଥିବା ବ୍ୟକ୍ତି ସ୍ୱାଧୀନ ହେବାକୁ ବାଧ୍ୟ ।

ଭରତ ସେହିଦିନ ନିଷ୍ପତ୍ତି କଲା ଏହି ବର୍ଷ ପରୀକ୍ଷା ଦେଇ ସାରି ସେ ନିଶ୍ଚୟ କଳାକୋର୍ଟ ପିନ୍ଧି କଚେରୀକୁ ଯିବ । ଓକିଲାତି କରିବ ।





ଏ ଯୁଗଟା ହେଉଛି ବିଜ୍ଞାପନର ଯୁଗ । ନିଜ ଢୋଲ ନିଜେ ପିଟିବ । ନଚେତ୍ ଅନ୍ୟକୁ ଭଡ଼ା ଲଗାଇ ପିଟାଇବ । ଏ ସବୁ ଯିଏ କରି ନପାରେ ସେ ଚଳନ୍ତି ଯୁଗ ପାଇଁ ନିହାତି ଅପଦାର୍ଥ ।

ଦୁଷ୍ମନ୍ତବାବୁ ଭଲ କରି ଏହି କଥା ଜାଣିଥିଲେ । ଆତ୍ମ-ପ୍ରଚୃର ଏବଂ ଶତ୍ରୁମାନଙ୍କର ବିରୁଦ୍ଧ ମନ୍ତବ୍ୟର ପ୍ରତ୍ୟୁତ୍ତର ପାଇଁ ମନ୍ତ୍ରୀ ହେବା ପରେ ନିଜର ଖବର କାଗଜ ଖଣ୍ଡିଏ ଥିବା ଦରକାର । ସେ ଖଣ୍ଡିକ ପ୍ରକାଶ କରି ପାରିଲେ କିମ୍ବା କରାଇ ପାରିଲେ ଆଉ ତେଣିକି ତୁମର ଦୁଃଖ ନାହିଁ । ତୁମର ପାରିଲା ପଣିଆର ପ୍ରଶଂସା ତେଣିକି ଲୋକମାନଙ୍କ ପାଖରେ ସହଜରେ ଯାଇ ପହଞ୍ଚି ପାରିବ ।

ପୂର୍ବେ ରଜା ରାଜୁଡ଼ାଙ୍କ ସମୟରେ ଭାଟମାନେ ସେମାନଙ୍କର ସ୍ତୁତିଗାନ କରିବାକୁ ଥିଲେ । ଆଜିକାଲି ଖୋସାମତ କରିବା ପାଇଁ ସାଂସ୍କୃତିକ ଠିକାଦାରମାନଙ୍କର ଅଭାବ ନାହିଁ । ସେମାନେ ଜଣେ ହେଉଛନ୍ତି ଗୋଟିଏ ଗୋଟିଏ ଅନୁଷ୍ଠାନ । ଏଇମାନଙ୍କୁ ଠିକା ଦେଇ ଦେଲେ ସେମାନେ ସବୁ ଯୋଗାଡ଼ କରିଦେବେ । ଅନୁଷ୍ଠାନ ନାମ

ଦେଇ, ନିମନ୍ତ୍ରଣ ପତ୍ର ଛାପିବା, ବାଣ୍ଟିବା, ଶ୍ରୋତା ଯୋଗାଡ଼ କରିବା, ଫୁଲ ମାଳ, ସଭାପତି, ଉଦ୍‌ଘାଟକ, ବକ୍ତା, ମାନପତ୍ର ଆଉ ଉପାଧି ଦେବା ପର୍ଯ୍ୟନ୍ତ ସବୁ କାର୍ଯ୍ୟ ବୁଲାଇ ନେବେ । ସେମାନଙ୍କୁ ଧରି ପାରିଲେ ସେମାନେ ପ୍ରତିଭା ପୂଜା ନାମରେ ଭୁମର ଫଟୋ ସହ ସମ୍ବାଦ; ଦୈନିକ ଖବର କାଗଜ ମାନଙ୍କରେ ବଡ଼ ବଡ଼ ଅକ୍ଷରରେ ଛାପି ଦେବେ ।

ଦୁଷ୍ମନ୍ତବାବୁ ଯେଉଁ ସମ୍ବାଦପତ୍ରଟିର ପୃଷ୍ଠପୋଷକ ହୋଇ ପ୍ରକାଶ କରାଇଲେ ତାହାର ନାମ ରଖିଲେ ଜନମତ । ସେହି ଜନମତରେ ସେ କେବଳ ନିଜ ମତ ଛପାଇଲେ । ମନ୍ତ୍ରୀ ହେବା ପରେ ସାଙ୍କୁଙ୍କ ଠିକାଦାରମାନେ ଆପେ ଆପେ ଜୁଟି ଯାଆନ୍ତି । ଡେଣିକି ପୁସ୍ତକ ଉଦ୍‌ଘାଟନ ଠାରୁ ଭଜନ ସମାରୋହ ପର୍ଯ୍ୟନ୍ତ ପ୍ରତ୍ୟେକ ସଭାରେ ଦୁଷ୍ମନ୍ତବାବୁ ସଭାପତି, ଉଦ୍‌ଘାଟକ ଏବଂ ମୁଖ୍ୟ ଅତିଥି ଭାବରେ ଯୋଗଦେବା ଆରମ୍ଭ ହୋଇଗଲା । ଦିନ କେତୋଟା ପରେ ଦେଖାଗଲା ଦୁଷ୍ମନ୍ତ ବାବୁ ଏକାଧାରରେ ପ୍ରବୀଣ ରାଜନୀତିଜ୍ଞ, ସାହିତ୍ୟିକ, କବି ଏବଂ ଧର୍ମପ୍ରାଣ ବ୍ୟକ୍ତି ହୋଇଗଲେ ।

ରାଜନୀତି କ୍ଷେତ୍ରରେ ଏହି ଯେଉଁ ଆତ୍ମପ୍ରଚାରର ଅପଚେଷ୍ଟା ଚାଲିଲା, ସେଥିରେ ସମ୍ବାଦପତ୍ର ପ୍ରକାଶନର ଅସଲ ଉଦ୍ଦେଶ୍ୟ ସାଧିତ ହୋଇ ପାରିଲା ନାହିଁ । ସାମ୍ବାଦିକତା କ୍ଷେତ୍ରରେ କାମଳ ରୋଗ ଦେଖାଦେଲା ।

ପଶୁ ଓ ମଣିଷ ଦୁହେଁ ଦୁଇଟି ପ୍ରାଣୀ । କିନ୍ତୁ ଦୁହେଁ ଦୁହିଁଙ୍କ ଠାରୁ ଭିନ୍ନ । ପଶୁ ଭୋକିଲା ଥିଲା ପରେ ଗଣ୍ଡିଏ ଖାଇ ନିଶ୍ଚିନ୍ତରେ ଘୁମାଇଁ ପଡ଼େ । କିନ୍ତୁ ମଣିଷ ଭୋକିଲା ଥିବାବେଳେ ଚିନ୍ତା କରେ ଏବଂ ଖାଇବା ପରେ ମଧ୍ୟ ବଞ୍ଚିବାପାଇଁ ସଂଗ୍ରାମ କରେ । ପେଟ ପୂରିଲା ପରେ ସେ ବୌଦ୍ଧିକ ଚିନ୍ତା କରେ ।

ଶାସନ ଗାଦିରେ ଯିଏ ବସେ ସେ କହେ ମୁଁ ହେଉଛି ସର୍ବମୟ କର୍ତ୍ତା, ଅର୍ଥାତ୍ ମୁଁ ହେଉଛି ଜ୍ଞାନରେ, ପାଣ୍ଡିତ୍ୟରେ, ରାଜନୀତିରେ, ଭବିଷ୍ୟଦ୍ରଷ୍ଟା ଭାବରେ ସମସ୍ତଙ୍କଠାରୁ ବଡ଼ ।

ସମାନତା ନ ଥିବାରୁ ସମାଜର ତଳ ଶ୍ରେଣୀର ଲୋକମାନେ ଥିଲାବାଲାଙ୍କ ଅଧର୍ମିକାକୁ ଏବଂ ଆତ୍ମବଡ଼ିମାକୁ ପଦାରେ ପକାଇବାକୁ ଚେଷ୍ଟା କରିବାକୁ ବାଧ ହୁଅନ୍ତି । ସେମାନେ ପଶୁ ନୁହଁନ୍ତି; ମଣିଷ । ଫଳରେ ରାଜନୀତିଜ୍ଞ ନେତାମାନେ ଖବର କାଗଜ କହ, କମ୍ବା ସଭାସମିତି କହ ପ୍ରତ୍ୟେକଠାରେ ନିଜର ନବାପତ୍ର ପାଇଁ ଯେତେ କାତଧର ସୃଷ୍ଟି କରନ୍ତି ତାହା ସମସ୍ତ ପଡ଼ିଲେ ଏହି ଗରିବ ଏବଂ ନିଃସମ୍ବଳଙ୍କ ଠେକା ମାଡ଼ରେ ଚୂନା ହୋଇ ଝୁରୁଝୁରୁ ହୋଇ ଖସି ପଡ଼େ ।

ଯେଉଁ ଖବର କାଗଜ କ୍ଷମତାରେ ଥିବା ମନ୍ତ୍ରୀଙ୍କର ପ୍ରଚାରପତ୍ର ନ ହୁଏ ତାହା ଆପ୍ତୁଷ୍ଟାନ ହୁଏ ।

ଦୁଷ୍ମନ୍ତବାବୁ କାଲୁ କାଚ ଘର ଭିତରେ ଥିଲାବେଳେ କେବଳ ନିଜ ମତକୁ 'ଜନମତ' ବୋଲି ପ୍ରଚାର କରୁଥିଲେ ।





ସଂସାର ବିଷବୃକ୍ଷ ପରି । କିନ୍ତୁ ଏହି ବିଷବୃକ୍ଷରେ ଦୁଇଟି ଫଳ ଅମୃତ ତୁଲ୍ୟ । ସେଥିରୁ ଗୋଟିଏ ହେଲା କାବ୍ୟରସ ଆସ୍ୱାଦନ ଏବଂ ଅନ୍ୟଟି ହେଲା ସଜ୍ଜନମାନଙ୍କ ସହିତ ଆଳାପ ଆଲୋଚନା କରିବା ।

ଗ୍ରାମସେବିକା କୁନ୍ତଳା ନରହରିପୁର ଗାଆଁରେ ଚାକିରି କଲା ଦିନଠାରୁ ଦୁନିଆଁ ବିଷବୃକ୍ଷରୁ ଏହି ଦୁଇଟି ଫଳ ତୋଳି ଖାଇ ଆସିବାକୁ ଚେଷ୍ଟା କରି ଆସିଛି । ସକାଳୁ ସଞ୍ଜଯାଏ ଗାଆଁରୁ ଗାଆଁକୁ ବୁଲି ଗର୍ଭବତୀ ମହିଳାଙ୍କୁ ଔଷଧ ଦେବା, ସେମାନଙ୍କୁ ଉପଦେଶ ଦେବା, ଜନ୍ମନିୟନ୍ତ୍ରଣର ଉପକାରିତା ବିଷୟରେ ବୁଝାଇବା, ଏବଂ ଗ୍ରାମବାସୀ-ମାନଙ୍କୁ ଉନ୍ନତ ଧରଣର କୃଷି ପ୍ରଣାଳୀ, କୁକୁଡ଼ା ପାଳନ ସହିତ ମହିଳା ସମିତିରେ ଶିଶୁମାନଙ୍କୁ ଗୁଣ୍ଡଦୁଧ ବାଣ୍ଟିବାରେ କଟିଯାଏ । ବସାକୁ ଫେରି-ଆସିଲା ପରେ ଖବରକାଗଜ ଓ ପୁରାଣ ପଢ଼ାରେ ସମୟ ବିତାଏ

ମାଆ ତାକୁ ଛାଡ଼ି ଚାଲିଯିବା ପରେ କୁନ୍ତଳା ନିଜକୁ ଏକୁଟିଆ ଏକୁଟିଆ ମନେକରେ । ଭରତ କେବେ କେମିତି ଆସିଲେ ସେଇତକ ସମୟ ତାର କିପରି କଟେ ସେ ଜାଣିପାରେ ନାହିଁ ।

ନରହରପୁର ମଫସଲ ସ୍ଥାନ । ସକାଳୁ ଡାକ ମିଳେ ନାହିଁ । ଡାକବାଲା ଆସି ଗାଆଁର ଚିଠିପତ୍ର ସନ୍ଧ୍ୟାରେ ଦେଇଯାଏ । ସେଥିପାଇଁ କୁନ୍ତଳାର ଉଦ୍‌ବିଗ୍ନତା ନ ଥାଏ । ସକାଳ ହେଉ କମ୍ବା ସଞ୍ଜରେ ହେଉ ଚିଠିଖଣ୍ଡେ କମ୍ବା ଖବରକାଗଜଟି ପାଇଲେ ହେଲା ।

କୁନ୍ତଳା ସେଦନ ସରକାରୀ କାମ ସାର ବସାକୁ ଫେରଆସି କପର କ୍ଳାନ୍ତବୋଧ କରୁଥିଲା । ଖାଇବା ପାଇଁ ତା'ର ସେପର ଆଗ୍ରହ ନ ଥାଏ । ତେଣୁ ଲଣ୍ଠନଟା ଲଗାଇ ସେ ଯେତେବେଳେ ଖଟିଆ ଉପରେ ଗଡ଼ି ପଡ଼ିବାକୁ ଯାଏ ଦେଖିଲା ଝରକା ଫାଙ୍କରେ ଡାକବାଲା ଚିଠି ଓ ଖବର କାଗଜ ପକାଇ ଦେଇ ଯାଇଛି ।

ପାଠ କହୁଛି ଆଗ ରାଜକାର୍ଯ୍ୟ ତାହାପରେ ପିତୃକାର୍ଯ୍ୟ । କୁନ୍ତଳା ଲଣ୍ଠନଟା ତେଜଦେଇ ସରକାରୀ ଚିଠିଟା ଆଗ ଖୋଲ ପଢ଼ି-ବସିଲା । ଚିଠିଖଣ୍ଡି ପଢ଼ି ସେ ନଜେ ନଜକୁ ବଶ୍ୱାସ କରପାରଲା ନାହିଁ । ବ୍ଲକ ଅଫିସରୁ ଖବର ଜଣାଇ ଦଆଯାଇଛି ଯେ ଏହି ବର୍ଷ ତାହାର କାର୍ଯ୍ୟଦକ୍ଷତା ପାଇଁ ସେ ଶ୍ରେଷ୍ଠ ଗ୍ରାମସେବକା ରୂପେ ପୁରସ୍କାର ପାଇବା ପାଇଁ ଯୋଗ୍ୟା ବବେଚତା ହୋଇଛି । ଏହି ପୁରସ୍କାର ତାହାକୁ ଏକ ସ୍ୱତନ୍ତ୍ର ଉତ୍ସବରେ ଦଆଯିବ ।

ଚିଠି ଖଣ୍ଡି ପଢ଼ି କୁନ୍ତଳା ଏତେ ଆନନ୍ଦତା ହୋଇଉଠିଲା ଯେ ନଜର ଏହି ସୁଖ ଖବର ଜଣାଇବାକୁ କାହାକୁ ପାଖରେ ପାଇଲା ନାହିଁ ।

ଆଖି ଆଗରେ ଭାସିଉଠିଲେ ଲୋଚନ ମାଷ୍ଟ୍ରେ । ସେ ଯଦ ଆଜ ବଞ୍ଚିଥାନ୍ତେ ତେବେ ଏହି ଖବର ଶୁଣିଥିଲେ କେଡ଼େ ଖୁସି ହୋଇ ନ ଥାନ୍ତେ ! କାହୁଅ ପଚପଚ ହରଜନ ବସ୍ତିରୁ ସେ ସାଉଣ୍ଟି ଆଣି ଯେଉଁ ମାଟି କଣ୍ଢେଇଟାକୁ ମଣିଷ କରବା ପାଇଁ ଚେଷ୍ଟା କରଥିଲେ ସେ ଆଉ କଛି କର ପାର ନ ଥିଲେ , ଅନ୍ତତଃ ଏତକ କରପାରଛି ଯେ ତାଙ୍କ ପରଶ୍ରମକୁ ପଣ୍ଡ କରଦେଇ ନାହିଁ ।

ମାଆ ମନେ ପଡ଼ିଲା । ତାହାର ମୂର୍ତ୍ତି ଆଖିରେ ନାଚଲା । ସେହି ଶୁଖିଲା ମୁହଁ । ସଦାବେଳେ ସେ ଯେପର କହେ ଏବେ ମଧ୍ୟ

କହୁଛି ଆଜିର ଗରିବ ଲୋକ ଯଦି ନପାରିଲାର ହୁଏ, ନିଶ୍ଚିନ୍ତ ହୁଏ, ତେବେ ଦୁଃଖ ପାଏ । ହାତ ଗୋଡ଼ ଚଳୁଥିବା ପର୍ଯ୍ୟନ୍ତ ନିହାତ ଜଗି ଖଟୁଥିଲେ ଭଗବାନ ନିଶ୍ଚୟ ଆହାର ଗଣ୍ଡାକ ଯୋଗାଇ ଦେଉଥିବେ

କୁନ୍ତଳା ଆଖିରେ ଲୁହ ଜବ ଜବ ହୋଇ ଉଠିଲା

ପ୍ରକୃତରେ କାମ ଭିତରେ ବୁଡ଼ିରହି ସେ ସବୁ କଷ୍ଟ ଦୁଃଖ, ଯାତନାକୁ ଭୁଲି ପାରୁଛି । ପୁରସ୍କାର ପାଇବ ଏହି କାମନା ରଖି ସେ'ତ କାମ କରୁ ନ ଥିଲା ।

ମନେ ପଡ଼ିଲା ଦିନେ ଲୋଚନ ମାଷ୍ଟ୍ରେ କହିଥିଲେ : ନିଷ୍ଠାର ସହିତ କାର୍ଯ୍ୟ କଲେ ଭଗବାନ ସଂତୁଷ୍ଟ ହୁଅନ୍ତି । ଆମେ ଯାହାଠାରୁ ମୂଲ ପାଇବା ତାହା କାମକୁ ଠିକ୍ ରୂପେ କରିବା, ଏ ନୀତିକୁ ଜଗି ରହିଲେ ପେଟ କେବେ ଅପୋଷା ରହିବ ନାହିଁ । ଯିଏ ଦିନକର ମୂଲ ପାଇ ଓଳିକର କାମ କରେ ତାହାକୁ ମଣିଷ ସିନା ଦେଖି ପାରେ ନାହିଁ କିନ୍ତୁ ସେ ଭଗବାନଙ୍କୁ ଠକି ଦେଇ ପାରିବ ନାହିଁ । ବିଷ୍ଣୁଙ୍କର ସହସ୍ର ନାମ । ସେହିପରି ଦୁଇ ସହସ୍ର ଆଖି । ସେ ପରା ସ୍ରଷ୍ଟା; ତେଣୁ ସେ ସବୁ ଦେଖି ପାରନ୍ତି । ମଣିଷକୁ ସେଥିପାଇଁ ବେଳ ଉଣ୍ଡି ସେ ଦଣ୍ଡ ଦିଅନ୍ତି । ସେତେବେଳେ ସେ ଆପଣା ଦୋଷ କଥା ନ ଭାବି କହି ପକାଏ ଏହା ମୋର କପାଳ ଲିଖନ । ଗୃହକର୍ମ ବଡ଼ ହେଉ କି ସାନ ହେଉ ଅସଲ ହେଉଛି ନିଜର କର୍ତ୍ତବ୍ୟକୁ ନିଷ୍ଠାର ସହିତ ପାଳନ କରିବା ।

ସକାଳୁ ସଫା ଧୋବ ଫରଫର ଖଦଡ଼ ଶାଢ଼ୀ, ବ୍ଲାଉଜ ପିନ୍ଧି ହାତରେ ଖଦଡ଼ମୁଣି, ଆଉ ଖଣ୍ଡିଏ ଛତା ଧରି ସେ ଭିଲେଜ ଭିଜିଟ୍ କରିବାକୁ ବାହାରେ ସେ ସେପରେ ସଞ୍ଜକୁ । ଏହି ଗୁରି ପାଞ୍ଚ ଖଣ୍ଡ ଗାଆଁରେ ସେ ସମସ୍ତଙ୍କୁ ଆପଣାର କରି ପାରିଛି । କିଏ ଦାଦା ଖୁଡ଼ୀ, ମଉସା, ମାଉସୀ ତ କିଏ ସାନ ଭାଇ ପୁତୁରା ହୋଇଛନ୍ତି । ତାହାରି ସରଳ ବ୍ୟବହାର ସମସ୍ତଙ୍କୁ ମୁଗ୍ଧ କରିଛି । ସେହି ବ୍ୟବହାର

ବଳରେ ସାନ ବଡ଼ ଭେଦ ଭାବକୁ ସେ ଦୂର କରି ପାରନ୍ତି । କେବେ କମିତ କାହାଠାରୁ ଅଛୁଆଁ ଭାବ ଦେଖିଥିଲେ ତାହା ସେମାନଙ୍କଠାରୁ ପାଉଥିବା ସ୍ନେହ, ସୋହାଗ ତୁଳନାରେ ଯଥେଷ୍ଟ କମ୍ ।

ଜଙ୍ଗଲରେ କେବଳ କ'ଣ ନରୀହ ମିରିଗ, ସମ୍ବର ଓ ଠେକୁଆ ଥାଆନ୍ତି ? ସିଂହ, ବାଘ ମଧ୍ୟ ରହନ୍ତି । ସିଂହ ଭଳି ହିଂସ୍ର ଜନ୍ତୁ ରହିଲେ ବୋଲି ମିରିଗ କ'ଣ ଜଙ୍ଗଲ ଛାଡ଼ି ଚାଲିଯାଏ ? ଗାଆଁରେ କ'ଣ ସମସ୍ତେ ସାଧୁ ସନ୍ଥ ଥିଲେ ? ନାଁ ଅଛନ୍ତି ? କୁପ୍ରକୃତିର ଲୋକ ନ ଥିଲେ, ଭଲ ମନ୍ଦକୁ ନେଇ ଏ ସଂସାର ଗଢ଼ା ବୋଲି କପରି କହିବା ? କିନ୍ତୁ ଆପେ ଭଲ ଥିଲେ ଦୁନିଆ ଭଲ । ସେହି କୁପ୍ରକୃତିର ବଶବର୍ତ୍ତୀ ହୋଇ ଯେଉଁ କେତୋଟି ଅଶ୍ଲୀଳ ଯୁବକ କାହାର ଝିଅ, ବୋହୂଙ୍କୁ ଦେଖି ଥଟ୍ଟା ଟାହୁଲି କରନ୍ତି ସେମାନଙ୍କର ପ୍ରକୃତି କ'ଣ ସହଜରେ ବଦଳିବ ? ମଣିଷ ପ୍ରକୃତି ପରା ମଲେ ତୁଟେ ? ସେମାନେ ଯେତେବେଳେ ଚମ୍ପାଫୁଲଦେହୀ କୁନ୍ତଳାକୁ ଦେଖନ୍ତି, ପାଟି ତାଙ୍କର ଓଦା ହୋଇ ଉଠେ । ମନେ ମନେ ଇଚ୍ଛା କରନ୍ତି ଭ୍ରମର ସାଜିବାକୁ । ଚମ୍ପାଫୁଲର ଏଡ଼େ କଡ଼ା ବାସ୍ନା ଯାହା ଫଳରେ ଭ୍ରମର କ'ଣ ସହଜରେ ତାହା ପାଖ ପଶି ପାରେ ?

କୁନ୍ତଳାର ମତ ହେଲା : ବାଟ ଆଡ଼େଇ ଚାଲିଲେ ବାଟରେ ପଡ଼ିଥିବା କଣ୍ଟା ପାଦରେ ଫୁଟିବ କାହିଁକି ? ରାସ୍ତାରେ ପଡ଼ି ପଡ଼ି ଦିନେ ତାହା ଉପରେ ଉଇ ଚରିଯିବେ । ତାହାର ଅସ୍ତିତ୍ୱ ଲୋପ ହେବ ।

ସରକାରୀ ଚାକିରିରେ ବଦଳି ଏକ ସାଧାରଣ ସତ୍ୟ ହୋଇଥିଲେ ସୁଦ୍ଧା କୁନ୍ତଳା ଚାକିରି ଆରମ୍ଭ ଦିନରୁ ଏହି ନରହରି ପୁର ଗାଆଁରେ ରହି ଆସିଛି । ଯେତେବେଳେ ତାହାର ବଦଳି ଅର୍ଡ଼ର ଆସେ ସେତେବେଳେ ପାଞ୍ଚ ଖଣ୍ଡ ଗାଆଁର ଲୋକ ଏକ ହୋଇ ଉଠନ୍ତି । ସେମାନଙ୍କର ଏକା ଜିଦ୍ 'ଦିଦି' ଆମରି ଗାଆଁରେ ରହିବେ । ଫଳରେ ବଦଳି ଅର୍ଡ଼ର ପରେ ପରେ ବାତିଲ ହୋଇଯାଏ । କୁନ୍ତଳା ଯେଉଁ ପିଲାଙ୍କର ଜନ୍ମ ଦେଖିଥିଲା, ସେମାନେ ବର୍ତ୍ତମାନ ଅଠର କୋଡ଼ିଏ ବର୍ଷର ଯୁବକ ।

କୁନ୍ତଳା ନରହରପୁର ଗାଆଁ ପାଇଁ ଗ୍ରାମସେବିକା ନୁହେଁ, କିମ୍ବା ସରକାରୀ କର୍ମଚାରୀ ନୁହେଁ, ସେ ଏ ଗାଆଁର ଅଜାଠାରୁ ନାତି ପର୍ଯ୍ୟନ୍ତ ସମସ୍ତଙ୍କର ଅତି ଆଦରଣୀୟା ଦିଦି । ଆପଦ ବିପଦରେ ଡାକ କି ନ ଡାକ ସେ କିନ୍ତୁ ସମସ୍ତଙ୍କ ଦୁଆରେ ଠିଆ ହୋଇଥିବ । ତାହା ଦୁଆର ସମସ୍ତଙ୍କ ପାଇଁ ଖୋଲା । ମୁହଁରେ ତା'ର ସଦାବେଳେ ଲାଗି ରହିଥାଏ ମଧୁର ହସ । ସରକାରୀ କାମରେ ସେ ଯେତେବେଳେ ଗାଆଁମାନଙ୍କରେ ବୁଲିଆସେ ସେତେବେଳେ ସେମାନଙ୍କଠାରୁ ଆଞ୍ଜୁଳା ଆଞ୍ଜୁଳା ସ୍ନେହ, ଶ୍ରଦ୍ଧା ଓ ପ୍ରୀତି ଧରି ଆସେ ।

ଉପରିସ୍ଥ ହାକମ ହୁକୁମା ଯିଏ ଯେତେବେଳେ ପରିଦର୍ଶନ କରିବାକୁ ଆସିଛନ୍ତି ତାହାର ମଧୁର ବିନମ୍ର ବ୍ୟବହାରରେ ମୁଗ୍ଧ ହୋଇଛନ୍ତି । କାର୍ଯ୍ୟଦକ୍ଷତା ଦେଖି ପ୍ରଶଂସା କରିଛନ୍ତି । ତେଣୁ ସମସ୍ତଙ୍କର ସମ୍ମିଳିତ ଆଶୀର୍ବାଦ ଫଳସ୍ୱରୂପ ଏହି ପୁରସ୍କାର ସେ ପାଇ ପାରିଛି ।

ଏହି ପୁରସ୍କାରର ପ୍ରକୃତ ଅଧିକାରୀ ହେଉଛନ୍ତି ନରହରିପୁର ଏବଂ ଆଖପାଖ ପାଞ୍ଚ ଖଣ୍ଡ ଗାଆଁର ଯୁବକ, ଯୁବତୀ, ବୁଢ଼ା ବୁଢ଼ୀ, ଯେଉଁମାନେ ତାହାକୁ ପର ବୋଲି ଦିନକ ପାଇଁ ଭାବି ନାହାନ୍ତି ଆପଣାର କରି ସମସ୍ତ କାର୍ଯ୍ୟରେ ତାହା ସହିତ ସହଯୋଗ କରି ଆସିଛନ୍ତି ।

ସମସ୍ତଙ୍କ କଥା ମନେପଡ଼ିଲା ବେଳେ ସେ କିନ୍ତୁ ବାବୁଙ୍କୁ ଭୁଲିପାରିଲା ନାହିଁ । ତାଙ୍କର ସେବା, ତା'ର କଅଁଳ ଜୀବନରେ ଯେଉଁ ଦାଗ ଆଙ୍କି ଦେଇଥିଲା ସେଥିପାଇଁ ଏହି ପୁରସ୍କାର ପଛରେ ତାଙ୍କର ପ୍ରଚ୍ଛନ୍ନ ଆଶୀର୍ବାଦ ରହିଛି । ଗୋପପୁରର କୃଷ୍ଣଭକ୍ତ ବାବୁ ଯିନା ମଥୁରାକୁ ଚାଲିଗଲେ କିନ୍ତୁ ବୃନ୍ଦାବନୀ କ'ଣ ତାଙ୍କୁ ଭୁଲିପାରିଲା ? ପାସୋରି ପାରିଲା ତାହାର ଅତୀତର ପ୍ରଣୟମଧୁର ମୁହୂର୍ତ୍ତକୁ ? ତେଣୁ ସେ ଭାବୁଛି ତାହାର ସମସ୍ତ କାର୍ଯ୍ୟରେ ସେହି ଲୀଳାମୟ କୃଷ୍ଣଚନ୍ଦ୍ରଙ୍କର ମଧ୍ୟ କଲ୍ୟାଣ ରହିଆସିଛି । ଆଉ ଜୀବନରେ ସାକ୍ଷାତ୍ ହେବ କି ନାହିଁ ଯଦିଓ ଆଶା ନାହିଁ ତଥାପି ମନକୁ ସାନ୍ତ୍ୱନା ଦେଉଛି ଯେ ଯେଉଁ ଅଛବ ଝିଅକୁ ଭୁଲେ ଛାଡ଼ିଦେଇ

ଗୃହଲଗଲ ସେ ତୁମ ପାଇଁ ଅସହ୍ୟ ହୋଇଛି ସତ କିନ୍ତୁ ଅପଥକୁ ଯାଇ ନାହିଁ । ଯେଉଁ ପନ୍ଥାକୁ ବଞ୍ଚିବା ପାଇଁ ଗ୍ରହଣ କରି ନେଇଛି ସେଥିରେ ମଧ୍ୟ ସାଫଲ୍ୟ ଅର୍ଜନ କରିପାରିଛି ।

କାନ୍ଥ ପଟଣାରେ ପୂଜା ପାଉଛନ୍ତି ନୀଳାଚଳ ନାଥ ଜଗନ୍ନାଥ । ତାଙ୍କର ପାଖରେ ସାଷ୍ଟାଙ୍ଗ ପ୍ରଣିପାତ ଜଣାଇ କୁନ୍ତଳା ମନେ ମନେ କହିଲା— ନୀଳମାଧବ ! ତୁମେ ହିଁ ସଦାବେଳେ ନିରାଶ୍ରୟଙ୍କର ଭରସା । ତୁମର ଚକା ଚକା ଆଖିରେ ସମସ୍ତେ ସମାନ । ତୁମର କ୍ଷେତ୍ରରେ ଛୁଆଁ ଅଛୁଆଁ ଭାବ ନାହିଁ ସେଥିପାଇଁ ତୁମେ ପତିତପାବନ ବୋଲାଇଛ । ମୋର ଆପଦ ବିପଦ ବେଳେ ଏପର୍ଯ୍ୟନ୍ତ ତୁମେହିଁ ସାହା ହୋଇ ଆସିଛ । ତେଣୁ ଯେଉଁ ପୁରସ୍କାର ମୁଁ ପାଇଛି ତାହା ତୁମର । ମୋର ସେଥିରେ କ'ଣ ଅଛି ? ତୁମେ ପରା ଗୀତାରେ ଶ୍ରୀକୃଷ୍ଣ ହୋଇ ଅର୍ଜୁନକୁ ବୁଝାଇଥିଲ—କର୍ମଫଳକୁ ଆଶା ନ ରଖି କର୍ମ କରିଯାଅ । ସେତିକହିଁ ମୁଁ ପାଳନ କରି ଆସିଛି ।

ଅନ୍ୟ ଚିଠିଟି ଖୋଲି ପଢ଼ିଲା କୁନ୍ତଳା । ଭରତ ଲେଖିଛି କଟକରୁ । ତାହାର ଆଇନ ପରୀକ୍ଷା ସରିଯାଇଛି ଏବଂ ସେ ଆଶାକରିଛି ତାହାର ଆଶୀର୍ବାଦ ଥିଲେ ସେ ଏଥର ପରୀକ୍ଷାରେ ମଧ୍ୟ ପ୍ରଥମ ହୋଇ ପାରିବ ।

ଏତିକି ପଢ଼ି କୁନ୍ତଳାର ଆଖି ଲୁହରେ ଛଳ ଛଳ ହୋଇ ଉଠିଲା । ମନଭିତରୁ ଯେପରି କିଏ କହି ଉଠିଲା—ଭରତ; ମୋଠାରୁ ତୋ ବ୍ୟତୀତ କଲ୍ୟାଣ ଆଉ ଆଶୀର୍ବାଦ ପାଇବାକୁ ଏ ସଂସାରରେ ଆଉ କିଏ ଅଛି ? ମୋ ବୁକୁତଳେ ଯେତେ କଲ୍ୟାଣ, ଶ୍ରଦ୍ଧା, ସ୍ନେହ ଆଉ ଆଶୀର୍ବାଦ ସେ ସବୁତ ତୋରିପାଇଁ ସାଇତା ହୋଇ ରହିଛିରେ ।

ତୁ ପରା ମୋର ରୁକ୍ମଣୀରତନ, ଆଉ ନିଧନ ସଙ୍ଖାଳି ।





କମଳପୁର ଗାଆଁ ଆଉ ପୂର୍ବପର ନାହିଁ ।

ସ୍ୱାଧୀନତା ପରେ ପରେ ଯେଉଁ ପଞ୍ଚବାର୍ଷିକ ଯୋଜନା ସବୁ ସରକାର ପ୍ରସ୍ତୁତ କଲେ ତହିଁର ପ୍ରଭାବ ଭାରତର ସବୁ ଅଞ୍ଚଳରେ ପଡ଼ୁଛି । ଶୁଖିଲା ନାଳରେ ପାଣି ଗଲାବେଳେ ମାଟି ତହିଁରୁ କିଛି ଶୋଷି ନେବା ପରେ ଅବଶିଷ୍ଟ ଯାହା ରହେ ତାହା ଅବଶ୍ୟ କିଆରୀରେ ମାଡ଼େ । ସେତିକି ପାଣିରେ ମରିଯାଉଥିବା ଧାନଗଛ ମଧ୍ୟ ଜୀବନ ପାଇ ହସିଉଠେ । ସେହିପରି ଏହି ଯୋଜନାରେ ନିୟୋଜିତ ଅର୍ଥ ବାଟରେ କେତେକ ନ୍ୟସ୍ତସ୍ୱାର୍ଥ ଟାଉଟରଙ୍କ ହାତରେ ପଡ଼ି କିଛିଟା ଆତ୍ମସାତ୍ ହେବାପରେ ଅବଶିଷ୍ଟ ଯାହା ଲୋକମାନଙ୍କ ନିକଟରେ ପହଞ୍ଚି ପାରୁଛି ତଦ୍ଦ୍ୱାରା କିଛି ନା କିଛି ଉନ୍ନତ ପରିଲକ୍ଷିତ ହୋଇଛି ।

ଫଳରେ କମଳପୁର ତହସିଲରୁ ସବ୍‌ଡିଭିଜନାଲ ହେଡ୍‌କ୍ୱାର୍ଟର୍ ହୋଇ ପାରିଛି ।

କମଳପୁରରେ ନୂଆକରି ଡିମ୍ବଳି କେନ୍ଦ୍ର ଖୋଲାଯାଉଛି । ସ୍ଥାନୀୟ ଲୋକପ୍ରତିନିଧି ତଥା ମନ୍ତ୍ରୀ ଦୁଷ୍ମନ୍ତ ପଟ୍ଟନାୟକ ସେହି ନିଆଁ ଲଗା

କେନ୍ଦ୍ରକୁ ଉଦ୍‌ଘାଟନ କରିବାକୁ ଆସିବେ । ମନ୍ତ୍ରୀଙ୍କ ଆଗମନ ପାଇଁ ସେହି ଅଞ୍ଚଳର କେତେକ ଦେଖିଲଗା ଠାଉଠରଙ୍କୁ ନିଦ ନ ଥାଏ । କେଉଁ ଦିନରୁ ଟ୍ରଙ୍କରେ ପେଡ଼ି ଲୁଗାପଟା ସାଇତା ହୋଇଥିବା ଖଦଡ଼- ଧୋତି, ଚଦର ଏବଂ ମୁଣ୍ଡରେ ଟୋପିମାନ ପିନ୍ଧି ସେମାନେ ଖାଲି ମୁକୁନ୍ଦା ପରି ସଭାମଞ୍ଚର ଏପଟରୁ ସେପଟ ହେର୍ ଫେର୍ ହେଉଥାନ୍ତି ।

ମହାଲକ୍ଷ୍ମୀ ମିଷ୍ଟାନ୍ନ ଭଣ୍ଡାର ପାଖ ବସ୍‌ଷ୍ଟାଣ୍ଡ ପଡ଼ିଆରେ ସଭା ଆୟୋଜନ ହୋଇଥାଏ । ସ୍ଥାନୀୟ ହାକିମହୁକୁମାମାନେ ଆସି ଆଗରୁ ଯିଏ ଯେଝା ଆସନରେ ବସି ଯାଇଥାନ୍ତି ।

ଦୁଷ୍ମନ୍ତବାବୁ ଯେତେବେଳେ କମଳପୁରର ବାସିନ୍ଦା ଥିଲେ ସେକଥା ଅନ୍ୟ ପ୍ରକାର । ସେତେବେଳେ ସେ ଏଠିକାର ଲୋକଙ୍କର ହାଲ ହକିକତ; ଭଲମନ୍ଦ ବୁଝୁଥିଲେ । କିନ୍ତୁ ଯେଉଁଦିନଠାରୁ ସେ ବିଶାଳ ଓଡ଼ିଶା ପ୍ରଦେଶର ଦାୟିତ୍ୱ ବହନ କଲେଣି ସେହିଦିନଠାରୁ ଆଉ ଗାଆଁକୁ ଆସିବାକୁ ଫୁରସତ୍ ପାଆନ୍ତି ନାହିଁ । ଏହିଭଳି ଗୋଟିଏ ଗୋଟିଏ ସଭା ସମିତିର ମଉକା ପାଇଲେ ସେ ଗାଆଁକୁ ଆସିବାକୁ ବାଧ୍ୟ ହୁଅନ୍ତି । ଯେଉଁ ଘଣ୍ଟାଏ କି ଦୁଇଘଣ୍ଟା ରହନ୍ତି ଗାଆଁବାଲାଙ୍କ ସହିତ ଦୁଃଖସୁଖ ହୁଅନ୍ତି ।

ନିର୍ଦ୍ଧାରିତ ସମୟର କିଛି ବିଳମ୍ବରେ ଦୁଷ୍ମନ୍ତବାବୁ ଆସି ପହଞ୍ଚିଲେ । ନିଆଁଲିଭା କେନ୍ଦ୍ର ଉଦ୍‌ଘାଟିତ ହେଲା । ଦେଶ ଓ ଦଶର ଉନ୍ନତି ବିଷୟରେ ସେ ତାଙ୍କର ଜ୍ୱାଳାମୟୀ ଭାଷଣ ଦେଲେ । ଲୋକମାନେ ଉଦ୍‌ବୁଦ୍ଧ ହୋଇ ତାଙ୍କ ଭାଷଣକୁ ପିଇଗଲେ ।

କରତାଳିରେ ସଭାସ୍ଥଳ କମ୍ପି ଉଠିଲା । ସଭା ଭାଙ୍ଗିଲା ।

ସଭା ଭାଙ୍ଗିବା ପରେ ଲୋକମାନେ ଖୁସିରେ କୁହାକୁହି ହେଲେ ଯାହାହେଉ ବହୁତ ଦିନର ଗୋଟାଏ ବଡ଼ ଅଭାବ ମେଣ୍ଟିଲା । ପ୍ରତିବର୍ଷ ନିଆଁ ଯାହା ଆମକୁ ହନ୍ତସନ୍ତ କରେ ଅନ୍ତତଃ ସେଥିରୁ ତ ରକ୍ଷା ପାଇପାରିବା ।

ଡାକ ବଙ୍ଗଳାରେ ଯଦିଓ ଦୁଷ୍ମନ୍ତବାବୁଙ୍କ ପାଇଁ ରହିବା ଓ ଖାଇବାର ବନ୍ଦୋବସ୍ତ ହୋଇଥାଏ ତଥାପି ସେ ଗାଆଁକୁ ଆସିଲେ ନିଜ ଘରେ ସମସ୍ତ ବିତାନ୍ତି । ସେହିଠାରେ ତାଙ୍କୁ ଗାଆଁ ଲୋକେ ବର୍ଷକରେ ଥରେ ଅଧେ ଭେଟନ୍ତି ଜାଣିପାରନ୍ତି ସେ ଯେ ଏଇ ଗାଆଁର ବାସିନ୍ଦା । ସେମାନଙ୍କ ଭିତରର ସେ ଜଣେ ଭାଇ ।

ସବୁଥର ପରି ଦୁଷ୍ମନ୍ତବାବୁ ଯେମିତି ନିଜ ବୈଠକ୍ ଘରେ ବସିଛନ୍ତି ସେତିକିବେଳେ ଦରବାର ଆରମ୍ଭ ହୋଇଗଲା ।

ଆଗ ଆସିଲେ ସାହିର ସବୁଠାରୁ ବୟସ୍କ ବୃଦ୍ଧ ଭଗି ପଣ୍ଡିତେ । କଳା ମଚ୍ ମଚ୍ ଦେହଟା, ଚମ ଧୁଡୁଧାଡୁ ହେଲାଣି । ହାତରେ ଖଣ୍ଡିଏ ବଙ୍କୁଲା ବାଉଁଶ ବାଡ଼ି । ତାଙ୍କୁ ଧରି ଆଣି ଛାଡ଼ିଲେ ଗାଆଁର ଯୁବ ସଂସଦର କେତେକ ଉତ୍ସାହୀ ଯୁବକ ।

ଭଗି ପଣ୍ଡିତଙ୍କୁ ଦେଖି ବସିଥିବା ଆସନରୁ ଓହ୍ଲାଇ ପଡ଼ି ଦୁଷ୍ମନ୍ତବାବୁ ତାଙ୍କର ପାଦ ଛୁଇଁ ପ୍ରଣାମ କଲେ ।

ପଣ୍ଡିତେ ଏତିକରେ ସନ୍ତୋଷ ହୋଇ କହିଲେ : ହେଇଟି ପୁଅ, ତୁମ ବାପଙ୍କୁ ମୁଁ ଦେଖିଛି । ଆଉ ତୁମକୁ ବି ଦେଖୁଛି । ଗୁଣି ଘର ପୁଅ ଗୁଣି । ଭଣ୍ଡ ଘର ପୁଅ ଭଣ୍ଡ । ବାପ ଥିଲେ ଏ ଗାଆଁର ହାଲ ହଇକତ ବୁଝୁଥିଲେ । ତୁମେ ତ ପୁଅ ଗାଆଁ ଛାଡ଼ିଲ । ସହରରେ ସଦାବେଳେ ରହିଲ । ଏ ଗାଆଁ ଖବର ଅବା କେମିତି ଜାଣିବ ? ହେଇଟି କ'ଣ କହୁଥିଲି କି ? ଗାଆଁ ଠାକୁରାଣୀଙ୍କ ପାଖ ପୋଖରୀଟାର ଚାରିପାଖ ମେଲା । କେତେ ଅସନା ହୋଇଛି । ସକାଳୁ ରହିଲେ ସିନା ଦେଖନ୍ତ । ତୁମେ ତ ଉଇଁବ ଆଉ ବସିବ । ଆଜିକାଲି ଲୋକମାନେ କ'ଣ କାହା କଥା ମାନୁଛନ୍ତି ? ତୁମେମାନେ ତ ମନ୍ତ୍ରୀ ହେଲ ଯେ ହାଡ଼ି, ପାଣ, ବ୍ରାହ୍ମଣ ଏକ କଲ । ଦେଶରୁ ଧର୍ମ ଗୁଡ଼ା ଗୁଳିଗଲାଣି । ସେ ଯାହାହେଉ ମୋର କହିବା କଥା ପୋଖରୀଟା କପର ଉଦ୍ଧାର ହୁଅନ୍ତା । ଦଳଗୁଡ଼ାକ କଢ଼ା ହୁଅନ୍ତା । ଆଉ ସେହି ପରିଷ୍କାର ପାଣିରୁ ଟୋପାଏ ଠାକୁରାଣୀଙ୍କ ଶିରରେ ପଡ଼ନ୍ତା । ଏତିକ ତମେ କରି ପାରିଲେ ମୁଁ ଜାଣନ୍ତି ଯେ ତମେ ଆମ

ଗାଆଁରେ ପାଗଳୀର ପୁଅଟେ ଜନମ ହୋଇଥିଲ । ତୁମ ଲାଗି ଗାଆଁ ଧନ୍ୟ ହେଲା ।

ମନଦେଇ ସବୁ ଶୁଣୁଥିଲେ ଦୁଷ୍ମନ୍ତବାବୁ । ହସି ହସି କହିଲେ— କଟକଇ, ତୁମେ ଯାହା କହିଲ ସବୁ ଖାଣ୍ଟି କଥା । ପୋଖରୀଟି ସଫା ନ ରହିଲେ ଠାକୁରାଣୀଙ୍କ ଶିରରେ ପାଣି ଚଢ଼ିବା ତ ପଛ କଥା ଆଗ ଆମମାନଙ୍କ ସ୍ୱାସ୍ଥ୍ୟ ଭଲ ରହିବ କେମିତି ? ମୁଁ ଏ ବିଷୟରେ ଗଲେ ବି. ଡ଼ି. ଓ.ଙ୍କୁ ଫୋନ କରି କହିଦେବି, ସେ ଏହି ବର୍ଷ ତାଙ୍କର ଉନ୍ନୟନ ପାଣ୍ଠିରୁ କିଛି ଖର୍ଚ୍ଚ କରି ପୋଖରୀଟା ଉଠେଇ ଦେବେ । ସେତକ ଅବା କରିହେବ । ଆଉ ଯେଉଁ ଦଳ କାଢ଼ିବା କଥା କହିଲ ତାହା କ'ଣ ସରକାରଙ୍କ ଦାୟିତ୍ୱ ? ଏହି ଗାଆଁର ଉତ୍ସାହୀ ଯୁବକମାନେ ଇଚ୍ଛାକଲେ କ'ଣ ଏତକ କରିପାରିବେ ନାହିଁ ? ପୁଣି ଆମେ ଯେତେବେଳେ ପିଲା ହୋଇଥିଲୁ ସେତେବେଳେ ସେ ପୋଖରୀରୁ ଦଳ କାଢ଼ିଥିଲୁ ନା ନାହିଁ ? ଆଉ କେହି ଦେଖି ନ ଥିଲେ ତୁମର ତ ମନେଥିବ ।

ପୋଖରୀଟା ଅସନା ହେବା ଯାହା କହିଲ ଯଦିଓ ତାକୁ ସଫା ରଖିବା ସମ୍ପୂର୍ଣ୍ଣ ଆମମାନଙ୍କ ଉପରେ ନିର୍ଭର କରେ । ତଥାପି ତାହାକୁ ସଫାରଖିବା ପାଇଁ ମୁଁ କହୁଛି ପୋଖରୀହୁଡ଼ା ଚାରିପାଖରେ ପାଚେରୀ ବୁଲାଇଦେବା ସେଥିରେ ଗୋଟିଏ ଗେଟ୍ ଲଗାଇବା । କେବଳ ଗାଧୁଆ ବ୍ୟତୀତ, ଲୁଗା ସଫାକରିବା, ଗାଈଗୋରୁ ଗାଧୋଇବା ଏବଂ ଶୌଚ ହେବାପାଇଁ ବାରଣ କରିବାକୁ ଜଗୁଆଳୀଟିଏ ରଖିଦେବା । ଏହି ଛୋଟ କାମ ପାଇଁ ସରକାରଙ୍କୁ କ'ଣ କୁହାଯାଇ ପାରିବ ? ଆମେ ସମସ୍ତେ ମନକଲେ ଏହା ଆମକୁ ବଳାଇ ପଡ଼ିବ ନାହିଁ । ତୁମେ ଗାଆଁବାଲା ମିଶି ତିନିପାଖର ପାଚେରୀ ଦାୟିତ୍ୱ ନିଅ, ମୋତେ ଏକାକା ଗୋଟାଏ ପାଖ ତିଆରି କରିବା ପାଇଁ ଛାଡ଼ିଦିଅ । ଆମେମାନେ ମିଶି ପାଚେରୀ ତିଆରି କରିଦେବା । ଆଉ ପୋଖରୀ ଚାରିପାଖ ହୁଡ଼ାରେ ଯେତେ ନଡ଼ିଆଗଛ ଲାଗିଯିବ ସେସବୁ ଚାରା ଯୋଗାଇ ଦେବା ଦାୟିତ୍ୱ ମୋର । ସେଥିପାଇଁ କାହାକୁ ଭାବିବାକୁ ପଡ଼ିବ ନାହିଁ । ତୁମେ ତିନିପାଖର ପାଚେରୀ କାମ ସାରି ମୋତେ ଖବର ଦେବ । ତେଣିକି କ'ଣ କରାହେବ ତାହା ମୁଁ ଦେଖିବି ।

ଭଗି ପଣ୍ଡିତେ ଏତିକ ଶୁଣି କହିଲେ—ଶୁଣିଲ ପିଲେ । ଦୁଷ୍ମନ୍ତ ସବୁ କଥାକୁ ରାଜି ଅଛି । ସେ ତ ଆମ ଭିତରୁ ଜଣେ ହେଉଛି । ସିଏ ସେତେବେଳେ ଗୋଟାଏ ପାଖର ଦାୟିତ୍ୱ ନେଉଛି ବାକି ଚନ୍ଦପାଖର ଦାୟିତ୍ୱ ତୁମେମାନେ ସମସ୍ତେ ନିଅ । ଏତିକ ଯଦି ନ ପାରିବ, ମୋତେ କହି ଲଭ ନାହିଁ । ଅଶୀ ବର୍ଷର ବୁଢ଼ା ମୁଁ । ତୁମମାନଙ୍କର କଥା ମାନି ଆସିଲି । ତାକୁ କହିଲି । ସେ ମଧ୍ୟ ମୋ କଥା ରଖିଲା । ଏଣିକ ତୁମର ସବୁ ଦାୟିତ୍ୱ ।

ଗାଆଁର ଉତ୍ସାହୀ ଯୁବକମାନେ ଏତିକ ଶୁଣି ଖୁସିହୋଇ ପିଣ୍ଡା ତଳକୁ ଓହ୍ଲାଇଗଲେ ।

ତାହାପରେ ଆସିଲେ ଗ୍ରାମ ପ୍ରଧାନ ସେ ଗାଆଁର ଗୃହୀ । ପେଟରୁ ପିଠିରୁ କାଟି ପୁଅକୁ ଦି ଅକ୍ଷର ପାଠ ପଢ଼ାଇଥିଲେ । ଗୋଟିଏ ବୋଲି ପୁଅ । ଓଭରସିଅର କାମ କରେ । ସରକାର ବଦଳି କରିଛନ୍ତି କୋରାପୁଟକୁ । ବିନମ୍ରୀ ହୋଇ ଗ୍ରାମ ପଧାନେ ଜଣା କଲେ ଆଜ୍ଞା, ଆପଣଙ୍କର ଯଶବାନା ଗୃହଆଗ୍ରେ ଉଡ଼ୁଛି ଏ ଗରିବ ପ୍ରତି ଟିକିଏ ଦୃଷ୍ଟି ପଡ଼ୁ । ପୁଅଟାର ଏବେ ଦୂରକୁ ବଦଳି ହୋଇ ଯାଉଛି । ତାକୁ ଏଇ ପାଖ ଆଖରେ କେଉଁଠାରେ ରଖାଇ ଦେଲେ ଶେଷ ଜୀବନରେ ଅନ୍ତତଃ ଖବର ପାଇଲେ ମୁହିଁରେ ପାଣି ଟୋପିଏ ଦେବାକୁ ଦଉଡ଼ି ଆସିବତ ? ଏତେ ଦୂରକୁ ସେ ଗଲେ ନାତି ନାତୁଣୀଗୁଡ଼ାକ କ'ଣ ମୋ ପାଖରେ ଆଉ ରହିବେ ? ବୁଢ଼ୀ ତ ନାହିଁ । ଶେଷରେ ବୋହୂ ପୁଅ ସଙ୍ଗରେ ଗଲେ ବୁଢ଼ାଦିନରେ ହାତରେ କ'ଣ ଫୁଟାଇ କରି ଖାଇବ ?

ଦୁଷ୍ମନ୍ତ ବାବୁ ସବୁ ଶୁଣିଲେ ହସିଲେ । କହିଲେ ପଧାନେ ଆଜିକାଲି ଦୂର ଆଉ ନିକଟ ହୋଇ କଛି ନାହିଁ । ବିଜ୍ଞାନ ପୃଥ୍ୱୀ ପୃଥିବୀକୁ ଏତେ ଟିକିଏ କରି ଦେଲଣି । ସରକାର ସବୁ ଗାଆଁକୁ ସଡ଼କ କରି ଦେଲଣି । ପ୍ରତ୍ୟେକ ସଡ଼କରେ ସରକାରୀ କମ୍ପା ବେସରକାରୀ ମଟର ଗାଡ଼ି ହରଦମ୍ ଯାତ୍ରୀ ଧରି ଚାଲିଛି । ଏଇଲେ ମନେକଲେ ଓଳିକରେ ଯାଇ କୋରାପୁଟରେ ପହଞ୍ଚିବ ।

ତାହାପରେ କଣ୍ଠ ସ୍ୱରକୁ ନରମକରି ପୁଣି କହିଲେ : ଆପଣମାନେ ଏତେ ସଂକୀର୍ଣ୍ଣମନା ହେଲେ ଚଳିବ ? କୋରାପୁଟ ତ ଆମ ଓଡ଼ିଶା ଭିତରେ । ସମସ୍ତେ କହିବା ଚାକିରି କରିବା ଆଉ ଆମ ଘର ପାଖରେ ରହିବା ଏହା କ'ଣ ସମ୍ଭବ ? ତାପରେ, ଆମେ କୋରାପୁଟ ଯିବା ନାହିଁ, ସେଠା କାମ ଚଳାଇବାକୁ ବାହାରୁ ଲୋକ ଆଣିଲେ ପାଟିକରିବା ଅଣଓଡ଼ିଆଙ୍କୁ ଏ ମନ୍ତ୍ରୀମାନେ ଦେଶରେ ଭର୍ତ୍ତି କରି ଦେଲେଣି । ମୁଁ ଯଦି ଏହିଭଳି ବଦଳି ବନ୍ଦ କରିବା କଥା ବୁଝିବି ତେବେ ସାରା ଓଡ଼ିଶାର ଉନ୍ନତି ବିଷୟ ବୁଝିବି କେବେ ? ପୁଅ ତ ତୁମର ବର୍ତ୍ତମାନ ଯୁବକ । ଏହି ବୟସରୁ ବାହାରେ କାମ କରି ଫେରିଲେ ଶେଷ ଦିନକୁ ଗାଆଁରେ ରହି ପାରିବ । ଏହିଠାରେ ଚାକିରିରୁ ଅବସର ନେଇ ପେନ୍‌ସନ ପାଇବ ।

ଗ୍ରାମ ପଧାନେ କ'ଣ ଅବା କହିବେ । ମନରେ କେତେ ଆଶା କରି ଆସିଥିଲେ ଦୁଷ୍ମନ୍ତବାବୁ ଗାଆଁ ଲୋକ, ନିଶ୍ଚୟ ତାଙ୍କ କଥା ଶୁଣିବେ । କିନ୍ତୁ କାର୍ଯ୍ୟରେ ଏତିକି ହେଲା ସେ କେବଳ ଦୁଷ୍ମନ୍ତ-ବାବୁଙ୍କ କଥା ଶୁଣିଲା । ତା ଆଶା ହିଁ ଆଶାରେ ରହିଗଲା । ମନେ ମନେ ଭାବିଲା : ଏଇଥିପାଇଁ ତୁମକୁ ଗତସନ ଭୋଟ ଦେଇଥିଲି ?

ଘର ଭିତରକୁ ପଶି ଆସିଲେ ଜଗୁ ପଟ୍ଟନାୟକ । କହିଲେ ଆଜ୍ଞା, ପୁଅଟା ପାଠପଢ଼ି ଦୁଇ ବର୍ଷ ହେଲା ଘରେ ବସି ରହିଛି । କେତେ କୁଆଡ଼େ ଦରଖାସ୍ତ କଲାଣି ସବୁଠାରେ ନିରାଶରେ ଫେରୁଛି । ଯାହାକୁ କହିଲେ ସମସ୍ତେ କହୁଛନ୍ତି ଧରାଧରି ନ କଲେ କ'ଣ ଚାକିରି ଖଣ୍ଡିଏ ମିଳିବ । ତୁମ ଗାଆଁର ପରା ଦୁଷ୍ମନ୍ତବାବୁ ମନ୍ତ୍ରୀ ହୋଇଛନ୍ତି । କେତେ ଲୋକଙ୍କୁ ସେ ଚାକିରିରେ ରଖି ଦେଉଛନ୍ତି । ତାଙ୍କୁ ଟିକିଏ କହନ୍ତୁ ।

ଜଗୁ ପଟ୍ଟନାୟକଙ୍କ ତୁଣ୍ଡରୁ କଥା ଛଡ଼ାଇ ନେଇ ଦୁଷ୍ମନ୍ତବାବୁ କହିଲେ : ବୁଝିଲ ଜଗୁନା, ତୁମେ ସବୁ ବୁଝି ବି କିଛି ନ ବୁଝିଲା ପରି ହେଉଥିବାର ଦେଖି ମୁଁ ବିସ୍ମିତ ହେଉଛି ! ଏତେ କହିଲ ସ୍କୁଲ ଖୋଲ ।

ପିଲାଏ ପାଠ ପଢ଼ିବେ । ତେଣେ ପାଠ ପଢି ସାରିଲେ କହୁଛ ଗୃକେରୀ ଦିଅ । ସରକାର କେତେ ଗୃକେରୀ ଆଣିବେ ଯେ ସମସ୍ତଙ୍କୁ ଦେବେ । ମୁଁ ଭାବୁଛି ଏ ପିଲାମାନେ ବଡ଼ ହେଲେ କରିବେ କଣ ? ଖାଲି ଗୃକେରୀ ଗୃକେରୀ ହେଉଛନ୍ତି । ରିସ୍କ୍ ନେଇ କଷ୍ଟ କରିବାକୁ ପ୍ରସ୍ତୁତ ନାହାନ୍ତି । କହୋ ! ବ୍ୟବସାୟ କରୁ ନାହାନ୍ତି । ପୁଅ ତ ତୁମର ବି. ଏ. ପାଶ୍ କରିଛି । ବ୍ୟାଙ୍କ ତ ଆଜିକାଲି ଋଣ ଦେଉଛି । ପରିଶ୍ରମ କରିବାକୁ ଏତେ କୁଣ୍ଠା କାହିଁକି ? ତୁମେ ବହୁତ କଲ । ତାକୁ ପାଠ ପଢ଼ାଇ ଗ୍ରାଜୁଏଟ୍ କରି ଦେଲ; ଏଣିକି ସେ ତାହା କଥା ବୁଝୁ । ତୁମେ ପୁଅକୁ କହ ସେ ଯାଇ ମୋତେ ଦେଖା କରୁ । ମୁଁ ତାର ଋଣ ପାଇଁ ବ୍ୟବସ୍ଥା କରି ଦେବି । କ'ଣ ବୁଝି ପାରିଲ ?

ଏହିଭଳି ଗୋଟିକ ପରେ ଗୋଟିଏ ଆପତ୍ତି ଅଭିଯୋଗକୁ ଶୁଣି ଦୁଷ୍ମନ୍ତବାବୁ ସମାଧାନ କରି ତାଙ୍କ ବୈଠକୀ ଘରକୁ ସଫା କରି ଦେଲେ । ଜନତା ଜନାର୍ଦ୍ଦନଙ୍କ ସେବା ସରିଲା । ତାପରେ ଆରମ୍ଭ ହେଲା କର୍ମୀ ସମ୍ମିଳନୀ । କେଉଁ ସରକାରୀ କର୍ମଚାରୀ ଦରମା ପାଉଛି କେତେ, ଚଳୁଛି କିପରି । ଲାଞ୍ଚ ଖାଉଛି । କେଉଁଦିନ କାହାକୁ କ'ଣ କହିଛି । ତାକୁ ଏଠାରୁ ଶୀଘ୍ର ବଦଳି ନ କଲେ ଇଜ୍ଜତ ରହିବ ନାହିଁ । ଲୋକମାନେ ଆଉ ଆମ ପାର୍ଟିକୁ ଖାତିର କରିବେ ନାହିଁ ।

ଏହି ଆଲୋଚନା ଶୀଘ୍ର ସାରିବାକୁ ପି: ଏ: ବାବୁ ଆସି କଲିଂ ବେଲ୍ ଭଳି ମୁହଁ ଦେଖାଇ କହିଲେ—ଆଜି ସକାଳୁ ଯିବା ବାଲେଶ୍ୱର । ସେଠାରେ ହାଇସ୍କୁଲ ଉଦ୍‌ଘାଟନ ଉତ୍ସବ । ଲୋକମାନେ ଅପେକ୍ଷା କରିଥିବେ ।

ଦୁଷ୍ମନ୍ତବାବୁ କର୍ମୀମାନଙ୍କୁ ହଁ, ହାଁ ଜଣାଇ ଠିଆହେଲେ । ଘର ଭିତରକୁ ଯାଇ ଗୃମାସ୍ତାଙ୍କ ସହିତ ଦଶ କୋଡ଼ିଏ ମିନିଟ୍ କଥାବାର୍ତ୍ତା ହୋଇ କାର୍‌ରେ ବସିଲେ ।

ଗାଡ଼ି ଷ୍ଟାର୍ଟ ହୋଇ ସର୍ କରି ଚାଲିଗଲା ।

ଜଗୁ ପଟ୍ଟନାଏକେ ମନ କଥା ମନରେ ଗୁପି ରଖି ପାରିଲେ ନାହିଁ—କହିଲେ କହୋ, ଆମେ ତ ଆମ ଘର, ଜମି ବନ୍ଧା ଦେଲେ

ବ୍ୟାଙ୍କ ଋଣ ଦେବ ତୁମ ପାଖକୁ ବାଟ ଖର୍ଚ୍ଚ କରି କାହିଁକି ଯିବୁ ? ବଳଦ ପଇଡ଼ ମଦଗଣ୍ଡା, କାମ ସରିଲେ ଗଡ଼ ଗଣ୍ଡା । ହାଉ ଗୃହୀ ହୁଡ଼ିଲେ ବରଷେ ଆଉ ଭେଟରେ ହୁଡ଼ିଲେ ପାଞ୍ଚ ବରଷ । ପାଣି ଭଳି ପାଞ୍ଚ ବରଷ ଗଡ଼ିଯିବ । ପୁଣି ତ ଆସି ଧୂଆ କହିବୁ ଜଗୁନା, କ'ଣ କରିବା ? ସେତିକିବେଳେ ଦେଖାଯିବ ହାତରେ ବାପ……

ଗାଁ ଭିତରକୁ ପାଦ ବଢାଉ ବଢାଉ ଯୁବ ସଙ୍ଗଠନର ଗୋଟାଏ ଟୋକା କହିଲା—ଦେଖିଲ, କି ସୁନ୍ଦର ଭାବରେ ଆମକୁ ଧପ୍ପେଇ ଦେଲା । ତୁମେ ସମସ୍ତେ ତ ତାର ଭାଷଣ ଶୁଣି ଖୁସି । ମୁଁ କିନ୍ତୁ ଭାବୁଥିଲି ଏତେବଡ଼ ପୋଖରୀର ତିନିପାଖରେ ପାଚେରୀ ତିଆରି କରିବାରେ କେତେ ଟଙ୍କା ଲାଗିବ ? ସେତିକି ଟଙ୍କା ଯଦି ଆମ ଗାଁ ବାଲା ଚାନ୍ଦା ଦେଇପାରିବା ତେବେ ପୋଖରୀଟାକୁ ଉଖାରିବା ପାଇଁ ତାଙ୍କ ପାଖକୁ କାହିଁକି ଯାଇଥାନ୍ତୁ ? ବୁଦ୍ଧି ଖର୍ଚ୍ଚ କରି ଏମିତି ପଦେ କଥା କହିଲେ ଯେ କାମ ହେବ ନା ଆମେ ତାଙ୍କ ପାଖକୁ ଯିବା ? ପାଚେରୀରେ ଗେଟ୍ ଲଗିଲା ପରେ ଯିନା ନଡ଼ିଆ ଗଛର ଚାରା ସେ ଦେବେ । ଗଛ ପୋତା ହେବ । ନଡ଼ିଆ ଫଳିବ । ହେଲେ ସେତେବେଳକୁ ଭଗି ଅଜା ବଞ୍ଚିଥିଲେ ଏକା ନଡ଼ିଆ ପକା ଚୂଡ଼ାଘଷା ଖାଇବେ

ଆଉ ଗୋଟାଏ ଉଦ୍ଧବ ଟୋକା କହିଲା—ଟଙ୍କା, ମୁହଁ କରିଦିଏ ବଙ୍କା । ଏ ଲୋକଗୁଡ଼ାକୁ ଯେ ଠିକ୍ ପାନେ ଦେଇଛୁ । ତାହା ପଛରେ କୁକୁର ପରି ଭୁକିବେ କିନ୍ତୁ ଅସଲ ଭୋଟ ବେଳେ ଠନ୍ ଠନ୍ ଗୋପାଳ ପାଇଲେ ସବୁ ଭୁଲିଯିବେ……





ପୂଜାରୀ ସକାଳୁ ଟେବୁଲ ଉପରେ ଥୋଇଦେଇ ଯାଇଛି ଗରମ କଫି । କଫି ମଗ୍‌ରୁ ଧୂଆଁ ଥିରିଥିରି ଉଠୁଛି ଉପରକୁ । ହାତରେ ମଗ୍‌ଟା ଧରି ନନ୍ଦିକାଦେବୀ ମୁହଁ ପାଖକୁ ନେଉଛନ୍ତି ହଠାତ୍ ଫୋନ୍‌ଟା କ୍ରିଂ-କ୍ରିଂ ଡାକି ପକାଇଲା ।

କ୍ରାଡ୍‌ଲରୁ ଫୋନ୍ ରିସିଭର୍‌ଟା ଉଠାଇ ନନ୍ଦିକା ଦେବୀ ବିରକ୍ତିରେ ପଚାରି ଉଠିଲେ, "ହ୍ୟାଲୋ, କିଏସେ ?".

"..................."

"ନମସ୍କାର, ନମସ୍କାର । କିଏ ମିଶ୍ରବାବୁ, କ'ଣ ହେଲା ?"

ମୁହଁର ରଙ୍ଗ, କଣ୍ଠର ସ୍ୱର ସବୁ ବଦଳି ଯାଇଥିଲା । ନନ୍ଦିକା ଦେବୀଙ୍କର । କଥାରେ ଥିଲା ଆତ୍ମୀୟତାର ପରଶ ।

"......................"

"ଶୁଣନ୍ତୁ, ସେ ଯାହାହେଉ, ଆପଣ ମୋହରି ଘରର କାମଟା ଶୀଘ୍ର ସାରିଦିଅନ୍ତୁ । ଆର ମାସରେ ଘର ପ୍ରତିଷ୍ଠା ହେବାର ସବୁ ବନ୍ଦୋବସ୍ତ ହୋଇସାରିଛି

“......................”

“ମୁଁ ଜାଣିଛି ଆପଣ ବଡ଼ ପାରିବାର ଲୋକ । ଗଭର୍ମେଣ୍ଟ ଆର୍କିଟେକ୍ ଏବଂ ଇଲେକ୍ଟ୍ରିକାଲ ଏକ୍‌ଜକ୍ୟୁଟିଭ୍ ଇଞ୍ଜିନିୟରଙ୍କୁ ଡାକିବେ । ମୁଁ ଅବଶ୍ୟ ଫୋନ୍ କରି ସେମାନଙ୍କୁ କହିଦେଉଛି । ବାଥ୍‌ରୁମ୍‌ରେ ୱାରିଙ୍ଗ୍ ଏପରି ହେବ ଯେ ବାହାରୁ ଯେପରି କିଛି ଜାଣିହେବ ନାହିଁ । ସାୱାର ବାଥ୍‌ରେ ଥଣ୍ଡା ପାଣି ଆସୁଥିଲେ ପୁଣି ଆଉ ଟ୍ୟାପ୍‌ରେ ଗରମ ପାଣି ଯେମିତି ଆସେ ।

“......................”

“ଓହୋ, ସେ କଥା ମୁଁ ବୁଝିବି । ସେଥିପାଇଁ ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଦେଖୁଛନ୍ତି ତ ମନ୍ତ୍ରୀ ସଦାବେଳେ ବ୍ୟସ୍ତ ରହୁଛନ୍ତି । ସେ ଯଦି ଏଇକଥା ବୁଝୁଥାନ୍ତେ ତେବେ ମୁଁ କାହିଁକି ଏତେ ବ୍ୟସ୍ତ ହେଉଥାନ୍ତି ? ଏଙ୍କ ସାଙ୍ଗ ମନ୍ତ୍ରୀମାନେ ସେମାନଙ୍କର ଘର କଥା ବୁଝୁଛନ୍ତି ନା ନାହିଁ ? କିନ୍ତୁ ଏହାଙ୍କର ଚବିଶ ଘଣ୍ଟା କେବଳ ଦେଶ, ଦେଶ । ସତେ ଯେପରି ଦେଶବାସୀ ଏହାଙ୍କୁ ଠେକଧରିବେ ।

“......................”

“ଏହି ଦେଶରେ କେହି କାହାର ଭଲ ଦେଖେ ? ପଛରୁ ଗୋଡ଼ ଟାଣିବା ଏହି ଲୋକଙ୍କର ଅଭ୍ୟାସ । ଯେତେ ଯାହା କଲେ କେବଳ ସମାଲୋଚନା । ତୁଣ୍ଡରେ ସମସ୍ତଙ୍କର ବସା ବାନ୍ଧିଛି—ନେଇଗଲା, ଖାଇଗଲା, କରିଗଲା

“......................”

ଯାହା କହିଲେ ଅବଶ୍ୟ ସତ୍ୟ । ସେସବୁକୁ ଶୁଣିଲେ କ'ଣ ଦେଶ ଆଗେଇ ପାରିବ ? ପ୍ରକୃତ ଦେଶ ସେବକ ଯିଏ ସେ କ'ଣ କାମ କରିପାରିବ ? ଘରର ଯିଏ ମୁରବୀ ହୁଏ ସେ ଯଦି ସମାଲୋଚନାକୁ ଡରିବ ତେବେ ଘରର ଉନ୍ନତି କେତେବେଳେ କ'ଣ ସମ୍ଭବ ହୋଇଛି ନା ହେବ ?

"........................"

"ହଁ, ଯେଉଁମାନଙ୍କ ହାତରେ ଖଡ଼୍ଗ ସିଝେ ନାହିଁ, ସେହିମାନେ ହିଁ ବେଶୀ ସମାଲୋଚନା କରନ୍ତି ।"

"........................"

"କ'ଣ କହିଲେ ?"

"........................"

"ଆପଣଙ୍କ ନାମରେ ଭିଜିଲାନ୍ସ ଲାଗିଛି, ସେହି ଘରଟା ପାଇଁ ।"

"........................"

ବଦଳି ! ଆପଣଙ୍କର ! ନାହିଁ ସେ କଥା ହୋଇ ପାରିବ ନାହିଁ । ଆମ ଘର ଡିଆଟି ସରିଗଲେ କ'ଣ କାମ ସରିଗଲା ? ମୁଁ ମନ୍ତ୍ରୀଙ୍କୁ କହିବି । ଆପଣ ନିଶ୍ଚିନ୍ତ ରହନ୍ତୁ । ଆମେ ଥିବା ପର୍ଯ୍ୟନ୍ତ ଆପଣ ଏଇ ଭୁବନେଶ୍ୱରରେ ଥିବେ ।

"........................"

"ଦେଖନ୍ତୁ, କାମଟା ଯେପରି ଶୀଘ୍ର 'କମ୍ପ୍ଲିଟ୍' ହୁଏ । କାରଣ ସେହି ଘରଟା ବମଲ ଏଣ୍ଡ କୋଃ କମ୍ପାନୀ ଭଡ଼ା ନେବ । ଘରଟା ପାଇଁ ବହୁତ ଟଙ୍କା ବ୍ୟାଙ୍କରୁ ଲୋନ୍ ହୋଇଛି, ସେସବୁ ତ ସୁଝାସୁଝି ହେବ ? ଘର ଭଡ଼ା ନ ମିଳିଲେ ସେ ଲୋନ୍ ସୁଝା ହେବ କିମିତି ?" ଉଚ୍ଛୁଳା ହସ ପରେ ନନ୍ଦିକା ଦେବୀ ଟେବୁଲ ଉପରେ ଫୋନ୍ ରିସିଭରଟାକୁ ଥୋଇଦେଲେ ।

ଘଣ୍ଟାରେ ନଅଟା ସେତେବେଳକୁ ବାଜି ଗଲାଣି । ଏପର୍ଯ୍ୟନ୍ତ ନନ୍ଦିକା ଦେବୀ ଗାଧୋଇ ନାହାନ୍ତି ।

ମନେ ମନେ ନନ୍ଦିକା ଦେବୀ ଭାବିଲେ—ଘରୁ ବାହାରକୁ ସେ ଜଣେ । ଏବେ ସମସ୍ତେ କଣ ବୁଝୁଛନ୍ତି କେଜାଣି ସବୁ କାମକୁ "ମ୍ୟାଡ଼ାମ୍" । କେତେ କାହାକୁ ଠକାଇବ ? କେତେଦିନ ଏଇପରି ଚାଲିଥିବ ?

ଏପର୍ଯ୍ୟନ୍ତ ସେ ପୂଜା ଘରେ ବସିଛନ୍ତି । ଏବେ କେତେଦିନ ହେବ ସେ ଭକ୍ତ ପାଲଟି ଯାଇଛନ୍ତି । ସକାଳ ସାତଟାରୁ ପୂଜାରେ ବସିଛନ୍ତି ସେ ଦିନ ନଅଟା । ପୂଜା ଘରକୁ ଫୋନ୍ ଲାଇନ୍‌ର ଏକ୍‌ସଟେନ୍‌ସନ ଦିଆଯାଇଛି । ପି. ଏ.ଙ୍କୁ ନିର୍ଦ୍ଦେଶ ଅଛି ନିହାତି ଜରୁରୀ ଫୋନ୍ ଆସିଲେ ଠାକୁର ଘରକୁ କଲ୍ ଦେବେ ।

ନନ୍ଦିକା ଦେବୀ ମନେ ମନେ ହସନ୍ତି । ଧର୍ମରେ ବି ରାଜନୀତି ପୂରିଲାଣି । ଭଗବାନଙ୍କୁ ପ୍ରାର୍ଥନା ନାମରେ ଧର୍ମକୁ ଆଖିଠାର ମାରି ହେଉଛି । ପୁଣି ଭାବିଲେ ମନମୂଳେ ଏ ଜଗତ । ମନ ଦୃଢ଼ ଥିଲେ ଗାଡ଼ିଆ ଗଙ୍ଗା । ଅଫିସରଠାରୁ ସାଧାରଣ ଲୋକମାନେ ତାଙ୍କୁ ଯେପରି ବ୍ୟସ୍ତ କରି ଖାଇଯାଉଛନ୍ତି ସେଥିରୁ ମୁକ୍ତି ପାଇବା ପାଇଁ ଏହା ଏକ ସୁନ୍ଦର ପନ୍ଥା !

କଫି ସେତେବେଳକୁ ଥଣ୍ଡା ହୋଇ ଆସିଲାଣି । ନନ୍ଦିକା ଦେବୀ ପୂଜାରୀକୁ ଡାକି ପକାଇଲେ । ଆଉ କପେ କଫି ପାଇଁ ବରାଦ କରି ଭାବିଲେ—ପ୍ରକୃତରେ ଆମ ଦେଶର ଲୋକଗୁଡ଼ାକ ବଡ଼ ଧର୍ମ ଭୀରୁ । ଠାକୁରଙ୍କ ନାମ କହି ଯାହା କରିଲେ ଲୋକମାନେ ବିଶ୍ୱାସ କରନ୍ତି । ମନେପଡ଼ିଲା ଶ୍ୱଶୁର ଦାଶରଥି ପଟ୍ଟନାୟକଙ୍କର କଥା । ସବୁବେଳେ କୋଥଳୀ ଭିତରେ ହାତ ପଶିଥିବ । ମୁହଁରେ ହରିନାମ ଜପ କରୁଥିବେ । ନାକରୁ ଶିଖା ପର୍ଯ୍ୟନ୍ତ ହରିମନ୍ଦିରର ଚିତା । ସେଥିରେ ନରି ମହାନ୍ତି ସ୍ୱାମୀଙ୍କୁ ଚାଗିଦା । ହଳିଆ ମୂଲିଆଙ୍କ କାମର ବରାଦ । ଇତ୍ୟାଦି ସବୁ ଚାଲିଥାଏ । କଥା କଥାକେ ଈଶ୍ୱରଙ୍କୁ ସାକ୍ଷୀ ଲୋକମାନେ ତାଙ୍କୁ ଭକ୍ତି କରୁଥିଲେ । ଗାଆଁରେ ଥିଲାବେଳେ କେତେ ହଳିଆ ମୂଲିଆଙ୍କ ମୁହଁରୁ ସେ ଶୁଣିଛନ୍ତି ବୁଢାବାବୁ ସାକ୍ଷାତ ଧର୍ମର ଅବତାର ଥିଲେ ।

ପୂଜାରୀ କଫି ଥୋଇଦେଇ ଗଲା । ଗରମ କଫିରୁ ଟିକିଏ ନେଇଁ ଚାଖି ଓଠ ଚାଟୁ କରୁ କରୁ ଫିକ୍ କରି ସେ ହସି ଦେଲେ ! ମନ ଭିତରୁ ଉପରି କିଏ କହି ଉଠିଲା ଆଜିକାଲି ମନ୍ତ୍ରୀ ହେଲେ ତମକୁ ଭକ୍ତ ହେବାକୁ ପଡ଼ିବ । ଯେଉଁ କୌଣସି ବାବୁଙ୍କୁ ମାନେବାକୁ

ହେବ । ତାଙ୍କର ବାର୍ଷିକ ଅନୁଷ୍ଠାନରେ ଥରେ ଅଧେ ଯୋଗ ଦେବ । ଉଦାତ୍ତ କଣ୍ଠରେ ଧର୍ମ ନାମରେ ଭାଷଣ ଦେବ । ଆତ୍ମା, ପରମାତ୍ମା, ଜୀବ, ପରମ ବିଷୟରେ ଦୁପଦ ଏଣୁ ତେଣୁ ଜାଣିଥିଲେ ଚଳିବ । ଯଦି ପାର ମାସକ ଭିତରେ ଥରେ ଧର୍ମ ନାମରେ ଖାଇବା ପିଇବାର ବନ୍ଦୋବସ୍ତ କରାଇ ବନ୍ଧୁ ମିଳନ କରାଇ ପାରିଲେ ନିହାତି ଉତ୍ତମ । ଏବେ ଏଇ କେତେଦିନ ହେବ ସେ ଯେଉଁ ନୂଆ ପନ୍ଥା ଧରିଛନ୍ତି ତାହା ତାଙ୍କୁ ବଞ୍ଚିବା ପାଇଁ ବେଶ୍ ଖୋରାକ୍ ଯୋଗାଇ ଦେଇ ପାରିଛି ।

ହଠାତ୍ ପିଅନ ପଣି ଆସି ଚିଠି ଖଣ୍ଡିଏ ଦେଇଗଲା । ଚିଠି ଖଣ୍ଡି ଫିଟାଇ ପଢ଼ିଲେ ନନ୍ଦିକା ଦେଈ । ଗୁମାସ୍ତା ଲେଖିଛନ୍ତି ମାଆ, ଏ ବର୍ଷ ଚାଷୀମାନେ ଆଇନ ଅନୁସାରେ ଧାନ ଦେବାକୁ କହୁଛନ୍ତି । ଯେତେ କହିଲେ ଆଦୌ ଶୁଣୁ ନାହାଁନ୍ତି । ସେଥି ପାଇଁ ଯଥେଷ୍ଟ ଆଗରୁ ସତର୍କ ହେବା ପାଇଁ ଜଣାଇଲି ।

ଚିଠି ଖଣ୍ଡି ପଢ଼ି ନନ୍ଦିକା ଦେଈ ହୋ ହୋ ହୋଇ ହସି ଉଠିଲେ ।

ମନେ ମନେ ନନ୍ଦିକା ଦେଈ ଭାବିଲେ ବିଚ୍ଛୁ ମନ୍ତ୍ର ନ ଜାଣି ସାପ ଗାତରେ ହାତ ପୂରାଇଲେ ଅବସ୍ଥା କ'ଣ ହେବ ଜାଣିନ ବୋଧହୁଏ ? ପୈତୃକ ପ୍ରାଣ ପ୍ରତି ମମତା ରଖ । ପିଲାମାନଙ୍କ କଥା ମନକୁ ଆଣ । ଯେଉଁ ଲଫଙ୍ଗା ଟୋକାଙ୍କ ଶିକ୍ଷାରେ ପଡ଼ିଛ ସେମାନେ ରାଜନୀତିର "ରା" ଅକ୍ଷର ଶିଖିବାକୁ ବହୁତ ସମୟ ବାକି ଅଛି । ସେମାନଙ୍କୁ କହିବ ଭାତ ଥିଲେ କେତେ କାଉ, କିନ୍ତୁ କାଉ ଥିଲେ କ'ଣ କେତେ ଭାତ ?





ପବିତ୍ର ଗାନ୍ଧି ଜୟନ୍ତୀ

ନରହରପୁର ଗ୍ରାମପଞ୍ଚାୟତରେ ଏକ ମନୋଜ୍ଞ ପରିବେଶ ଭିତରେ ସଭାଟି ଆୟୋଜିତ ହୋଇଥାଏ । ସେହି ସଭାରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥାନ୍ତି ମନ୍ତ୍ରୀ ଦୁଷ୍ମନ୍ତ ପଟ୍ଟନାୟକ । ସେଦିନର ସଭାର ବିଶେଷ ଆକର୍ଷଣ ହେଉଚ୍ଛି ସମଗ୍ର ଓଡ଼ିଶାରେ ଶ୍ରେଷ୍ଠ ବିବେଚିତା ହୋଇଥିବା ଗ୍ରାମସେବିକା କୁନ୍ତଳା ନାଏକଙ୍କୁ ମାନପତ୍ର ସହ ପୁରସ୍କାର ପ୍ରଦାନ କରାଯିବ ।

ନିଜ ପଞ୍ଚାୟତର ଗ୍ରାମସେବିକା ଶ୍ରେଷ୍ଠ ବୋଲି ବିବେଚିତା ହୋଇଛନ୍ତି ଏଥିପାଇଁ ସରପଞ୍ଚଙ୍କର ଗୌରବ କହିଲେ ନ ସରେ । ମାତ୍ର ଯେପରି ଗର୍ବରେ ସେ ଫାଟି ପଡୁଥାନ୍ତି । ଏଇଥର ମନ୍ତ୍ରୀଙ୍କଠାରୁ ପଞ୍ଚାୟତର ଉନ୍ନତି ପାଇଁ ଅଧିକା କିଛି ଅର୍ଥ ମଞ୍ଜୁର କରାଇ ପାରିବେ । ସେଥି ପାଇଁ ସେ ଗାଆଁ ଗାଆଁ ବୁଲି ପ୍ରଚାର କରି ସଭା ପାଇଁ ଲୋକ ସଂଗ୍ରହ କରିଛନ୍ତି ।

ମଭାଟି ଲୋକ ଗହଳିରେ ଫାଟି ପଡୁଥାଏ ।

ଏହି ସଭାକୁ ଆସି କୁନ୍ତଳା ନିଜକୁ କିପରି ଖାପଛଡ଼ା ମନେ କରୁଥିଲା । ଦେହରେ ତାହାର ଝାଳ କଣ୍ଟି ଆସୁଥିଲା ସେ ତ ପୁରସ୍କାର ଆଶାରେ କାମ କରି ନଥିଲା । ସରକାରୀ ଗୃହସେବୀ କରିଥିଲି । ସେଥି ପାଇଁ ମାସକୁ ମାସ ଦରମା ନେଉଛି । ଏଥି ପାଇଁ ଏତେ ସମ୍ବର୍ଦ୍ଧନାର ଆୟୋଜନ କାହିଁକି ? ସେ ତ କଦାପି ଏହିଭଳି ପରିସ୍ଥିତିକୁ ଆଶା କରି ନ ଥିଲା ।

ବାବୁ ଆସିବେ ବୋଲି ଜାଣିଥିଲେ ସେ ଏହି ସଭାକୁ ଆଦୌ ଆସି ନଥାନ୍ତା । କିପରି ସେ ବାବୁଙ୍କୁ ସାମ୍ନା ହେବ ? ବାବୁ ତ ନିଶ୍ଚୟ ଚିହ୍ନି ପକାଇବେ ?

କୁନ୍ତଳା ମନରୁ ଯେପରି କିଏ କହି ଉଠିଲା ଗୃହସେବୀ କରିବା ଲୋକର ସ୍ୱାଧୀନତା କୁଆଡ଼ୁ ଆସିଲା ? ତୋହରି ଲାଗି ଏତେ ସାଜସଜ୍ଜା, ଏତେ ଜାକଜମକ, ଏଥିରେ ତୁ କିପରି ନ ଆସି ରହିପାରି ଥାନ୍ତୁ ? କିଏ ତୋତେ ଛୁଟି ଦେଇଥାନ୍ତା ?

ପୁଣି ପର କ୍ଷଣରେ ମନରେ ଚଞ୍ଚଳତା ଦେଖା ଦେଲା, ଭାବିଲା ଭଗବାନ ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ । ରଙ୍କ ଦୁଆରେ ରାଜା କୁଣିଆ ପରି ବାବୁ ଆଜି ତା ପାଖକୁ ଆସୁଛନ୍ତି । ତାଙ୍କୁ ଆଦର ଅଭ୍ୟର୍ଥନା ନ କରି ସେ କିପରି କବାଟ ବନ୍ଦ କରିଦେବ ? ସେ କଥା ନ କହନ୍ତୁ, ନ ଚିହ୍ନନ୍ତୁ; ଚିହ୍ନିକରି ସୁଦ୍ଧା ଘୃଣା କରନ୍ତୁ, କିନ୍ତୁ ଏଇ ଆଖି ଦୁଇଟା ପବିତ୍ର ହେବ ତାଙ୍କୁ ଦର୍ଶନ କରି । ତାଙ୍କ ବ୍ୟତୀତ ତାର ବଡ଼ ଠାକୁର କିଏ ଆଉ ? ତାଙ୍କର ପାଦତଳେ ଏ ତନୁ, ମନ ସବୁ ସେ ଅର୍ପି ଦେଇଛି ।

କୁନ୍ତଳା ଛାତି ଦପ୍ ଦପ୍ ହୋଇ ପଡ଼ିଲା କି ଉଠିଲା । ସତେ କି କିଏ ଗୋଟାଏ ହାତୁଡ଼ି ଧରି ପିଟି ଚାଲିଛି ।

ଠିକ୍ ସମୟରେ ମନ୍ତ୍ରୀ ଆସିଲେ । ସଭା ଆରମ୍ଭ ହେଲା । ସରପଞ୍ଚ ତାହାଙ୍କର ସ୍ୱାଗତ ଭାଷଣରେ ମନ୍ତ୍ରୀଙ୍କୁ ସମ୍ବର୍ଦ୍ଧନା ଜଣାଇବା ସଙ୍ଗେ ସଙ୍ଗେ କୁନ୍ତଳାକୁ ଅଭିବାଦନ ଜଣାଇ, ନରହରିପୁର ପଞ୍ଚାୟତ ଅଞ୍ଚଳର ଅଭାବ ଅସୁବିଧା ପ୍ରତି ମନ୍ତ୍ରୀଙ୍କର ଦୃଷ୍ଟି ଆକର୍ଷଣ କଲେ ।

ଏହା ପରେ ମନ୍ତ୍ରୀ ଦୁଷ୍ମନ୍ତ ପଟ୍ଟନାୟକ ତାଙ୍କ ଭାଷଣ ପ୍ରସଙ୍ଗରେ କହିବାକୁ ଆରମ୍ଭ କଲେ : ଭାଇମାନେ, ଆଜି ମହାତ୍ମା ଗାନ୍ଧିଙ୍କର ପବିତ୍ର ଜନ୍ମଦିନ । ସେ ଯେ କେବଳ ଭାରତର ସ୍ୱାଧୀନତା ପାଇଁ ଆନ୍ଦୋଳନ କରିଥିଲେ ତାହା ନୁହେଁ ବରଂ ସମାଜର ଦୁର୍ବଳ ଏବଂ ଅନୁନ୍ନତ ଶ୍ରେଣୀ ଯେଉଁ ହାଡ଼ି, ପାଣ, ଡମମାନଙ୍କୁ ଆମେ ଅସ୍ପୃଶ୍ୟ କହି ଘୃଣା କରୁ ସେମାନଙ୍କୁ ସେ ଭଲ ପାଉଥିଲେ । ସେମାନଙ୍କୁ ସେ ହରିଜନ ବୋଲି ଆଖ୍ୟା ଦେଲେ । ସେମାନେ ତାଙ୍କର ଅତି ଆଦରର ଲୋକ ଥିଲେ । ବିରଲା ହାଉସରେ ସେ ରହିବା ଅପେକ୍ଷା ହରିଜନ ବସ୍ତିରେ ରହିବାକୁ ଭଲ ପାଉଥିଲେ ମୁଁ ଜାଣି ଖୁସି ହେଲି ଯେ ନରହରପୁର ଗ୍ରାମପଞ୍ଚାୟତରୁ ଯେଉଁ ଭଦ୍ର ମହିଳା ଆଜି ସମଗ୍ର ଓଡ଼ିଶାରେ ଶ୍ରେଷ୍ଠ ଗ୍ରାମସେବିକା ରୂପେ କୃତିତ୍ୱ ଅର୍ଜନ କରି ପାରିଛନ୍ତି ସେ ହେଉଛନ୍ତି ଜାତିରେ ହରିଜନ ।

ଆଦିବାସୀ ଓ ହରିଜନ ହେଉଛନ୍ତି ଆମ ସମାଜର ସବୁଠାରୁ ଅନଗ୍ରସର ସମ୍ପ୍ରଦାୟ । ସେମାନଙ୍କ ପ୍ରତି ଆମ ସମସ୍ତଙ୍କର କର୍ତ୍ତବ୍ୟ ଅଛି । ହରିଜନମାନେ ଆମର ଭାଇ । ସେମାନେ ଆଦୌ ଅଛୁଆଁ ନୁହଁନ୍ତି ।

ଏହି ପ୍ରସଙ୍ଗରେ ମୁଁ ଆପଣମାନଙ୍କୁ କେତୋଟି କଥା କହିବି ଆମେମାନେ ହିନ୍ଦୁ, ଭାଗବତ ଆମର ପ୍ରିୟ ଧର୍ମ ପୁସ୍ତକ । ଆମେ ତାହାକୁ ଗାଦିରେ ରଖି ପୂଜା କରୁ । ସେଥି ପାଇଁ ପ୍ରତି ଗାଆଁରେ ଭାଗବତ ଟୁଙ୍ଗୀ । ଦିନଯାକର ଖଟଣି ପରେ ସନ୍ଧ୍ୟାବେଳେ ଗ୍ରାମବାସୀମାନେ ଏକାଠି ହୋଇ ସେହି ଭାଗବତରୁ ଅଧ୍ୟାୟେ କି ଦୁଇ ଅଧ୍ୟାୟ ଶୁଣନ୍ତି । ଧର୍ମ ଅର୍ଜନ ସଙ୍ଗେ ସଙ୍ଗେ ଭଲ ମଣିଷ ହେବା ପାଇଁ ଦୁଇ ଗୁରୁପଦ ଉପଦେଶ ଏଥିରୁ ପାଆନ୍ତି । ସେହି ଭାଗବତର ବାଣୀ ହେଲା : 'ସକଳ-ଘଟେ ନାରାୟଣ'' । ମହାପୁରୁଷ ଜଗନ୍ନାଥ ଦାସଙ୍କର ଏହି ବାଣୀର ତାତ୍ତ୍ୱିକ ଅର୍ଥ ହେଲା : ମନୁଷ୍ୟ କ'ଣ ପ୍ରତ୍ୟେକ ଜୀବ ଜନ୍ତୁମାନଙ୍କ ଭିତରେ ଈଶ୍ୱର ବିଦ୍ୟମାନ ଅଛନ୍ତି । ତେଣୁ ପ୍ରତ୍ୟେକଙ୍କୁ ସ୍ନେହ କରିବା ଉଚିତ୍ । କିନ୍ତୁ ଆମେମାନେ ଯେଉଁମାନେ ପ୍ରତିଦିନ ଏହି ବାଣୀକୁ ଶୁଣୁ, ଜୀବଜନ୍ତୁ

ତ ଦୂରର କଥା ଆମ ଭଳି ମନୁଷ୍ୟଙ୍କୁ ମଧ୍ୟ ମଣିଷ ଭଳି ଦେଖିବାକୁ ଇଚ୍ଛା କରୁ ନାହୁଁ । ଛୁଆଁ ଅଛୁଆଁ ଭେଦ ଭାବ ସୃଷ୍ଟି କରି ସେମାନଙ୍କୁ ଘୃଣା କରୁ । ପୋଥିର ବାର୍ଣ୍ଣା ଆମ କାନରେ ବାଜେ ସତ କିନ୍ତୁ ଚିତ୍ତକୁ ଛୁଏଁ ନାହିଁ ।

ଏହି ଛୁଆଁ, ଅଛୁଆଁ ଭେଦ ଭାବ ସମାଜ ପ୍ରତି କେତେ ଅନିଷ୍ଟକର ସେହି କଥା ବୁଝି ପାରିଥିଲେ ଜାତିର ପିତା ମହାତ୍ମା ଗାନ୍ଧି । ତେଣୁ ସେ କହୁଥିଲେ ସମଗ୍ର ଭାରତକୁ ଏକ ପରିବାରରେ ପରିଣତ କରିବାକୁ ହେଲେ ଏହି ଅସ୍ପୃଶ୍ୟତାକୁ ଦୂର କରିବାକୁ ହେବ । ସେଥି ପାଇଁ ମନୁଷ୍ୟ ମାତ୍ରେ ସମସ୍ତେ ସମାନ; ଯଦିଓ ସେମାନେ ବପୁ, ଉଚ୍ଚତା, ବର୍ଣ୍ଣ ଓ ବୁଦ୍ଧିରେ ସମାନ ନୁହଁନ୍ତି । ଏହି ସବୁ ପ୍ରଭେଦ ସାମୟିକ ଓ ଭିତ୍ତିଶୂନ୍ୟ । ଏହି ପାର୍ଥିବ ଶରୀର ଭିତରେ ଲୁକ୍‌କାୟିତ ଆତ୍ମା ସମସ୍ତ ଅଞ୍ଚଳର ନରନାରୀଙ୍କଠାରେ ସମାନ । କେହି ଉଚ୍ଚ ନୁହଁନ୍ତି କି କେହି ନୀଚ ନୁହଁନ୍ତି ସମସ୍ତେ ସେହି ଗୋଟିଏ ସ୍ରଷ୍ଟାର ସନ୍ତାନ ।

ସମାଜରେ ଆଗରୁ ଏହି ଶ୍ରେଷ୍ଠ ବଡ଼ ଭେଦ ଭାବ ନ ଥିଲା । ତାହାକୁ ଆମେମାନେ ସୃଷ୍ଟି କରିଛେ । ଆପଣମାନେ ଶୁଣିଲେ ଆଶ୍ଚର୍ଯ୍ୟ ହେବେ ଯେ ହିନ୍ଦୁ ଧର୍ମର ସଂସ୍କୃତି ଏବଂ ଐତିହ୍ୟର ପ୍ରତୀକ ନୀଳାଚଳବାସୀ ଜଗତର ନାଥ ଜଗନ୍ନାଥ ଏହି ଭେଦଭାବକୁ ଘୃଣା କରି ପତିତପାବନ ନାମ ନେଇଛନ୍ତି । ସେଥି ପାଇଁ ଶ୍ରୀକ୍ଷେତ୍ରରେ ବ୍ରାହ୍ମଣ, ଚଣ୍ଡାଳ ବସି ଏକତ୍ର ମହାପ୍ରସାଦ ସେବନ କରନ୍ତି । ନିଜେ ନୀଳମାଧବ ବିଶ୍ୱାବସୁ ଶବର ହାତରେ ଖାଇଥିଲେ । ସାରା ଜଗତର ନାଥଙ୍କର ଘରଣୀ ମହାଲକ୍ଷ୍ମୀ ଠାକୁରାଣୀ ଶ୍ରୀୟା ଚଣ୍ଡାଳୁଣୀ ଦୁଆରେ ପୂଜା ଗ୍ରହଣ କରିଥିଲେ । ରାମାୟଣରେ ପଢ଼ିଥିବ ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର ଶବରୀର ଅଇଁଠା କୋଳି ଚାଖିଥିଲେ । ଗୁହକ ଶବର ତାଙ୍କର ମିତ୍ର ଥିଲା । ଜଗନ୍ନାଥଙ୍କର ପରମ ଭକ୍ତ ଥିଲା ଦାସିଆ ବାଉରୀ । ତାହାର ହାତରୁ ସେ ଆପଣା ହାତରେ ନଡ଼ିଆ ନେଇଥିଲେ । ଏତେ କଥା ପୁରାଣରେ ପଢ଼ି, ଆମେ ଯଦି ସମସ୍ତେ ମନୁଷ୍ୟଙ୍କୁ ଆମ ଭଳି ଦେଖି ନ ପାରିବା ମନରେ ସେମାନଙ୍କୁ ଘୃଣା କରିବା ତେବେ ସ୍ୱାମୀ ବିବେକା-

ନନ୍ଦଙ୍କ ଭାଷାରେ —ଯେଉଁମାନେ ଉପଦେଶ ଗ୍ରହଣ କରିବାକୁ ଅନିଚ୍ଛୁକ, ନୂତନର ଆବିଷ୍କାର ନିମନ୍ତେ ଯେଉଁମାନଙ୍କର ଆଗ୍ରହ ନାହିଁ, ସୌନ୍ଦର୍ଯ୍ୟକୁ ଯେଉଁମାନେ ସ୍ୱୀକାର କରନ୍ତି ନାହିଁ, ଆଖି ଥାଇ ଦେଖିବାକୁ ଯେଉଁମାନେ ପରାଙ୍ମୁଖ ସେମାନେ ମାନବିକ ଅଧିକାର ହରାଇ ଜନ୍ମାନ୍ଧ ଭଳି ଏ ପୃଥିବୀରେ ବାସ କରନ୍ତି ।

ଏକା ଲୟରେ ମାଇକ୍ ପାଖରେ ଅବିଶ୍ରାନ୍ତ ଭାବରେ ଭାଷଣ ଦେଇ ଚାଲିଥାନ୍ତି ଦୁଷ୍ମନ୍ତବାବୁ । ତନ୍ମୟ ହୋଇ ତାଙ୍କୁ ଲକ୍ଷ୍ୟ କରୁଥାଏ କୁନ୍ତଳା । ବାବୁ କ'ଣ କହି ଯାଉଛନ୍ତି ସେଗୁଡ଼ାକ ତାହାର ଏ କାନରେ ପଶି ସେ କାନ ବାଟରେ ଚାଲି ଯାଉଥିଲା । ସେ କେବଳ ଲୋଭିଲା ଆଖିରେ ତାହାର ବାବୁଙ୍କୁ ଦେଖୁଥିଲା । ତାକୁ ମନେ ହେଉଥିଲା ତା ବାବୁ ଠିକ୍ ପୂର୍ବ ଭଳି ଅଛନ୍ତି । କିଛି ବଦଳି ଯାଇ ନାହାଁନ୍ତି । ସେହି ସୁଠାମ ତନୁ, ସେହି ସୁନ୍ଦର ଗୃହାଣୀ, ସେହି କଅଁଳ ବଚନ ସବୁ ଅବିକଳ ଅଛି । ବରଂ ବାବୁଙ୍କ ତୁଳନାରେ ସେ ବୁଢ଼ୀ ହୋଇ ଯାଇଛି ।

ଦୁଷ୍ମନ୍ତବାବୁ ଗପି ଚାଲିଥାନ୍ତି ଆଜି ଯେଉଁ ହରିଜନ ମହିଳା ସମଗ୍ର ଓଡ଼ିଶା ସ୍ତରରେ ଶ୍ରେଷ୍ଠ ଗ୍ରାମସେବିକା ରୂପେ ପୁରସ୍କୃତା ହେବାକୁ ଯାଉଛନ୍ତି, ସେ ବଡ଼ ହୋଇ ପାରିଛନ୍ତି କେବଳ ମଣିଷକୁ ଭଲ ପାଇ କରି । ତାଙ୍କ ମନରେ ଭେଜାଲ ନାହିଁ । ତାଙ୍କ ଆଖିରେ ଜନତା ଥିଲେ ଜନାର୍ଦ୍ଦନ ରୂପୀ । ତେଣୁ ସମସ୍ତଙ୍କର ସେବା ନିର୍ବିକାର ଚିତ୍ତରେ କରିବାକୁ ସେ ସକ୍ଷମ ହୋଇ ପାରିଛନ୍ତି । ତାଙ୍କର କାର୍ଯ୍ୟର ତୁଳନା ନାହିଁ । ମୁଁ ଆଶା କରୁଛି ତାଙ୍କ ଭଳି ଯଦି ତାଙ୍କର ଅନ୍ୟ ସହକର୍ମୀ ଓ ସହକର୍ମିଣୀମାନେ କାର୍ଯ୍ୟ କରନ୍ତେ ତେବେ ସେହିମାନେ ମଧ୍ୟ ହେବେ············

ଲାଜରେ କୁନ୍ତଳାର ଗଣ୍ଡ ଲାଲ ପଡ଼ିଗଲା । ମନେ ମନେ ଭାବିଲା ଛିଃ, ବାବୁ ଏଗୁଡ଼ାକ କ'ଣ ଗପି ଚାଲିଛନ୍ତି ? ସବାଦିବେଳେ ଠେକାଠେକି କରି କହିବାର ଖୋଇ ସେ ଆଜି ପର୍ଯ୍ୟନ୍ତ ସୁଦ୍ଧା ଛାଡ଼ି

ପାରିଲେ ନାହିଁ । ନିଜର ଲୋକଙ୍କୁ ଏପରି ନ କହିଲେ କ'ଣ ଚଳିବ ନାହିଁ ?

ପୁଣି ପରକ୍ଷଣରେ ମନ ଭିତରୁ ତା'ର କିଏ ଛିଟଲଇ କରି କହି ଉଠିଲା ଆରେ, କଥାରେ ଅଛି ପରା, ଯାହାକୁ ସିଏ ନା ବରିକୁ ଗୃଉଳ ଡିନ୍‌ଲଇ ଦେ । ତୋର ଯେତେବେଳେ ବାବୁ, ତୋତେ ପରଶଂସିବେ ନାହିଁ ତ ଆଉ ଚେଳ କରି କହିବେ କାହାକୁ ? ଯେତେବେଳେ ସୁଦ୍ଧା ନିଜର ଲୋକକୁ କିଏ ଭୁଲିପାରେ ? ତାଙ୍କ କୁନ୍ତଳା ଆଜି ଫାଷ୍ଟ ହୋଇଛି । ପୁରସ୍କାର ପାଇଛି । ସେଥି ପାଇଁ ଗର୍ବରେ ସେ ମାଇକ୍ ଫିଟାଇ ଭାଷଣ ଦେଇ ଚାଲିଛନ୍ତି ।

ହାଠାତ୍ ହାତ ତାଳମାଡ଼ରେ କୁନ୍ତଳାର ଭାବନାରେ ବାଧା ପଡ଼ିଲା । ସେ ଦେଖିଲା ବାବୁ ଭାଷଣ ଦେଇ ବସି ପଡ଼ିଲେଣି

ବି. ଡ଼ି. ଓ. ସାହେବ ମାଇକ୍ ପାଖରେ ଠିଆ ହେଲେଣି ।

ଅନେକ ଦିନ ତଳର କଥା କୁନ୍ତଳାର ମନେ ପଡ଼ିଲା । ସ୍କୁଲରେ ପାଠ ପଢୁଥିଲା ବେଳେ ଏହିଭଳି ପ୍ରତିବର୍ଷ ପୁରସ୍କାର ବିତରଣୀ ଉତ୍ସବମାନ ଅନୁଷ୍ଠିତ ହେଉଥିଲା । ସ୍କୁଲ ବିଭାଗର ଡେପୁଟି ଇନ୍‌ସପେକ୍ଟର ଅବା ଜିଲ୍ଲା ବିଭାଗର ଇନ୍‌ସପେକ୍ଟର ମହାଶୟ ପ୍ରଧାନ ଅତିଥି ହୋଇ ଯୋଗ ଦେଉଥାନ୍ତି । ଏହିଭଳି ପିଲାମାନଙ୍କୁ ଉପଦେଶ ଦେଉଥିଲେ । ଆଉ ଭାଷଣ ପରେ ପୁରସ୍କାର ବିତରଣ ଉତ୍ସବ ଅନୁଷ୍ଠିତ ହେଉଥିଲା । ପିଲା ଦିନେ ଭଲ ପାଠ ପଢୁଥିଲା ବୋଲି ତାହାକୁ ଅନେକ ଥର ପ୍ରଧାନ ଅତିଥିଙ୍କ ହାତରୁ ପୁରସ୍କାର ଆଣିବାକୁ ପଡୁଥିଲା । ସେତେବେଳେ ସେ ପୁରସ୍କାର ଗ୍ରହଣ କରି ସାରି ମୁଣ୍ଡ ନୁଆଇଁ ନମସ୍କାର କରୁଥିଲା । କିନ୍ତୁ ଆଜିକାଲି ପିଲାଏ କେବେ କେମିତି ନମସ୍କାର କଲେ କରୁଥିବେ କିନ୍ତୁ ହ୍ୟାଣ୍ଡସେକ୍ କରୁଛନ୍ତି ଅନେକ ଥର ।

ବର୍ତ୍ତମାନ ସେ ମଞ୍ଚ ଉପରକୁ ଯାଇ ବାବୁଙ୍କ ହାତରୁ ମାନପତ୍ର ଓ ପୁରସ୍କାର ଆଣିଲାବେଳେ କ'ଣ କରିବ ? ମୁଣ୍ଡ ନୁଆଇଁ ନମସ୍କାର ନା ହ୍ୟାଣ୍ଡସେକ୍ ?

ହସ ମାଡ଼ିଲା କୁନ୍ତଳାକୁ । ଏତେ ମନ୍ତ୍ରୀ ଥାଉ ଥାଉ ଆମ ଡ଼ି. ଡ଼. ଓ କୁ କ'ଣ ମନ୍ତ୍ରୀ ମିଳିଲେ ନାହିଁ ଯେ ଏହି ନଟବର ନାଗରଙ୍କୁ ଆଣିବାକୁ ଥିଲା ? ସେମାନେ ସିନା ଜାଣି ନାହାନ୍ତି ଏହାଙ୍କର ଗୁଣ ? କମ୍ ବେଲଆ କି ? ହସାଇବାକୁ ଇଚ୍ଛା କଲେ ହସାଇ ହସାଇ ମାରିଦେବେ ଆଉ ଚଡ଼ାଇବାକୁ ଯଦି ଚାହିଁବେ ନା, ତେବେ ଋଷି ମୁଣ୍ଡର ଜଟ ଛିଣ୍ଡାଇ ମରିବ ।

କୁନ୍ତଳାର ଛାତିର ସ୍ପନ୍ଦନ ଦ୍ରୁତ ହେବାରେ ଲଗିଥାଏ । ଭାବୁଥାଏ କିପରି ଯାଇ ବାବୁଙ୍କଠାରୁ ପୁରସ୍କାର ଗ୍ରହଣ କରିବ । ମୁହଁକୁ ଚାହିଁ ଯଦି ସେ ଟିକିଏ ହସି ଦିଅନ୍ତି, ସେଇତକ ଯଥେଷ୍ଟ·········

ଯଦି ବାବୁଙ୍କର ହସ ଦେଖି ସେ ଫେଁ' କରି ହସି ଦିଏ ତେବେ ଡ଼ି. ଡ଼. ଓ. ଏବଂ ଏସ୍. ଡ. ଓ. ପ୍ରଭୃତି ହାକିମମାନଙ୍କର ଧାରଣା ତାହାପ୍ରତି କ'ଣ ନ ହେବ ? ମନ୍ତ୍ରୀମାନଙ୍କୁ ସିନା ଚୁରି ଖୁନ୍ ମାଫ୍ । ଯାହା କରି ପାରିବେ ଓ କହି ପାରିବେ କିନ୍ତୁ·········

ଏହି ସମୟରେ ମାଇକ୍ ପାଖରେ ଠିଆ ହୋଇ ମାନପତ୍ର ପଢ଼ିଲେ ଡ଼ି. ଡ଼. ଓ. ସାହେବ ।

କୁନ୍ତଳାକୁ ନିମନ୍ତ୍ରଣ ଆସିଲା ।

ମନରେ ବହୁତ ଆଶା ଓ ଆଶଙ୍କା ଧରି ଏକ ସ୍ପନ୍ଦିତ ହୃଦୟରେ କୁନ୍ତଳା ମଞ୍ଚ ଉପରକୁ ଉଠିଲା ।

ଡ଼ି. ଡ଼. ଓଙ୍କ ହାତରୁ ମାନପତ୍ର ନେଇ କୁନ୍ତଳା ହାତକୁ ବଢ଼ାଇ ଦେଲେ ଦୁଷ୍ମନ୍ତବାବୁ । ପଦେ କଥା ମଧ୍ୟ ତାହାଙ୍କ ପାଟିରୁ ବାହାରିଲା ନାହିଁ । ଟିକିଏ ହସ ସୁଦ୍ଧା ଓଠ ଉପରେ ଉଙ୍କିମାରି ପଡ଼ିଲା ନାହିଁ । କମ୍ପିତ ହସ୍ତରେ ମାନପତ୍ରଟି ଗ୍ରହଣ କଲା କୁନ୍ତଳା । ସେ ନମସ୍କାର କରି ପାରିଲା ନାହିଁ କିମ୍ବା ହ୍ୟାଣ୍ଡସେକ୍ ମଧ୍ୟ କରି ପାରିଲା ନାହିଁ ।

କୁନ୍ତଳା ମୁଣ୍ଡ କ'ଣ କିପରି ହୋଇଗଲା । ତାହାକୁ ଚାରିଆଡ଼ ଅନ୍ଧକାର ଦିଶିଗଲା । ମନେ ମନେ ଭାବିଲା ଏତେ ଆଶାଆକାଂକ୍ଷା,

ଏତେ କଳ୍ପନା ତାହାର ମୁହୂର୍ତ୍ତରେ ପାଣି ଫାଟି ଗଲା । ଏତେ ଦିନର ଭାବଲାଭ, ସ୍ନେହ, ସୋହାଗ, ମଣିଷ କ'ଣ ଏହିପରି ଭୁଲିଯାଏ ? ଏହି ପୁରସ୍କାର ଆଳରେ ସେ କ'ଣ ତାକୁ ତିରସ୍କାର କରିବା ପାଇଁ ଏଠାକୁ ଆସିଥିଲେ ?

ମଞ୍ଚ ଉପରୁ ତଳକୁ ଆସିବାକୁ ଉପକ୍ରମ କରୁ କରୁ କୁନ୍ତଳା ସେହିଠାରେ ମୂର୍ଚ୍ଛିତା ହୋଇ ପଡ଼ିଗଲା ।

ଯେତେବେଳେ କୁନ୍ତଳାର ହୋସ ଆସିଲା ସେ ଆଖି ଖୋଲି ଚାରିଆଡ଼କୁ ଚାହିଁ ଦେଖିବାକୁ ପାଇଲା ତାଙ୍କ ଅଫିସ ଷ୍ଟାଫ୍ ତାକୁ ଘେରି ଠିଆ ହୋଇଛନ୍ତି । ସଭା କେତେବେଳୁ ଭାଙ୍ଗି ଗଲାଣି । ମନ୍ତ୍ରୀ ଏବଂ ଅନ୍ୟ ହାକମ ହୁକୁମା ଯିଏ ଯୁଆଡ଼େ ଗଲେଣି । ସେ ତାହାର ବସାରେ ଶୋଇଛି ।

ଜଣେ ଶୁଭେଚ୍ଛୁଙ୍କ କଥାର ଭଗ୍ନାଂଶ କଥା ତା କାନରେ ବାଜିଲା ନାଗାଲଣ୍ଡର ଲକ୍ଷେ ଟଙ୍କାର ଲଟାରୀ ଫଳ ଘୋଷଣା ପରେ ତାଙ୍କ ଗାଆଁର ଜଣେ ଲୋକ ଏହିଭଳି କୁଆଡ଼େ ଆନନ୍ଦରେ ମୂର୍ଚ୍ଛା ହୋଇ ଯାଇଥିଲା ।

ଶୁଣିବା କାନର ଧର୍ମ । ଥରେ କାନରେ ଶବ୍ଦ ପାଇଲେ ତାହା ଏକବାରେ ମନରେ ପହଞ୍ଚିବ । ମନରେ ତାହାପରେ ପ୍ରତିକ୍ରିୟା ଆରମ୍ଭ ହୁଏ ।

କୁନ୍ତଳା ମନରେ ଯେଉଁ ପ୍ରତିକ୍ରିୟା ହେଉଥିଲା ତାହା ଓଠ ଖୋଲି ସେ ପ୍ରକାଶ କରିବାକୁ ଅକ୍ଷମ ଥିଲା । କାରଣ ଅଜାଗା ଘାଆ ଦେଖି ହୁଏ ନାହିଁ କି ଦେଖାଇ ହୁଏ ନାହିଁ ।

ଆଖିରୁ ତାର ବରଷାର ଧାରି ପରି ଲୁହ ଝର ଝର ହୋଇ ବହି ଚାଲିଥାଏ ।

ସାଙ୍ଗସାଥୀ ଗୃହକେଣ୍ଟିଆମାନେ ତାହାକୁ ଆନନ୍ଦାଶ୍ରୁ କହୁଥିଲେ ବେଳେ ସେ କ'ଣ ସେମାନଙ୍କ କଥାକୁ ସମର୍ଥନ କରି ପାରିବ ?

ସେଥିପାଇଁ କଥାଅଛି : ବନ ପୋଡ଼ିଗଲେ ସମସ୍ତେ ଜାଣନ୍ତି କିନ୍ତୁ ମନ ପୋଡ଼ିଗଲେ କେହି କ'ଣ ଜାଣନ୍ତି ?





ବ୍ରାହ୍ମଣ ଶାସନ ।

ଦୁଇ ପାଖରେ ଧାଡ଼ି ଧାଡ଼ି ନଡ଼ିଆ ଗଛ । ପ୍ରତ୍ୟେକ ଘର ଆଗରେ ଉଚ୍ଚା ମାଟି କମ୍ବା ସିମେଣ୍ଟ ମଣ୍ଡପ । ସେଥିରେ ବାହା, ବ୍ରତଘର ଅନୁଷ୍ଠିତ ହୁଏ । ଅନ୍ୟ ଦିନେ ସାହିର ବୁଢ଼ାମାନେ ବସି ପଶା ଖେଳରେ ମାତିଥାନ୍ତି । ସେହି ଗାଆଁରେ ରହନ୍ତି ତ୍ରିଲୋଚନ ମିଶ୍ର । ବୁଢ଼ା ଠାରୁ ଟୋକାଯାଏ ସମସ୍ତଙ୍କ ତୁଣ୍ଡରେ ସେ କାନ୍ଦୁ ଲୋଚନ ମାଷ୍ଟ୍ରେ ।

ପୁରୁଷ ଉଚ୍ଚର ପିଣ୍ଡା । ତାହା ଉପରେ ପଡ଼ିଥାଏ ସପ ମସିଣା ଖଣ୍ଡିଏ । ବସିଥାନ୍ତି ମାଷ୍ଟ୍ରେ । କାନ୍ଧରେ ଜକ ଜକ ହୋଇ ଜଳୁଥାଏ ଅଳୁଆ ଗୁଡ଼ଳ ପରି ସଫା ପଇତା ମୁଣ୍ଡରେ 'o' ପରି ଚନ୍ଦନ ଟୋପା । ପାଖରେ ଥୁଆ ହୋଇଥାଏ ରୂପା ପାନ ଡବାରେ ଡିବାଏ ପାନ ।

ଦିନ ସେତେବେଳକୁ ରତ ରତ ହେଉଥାଏ ।

ପିଣ୍ଡା ତଳେ ଗାଲରେ ହାତ ଦେଇ ବସିଥାଏ ସାଉଆ ପାଲୁଣୀ ।

ଉଚ୍ଚ ପିଣ୍ଡାରେ ବସି ଗପୁଥିଲେ ଲୋଚନ ମାଷ୍ଟ୍ରେ ।

ମନ କର୍ଣ୍ଣ ଦେଇ ଶୁଣୁଥିଲି ସାରଆ । ସବୁ ପୁରାଣର କଥା । ଶୁଣିବାକୁ ଭଲ ଲାଗୁଥିଲା । ତାହାର ଯେପରି ମନେ ହେଉଥିଲା ସେ କାଳର ମୁନି, ଋଷିମାନେ ମଧ୍ୟ ଆମମାନଙ୍କ ଭଳି ସୁଖ ଦୁଃଖ ଭୋଗୁଥିଲେ । ସଂସାର ଛାଡ଼ି ସନ୍ନ୍ୟାସୀ ହେବା ପାଇଁ ଜଙ୍ଗଲକୁ ଚାଲି ଯାଉଥିଲେ ମଧ୍ୟ ପଛେ ପଛେ ସଂସାର ଯାଇ ସେମାନଙ୍କ ପାଖରେ ପହଞ୍ଚ ଯାଉଥିଲା ।

ଲୋଚନ ମାଷ୍ଟ୍ରେ କହିବା ଆରମ୍ଭ କରିଥିଲେ ତୁ ପରା ସେଦିନ ଦୁଷ୍ମନ୍ତ ଶକୁନ୍ତଳାଙ୍କ କଥା ଶୁଣିଥିଲୁ ? ଯେଉଁଠାରୁ ଅଧା କହିଥିଲି ସେଇଠାରୁ ଆଜି କହୁଛି । ମନ ଦେଇ ଶୁଣ୍ । ଦୁଷ୍ମନ୍ତ ତ ଶକୁନ୍ତଳାଙ୍କୁ କହି କରି ଗଲେ ଯେ, ମୁଁ ଅଯୋଧ୍ୟାକୁ ଫେରିଲା ପରେ ପାତ୍ର, ମନ୍ତ୍ରୀ, ବାଜା, ବଜନ୍ତ୍ରୀ ଧରି ବେଷଣୀ କରି ତୁମକୁ ଆସି ନେଇଯିବି । ତୁମେ ମୋ ସହିତ ଅଯୋଧ୍ୟାର ସିଂହାସନରେ ବସିବ । ରାଣୀ ହେବ । କେତେ ଦାସ ଦାସୀ, ପୋଇଲି ପରିବାରୀ ତୁମ ପାଦ ତଳେ ଖଟିବେ । ସେଠାରେ ତୁମେ ଘିଅ ଖାଇ କ୍ଷୀରରେ ହାତ ଧୋଇବ ।

ସାରଆ ମୁଣ୍ଡ ଟୁଙ୍ଗାରି କହିଲା : ହଁ, ସେଦିନ ପରା କହିଥିଲ ଯେ ରାଜା ଗଲେ ଯେ ଆଉ ଫେରିଲେ ନାହିଁ । ତାଙ୍କୁ ଚାହିଁ ଚାହିଁ ଶକୁନ୍ତଳାର ଆଖିରୁ ପାଣି ମଲା । ଏଣେ ବିଚାରୀର ପେଟରେ ପିଲା ସଞ୍ଚରି, ଖେଳିବାକୁ ଲାଗିଲାଣି । ସେଇଠାରୁ କ'ଣ ହେଲା କହନ୍ତୁ :

ଗଳା ସଫା କରି ଟିକଏ ନାଳ କଫ ବାହାରକୁ ଫିଙ୍ଗିଦେଇ ମାଷ୍ଟ୍ରେ କହିବାକୁ ଆରମ୍ଭ କଲେ ଆଗେ ପେଟରେ ପିଲା ସଞ୍ଚରିଲେ, ସେ ତ ଆପଣା ଛାଏଁ ଗୋଡ଼ ହାତ ଖେଳାଇ ଖେଳିବ । ସେ ଜିନିଷ କ'ଣ ଛପାଇ ହୁଏ ? ସେଥିପାଇଁ କହନ୍ତି ନା ଧାଇ ଆଗରେ ପେଟ ଲୁଚାଇଲେ କ'ଣ ଲୁଚିବ ? କଥା ଜଣା ପଡ଼ିଲା । ସମସ୍ତଙ୍କ ମନରେ ଚମକ ଲାଗିଲା । ଏ'ତ ମୁନି ଆଶ୍ରମ କ'ଣ କରାଯିବ ? ଆଶ୍ରମ ଭିତରେ ଏ ପାପ······

କଣ୍ୱ ମୁନି ଆଶ୍ରମରେ ସେତେବେଳେ ନ ଥିଲେ । କେତେଦିନ ପରେ ସେ ଫେରିଲେ । ସବୁ ଶୁଣିଲେ । କଥାଟାକୁ ଖୁବ୍ ଗୁରୁତ୍ୱ ନ ଦେଇ କହିଲେ : ହଁ ହୋ, ଦୁଷ୍ମନ୍ତ ଏତେବଡ଼ ଅଯୋଧ୍ୟାର ରାଜା, କେତେ ଦାୟିତ୍ୱ ତାଙ୍କ ମୁଣ୍ଡରେ, ଜଞ୍ଜାଳରେ ବୁଡ଼ି ରହି ସେ ହୁଏତ ଭୁଲି ଯାଇ ଥାଇ ପାରନ୍ତି । ଆମେ ଆମ ଆଡ଼ୁ ତାଙ୍କ ପଦାର୍ଥକୁ ତାଙ୍କୁ ଭେଟି ଦେଲେ ସେ କ'ଣ ଫେରାଇ ଦେବେ ?

ଉତ୍କଣ୍ଠାରେ ପ୍ରଶ୍ନ କଲା ସାରିଆ ସେଇଠାରୁ କ'ଣ ହେଲା ସାରେ ?

ଲୋଚନ ମାଷ୍ଟ୍ରେ କହିଲେ : ମୁନି ମାନେ ଯାହା କହନ୍ତି, ତାହା କରନ୍ତି ଦୁଇଜଣ ସଖୀଙ୍କୁ ସାଙ୍ଗରେ ଦେଇ ସେ ଶକୁନ୍ତଳାଙ୍କୁ ରାଜା ଦୁଷ୍ମନ୍ତଙ୍କ ନିକଟକୁ ପଠାଇ ଦେଲେ । ସଖୀଙ୍କ ସହିତ ଶକୁନ୍ତଳା ଦୁଷ୍ମନ୍ତଙ୍କ ରାଜ ଦରବାରରେ ପହଞ୍ଚିଲେ । ତାଙ୍କୁ ସମସ୍ତ ବିଷୟ ଜଣାଇଲେ । ଦୁଷ୍ମନ୍ତ ରାଜା ଦାୟିତ୍ୱ ନେବେ କ'ଣ ଶକୁନ୍ତଳାଙ୍କୁ ଆଦୌ ଚିହ୍ନି ପାରିଲେ ନାହିଁ । ବରଂ ଅସତୀ, କଳଙ୍କିନୀ ଅପବାଦ ଦେବାକୁ ପଛାଇଲେ ନାହିଁ ।

ସାରିଆ କହିଲା : ବିଚାରି ଝିଅଟାର ଅବସ୍ଥା କ'ଣ ହୋଇଥିବ ?

ଲୋଚନ ମାଷ୍ଟ୍ରେ କହିଲେ ଯାହା ହେବାର କଥା ସେଇଆ ହେଲା । ଶକୁନ୍ତଳା ତ ନିରୀହା, ସରଳା, ଆଶ୍ରମ ବାଳିକା । ସେ କ'ଣ ଜାଣିଥିଲା ଏତେ କୁଟ କପଟ ଦୁଷ୍ମନ୍ତଙ୍କ ମନରେ ଅଛି ? ଏତିକି ଶୁଣି ସେଇ ରାଜ ଦରବାରରେ ତାର ହୋସ୍ ବୁଡ଼ିଗଲା ।

ସାରିଆ ଆତଙ୍କରେ ଶିହରି ଉଠିଲା, ତା ଭୁଣ୍ଡରୁ ଆପଣା ଛାଏଁ ବାହାରି ପଡ଼ିଲା : ତା ପରେ ?

ସଙ୍ଗରୁ ସଖୀ ଦୁହେଁ ଶକୁନ୍ତଳାଙ୍କୁ ଧରି ଆଶ୍ରମକୁ ଫେରିଲେ ।

କଣ୍ୱ ମୁନି ପିତା ଜନମ ଦେଇ ନଥିଲେ, ପାଳିଥିଲେ ତ । ତେଣୁ ସେ ତାଙ୍କର ଝିଅ ସେ କ'ଣ ଆଉ ଫିଙ୍ଗିଦେବେ ? ରାଜା ପିତା

ଧରମ ବୁଡ଼ିଲେ, ସେ'ତ ଆଉ ଗର୍ଭବତୀ ନାରୀକୁ ବାଘ ସିଂହଙ୍କ ମୁହଁକୁ ପେଲି ଦେଇ ପାପ କରି ପାରିବେ ନାହିଁ । ଆଶ୍ରମରେ ପାଇଛନ୍ତି । କିଛି ଦିନ ପରେ ଶକୁନ୍ତଳାଙ୍କର ରାଜକୁମାର ଭଳି ପୁଅଟିଏ ହେଲା । ତାହା ନାମ କଣ୍ୱ ମୁନି ରଖିଲେ ଭରତ ।"

ଲୋଚନ ମାଷ୍ଟ୍ରଙ୍କ ପାଟିରୁ କଥା ଯିମିତି ସରିଛି, ସାରିଆ ପାଟିରୁ ଆହ, ଆହା, ଚୁ-ଚୁ-ଭଳି ସମବେଦନା ସୂଚକ ଶବ୍ଦ କେତୋଟି ବାହାରିଲା । ତାହାପରେ ସେ କହିଲା ବଡ଼ ଲୋକଗୁଡ଼ାକ କ'ଣ ଏଇମିତି ? ରାଜା ହେଲେ କ'ଣ ଇନ୍ଦ୍ର ହୋଇଗଲା ? ଆଶ୍ରମରେ ଝିଅଟା ସାଙ୍ଗରେ ରହିଲା । ଭାବ ପୀରତି କଲା । ସ୍ୱାମୀ ସ୍ତ୍ରୀଭଳି ଘଡ଼ିଏ ପହରେ ନୁହେଁ ଦିନ ତିନ ଗୃହସ୍ଥ ଚଳିଥିବେ । ତାହା ପରେ ତାହାର ସର୍ବସ୍ୱ ଲୁଟି ନେଇ ତାକୁ ଚିହ୍ନି ପାରିଲା ନାହିଁ ? କେବଳ କ'ଣ ବେଦୀ ତଳେ ଛାମୁଣ୍ଡିଆ ବାନ୍ଧି ବାହାହେଲେ ତାହାକୁ ବାହାଘର କହନ୍ତି ? ସେହି କଥା ମନେ ରହେ ? ଦେଖିବ ମାଷ୍ଟ୍ରେ, ସେ ରଜାକୁ ଦଇବ ସହିବ ନାହିଁ । ମାଇପି ନିଃଶ୍ୱାସ କି ? ନାଗ ସାପ ନିଃଶ୍ୱାସ ସଙ୍ଗେ ସମାନ । ତାହାର ଅସନ୍ତୋଷ, ଅଶାନ୍ତିରୁ ତାହାର ରାଜା ହେବା ସୁଖ ଦେଖିବ ଜଳି ପୋଡ଼ି ପାଉଁଶ ହୋଇଯିବ ।

ଏତିକି କହି ସାରିଆ ଆକାଶକୁ ଚାହିଁଲା । ଦେଖିଲା ବେଳ ଯିବା ଉପରେ । ଉଠ ଉଠ କହିଲା ଯାଉଛି ସାନ୍ତେ । ବେଳ ହୋଇଗଲାଣି । ଘରେ କୁନ୍ତଳାଟା ଦାଣ୍ଡକୁ ବାହାରି ହେଉଥିବ । ଭାରି ଡରକୁଳୀଟେ । ସେଥିରେ ପୁଣି କୋଳରେ ପିଲାଟା । ମନକୁ ମୋର ସବୁବେଳେ ପାପ ଛୁଉଁଛି । ଆଉ, ଯାହା ରହିଲା ଆଉ ଦିନେ ଶୁଣିବ । ମୂରୁଖ ଲୋକ ତ କୋଉ ଶାସ୍ତ୍ର ପୁରାଣ ଅବା ପଢ଼ି ପାରିବ ? କେତେବେଳେ ଏଇମିତି ବସୁ ବସୁ ଦିପଦ କାନରେ ପଡ଼ିଲେ ପବିତ୍ର ହୋଇଯିବ ଅବା ?

ହସି ଦେଇ ଲୋଚନ ମାଷ୍ଟ୍ରେ କହିଲେ ଆଲୋ, ପୁରାଣ କଥା ଆଖୁ ଭଳି । ଯେତିକି ଚୋବାଇ ଖାଉଥିବ ସେତିକି ରସ ବାହାରୁଥିବ । ଧୀରେ ଧୀରେ ପୁରାଣ ଶୁଣିଲେ ମଜା ପାଇବ ।

ସାଁରଆ ଉଠି ଚାଲିଗଲା । ଦିନଯାକର ଖଟେଣି ପରେ ଯେତେବେଳେ ଫୁରସତ୍ ପାଏ ସାରଆ ଏଇମିତି ଆସି ଲୋଚନ ମାଷ୍ଟ୍ରଙ୍କ ପିଣ୍ଡାତଳେ ବସିପଡ଼େ । ଘଣ୍ଟେ ଦି'ଘଣ୍ଟା କଥା ହୋଇ ସେ ଘରକୁ ଫେରେ ।





ଭାଇ ରଜା ହେଲେ, ଭଉଜ ହୁଏ ରାଣୀ
ଅନ୍ତ ଶରଧାରେ କହନ୍ତି, ରଜାଙ୍କ ଭଉଣୀ ।

ଗୋଟିଏ ନିହାତି ଉଦାସିଆ ଅପରାହ୍ଣରେ ନର୍ମଦା ଛଳେଇ କରି କହିଲା ନନ୍ଦକା ଦେବୀଙ୍କୁ ।

ଢଗଟି ଶୁଣି ନନ୍ଦକା ଦେବୀ କହିଲେ – ବୁଝିଲ ନମି, ତୁମ ଭାଇଙ୍କ ହାତ ଧରି ମୁଁ ଯାହା ରାଣୀ ପାଲଟିଛି ତାହା ଆଉ କିଏ କହୁ କି ନ କହୁ ମୋ ମନ ଜାଣେ । ହଇହେ, ମୋ ବାପାଙ୍କର କଣ ନ ଥିଲା ? କ'ଣ ଅବା ସେ ଯୌତୁକ ଦେଇ ନ ଥିଲେ ? ହେଲେ······

ଭଉଜଙ୍କ ପାଟିରୁ କଥା ଛଡ଼ାଇ ନେଇ ନର୍ମଦା କହିଲା – କଣ କହିଲ ଭଉଜ, ଆଉ ଅଧିକା କ'ଣ ଜୀବନରେ ପାଇଥାନ୍ତ ? ହଇଓ ରାଜା ତ କୁଆଡ଼େ ଘାସ କାଟିଲେଣି, ଯିଏ ଶାସନ କଲା ତାକୁ ପରା ରଜା କହନ୍ତି । ମୋ ଭାଇ ସିନା ମନ୍ତ୍ରୀ, କିନ୍ତୁ ରାଜ୍ୟ ଶାସନ କରୁଛି କିଏ ?

କଥାଟାକୁ ଖିଆଲରେ ଉଡ଼ାଇ ନେବା ପାଇଁ ନନ୍ଦକା ଦେଈ କହିଲେ ଭାଇ ତୁମର ମନ୍ତ୍ରୀ ହୁଅନ୍ତୁ କି ରାଜା ହୁଅନ୍ତୁ କିନ୍ତୁ ମୋ ଜୀବନଟା କଟିଗଲା ଗୁମାସ୍ତାଗିରି କରି । ହଇହେ, ଏତିକ ବେପରୁଆ ଲୋକ ଦୁନିଆଁରେ ଥାନ୍ତି ? ଘର ନାହିଁ, ପୁଅ ମାଇପ ଚିନ୍ତା ନାହିଁ, ଚବିଶ ଘଣ୍ଟା କେବଳ ମୋ ଦେଶ, ମୋ ଦେଶବାସୀ । ମୁଁ ଦେଖିବି ନାହିଁ ଏଇ ଦେଶବାସୀ ତାଙ୍କୁ କେତେ ଠେକ ଧରିବେ ? କେଉଁ ଛଅଟା ନାହିଁ କି ନଅଟା ନାହିଁ ମୋର ନଣନ୍ଦ ବୋଲି ଖଣ୍ଡେ, ତାଙ୍କୁ କ'ଣ ଦିନେକ ପାଇଁ ପଚାରିଲେ ?

ଆଖି ଛଳ ଛଳ କରି ରୁଦ୍ଧ କଣ୍ଠରେ ନର୍ମଦା କହିଲା ହଁ ମ, ଭାଉଜ, ବାପ ମାଆ ମଲା ପିଲାର ଆଉ ଷଠୀଘର ଖୋଜା ହେଉଛି ? ଭାଇ ସିନା ମୋର ଆଜନ୍ମରୁ ବୁଲା ବାସ୍ତବିଆ । ହେଲେ, ଭାଉଜଟିଏ ଅଛ ଯେ, ମାଈଁ ହୋଇ କେଉଁଦିନ ଭଣଜା ଭାଣେଜୀଙ୍କୁ ଖୋଜିଲ କି ଲୋଡ଼ିଲ ?

ହଠାତ୍ ନିଆଁରେ ଘିଅ ଢାଳିଲା ପରି ନନ୍ଦକା ଦେଈ କହି ଉଠିଲେ ଦାଣ୍ଡରୁ ବାହାରଯାଏ ସମସ୍ତେ ମୋତେ ଦୋଷ ଦେଲେ । ମୁଁ କଣ ତାଙ୍କୁ ମନା କଲି ଯିବା ପାଇଁ ? ଥରେ ନୁହେଁ, ପଚିଶ ଥର ମୁଁ କହିଥିବି, ହଇହେ 'ଟିକିଏ ଯାଅ ନମି ଘରକୁ । ତାଙ୍କୁ ଦିନେକ ପାଇଁ ଡାକି ଆଣ । ହେଲେ ଆମ କଥା ତାଙ୍କର ଏ କାନ ବାଟେ ପଶି ସେ କାନ ବାଟେ ବାହାରି ଯାଏ । ଓଲଟି ଉତ୍ତର ଦିଅନ୍ତି ଅବିନାଶ ଆସିଥିଲା । ସବୁ ତାହାଠାରୁ ବୁଝିଛି । ତୁମେ ବ୍ୟସ୍ତ ହୁଅ ନାହିଁ । ଏଣେ ସବୁ ଦୋଷ ମୋର......

କଥାର ଗୁରୁତ୍ୱ ବଢ଼ାଇବାକୁ ଚେଷ୍ଟା କରି ନର୍ମଦା କହିଲା ଦୋଷ ତୁମର ନୁହେଁ ଭାଉଜ, ସବୁ ମୋ କପାଳର ଦୋଷ । ଦାଣ୍ଡରେ ପଚାଶ ଜଣଙ୍କ ପାଖରେ ମୁଁ ଠେକ ସ୍ୱାର କରି କହି ବୁଲୁଛି, ମୋ ଭାଇ ମନ୍ତ୍ରୀ ହୋଇଛନ୍ତି । କେହି ସିନା ମୁହଁରେ କହନ୍ତି ନାହିଁ କିନ୍ତୁ ମନରେ ଭାବିବାକୁ ତ କାହାରିକୁ ମନା ନାହିଁ । ସେମାନେ ନିଶ୍ଚୟ ବିଚାରୁଥିବେ ଏତେ ଭାଇ, ଭାଇ ତ କହି ହଉଛି, ଦିନେକ ପାଇଁ କାହିଁ

ଭାଇ ତ ଭଉଣୀ ଦୁଆରେ ଠିଆ ହେବାର ଦେଖା ଯାଉ ନାହାଁନ୍ତି ? ତୁମ ଦବା ନବାକୁ କିଏ ଅପେକ୍ଷା କରୁଥିଲା ? ମୋ ବାପା ଯେଉଁ ଦୁଃଖୀ ଘରେ ଦେଇଛନ୍ତି, ମୋ କପାଳ ମୁଁ ଭୁଞ୍ଜୁଛି । ସାରା ମୁଲକ ବୁଲିଲା ବେଳକୁ ଭାଇକୁ ବେଳ ଅଛି । ଆଉ

ପଣତ କାନରେ ନିଜ ଆଖିର ଲୁହକୁ ପୋଛିଲା ନର୍ମଦା

ନନ୍ଦିକା ଦେବୀ କହିଲେ ବୁଝିଲ ନମି ଶଶୁରେ ମୋତେ ଘରକୁ ବୋହୂ କରି ଆଣିଥିଲେ, ମଲାବେଳକୁ କହିଗଲେ ଏ ଘର, ଏ ବୃନ୍ଦାବନ, ତୁମକୁ ସର୍ପି ଦେଇଗଲି ବୋହୂ ! ପୁଅଟା ମୋର କୌଣସି କାମର ନୁହେଁ । ତୁମେ ଯଦି ରଜଆଖିଆ ନ ହେବ, ଏତେବଡ଼ ରାୟବାହାଦୂର ବଂଶର ପୁଅ ଭିକ ମାଗିବ । ମୁଁ ଯେତେହେଲେ ସ୍ତ୍ରୀଲୋକ । ଯେତିକି ପାରୁଛି, ସେତିକି ସମ୍ଭାଳୁଛି । ଯାହା ନ ପାରୁଛି, ସେଥିପାଇଁ ଯେଉଁ ଭୁଲ୍ ହୋଇଛି ସେ ସବୁ ମୋର । ତେଣୁ ମୁଁ ଆଉ କାହାକୁ ଦାୟୀ କରୁ ନାହିଁ । ଛାଡ଼ି ସେ କଥା, ଅବିନାଶଙ୍କ କଥା କ'ଣ କହିବ ବୋଲି କହୁଥିଲ ?

ନନ୍ଦିକା ଦେବୀଙ୍କ ସ୍ୱୀକାରୋକ୍ତି ପରେ ନର୍ମଦା ସାମାନ୍ୟ ଆତ୍ମସ୍ଥ ହେଲା । ତାର ଅଭିମାନ ସାଗରରେ ଭଟ୍ଟା ପଡ଼ି ଆସିଲା ସେ କହିଲା କେବଳ ତାଙ୍କର ପାଇଁ ଆସିଥିଲି ଯେ, ଭାଇଙ୍କୁ କେତେବେଳେ ନିରୋଳାରେ ପାଉଛି ଯେ କହିବ ? ସେ ତ ସକାଳୁ ଦରବାରରେ ବସୁଛନ୍ତି । ବାହାରକୁ ଗଲେ ଫେରିବାର ଠିକଣା ନାହିଁ, ଆଉ ଯେଉଁ ଘଡ଼ିକ ଘରେ ରହୁଛନ୍ତି ସଦାସର୍ବଦା ତାଙ୍କୁ ଲୋକ ବେଢ଼ି ରହୁଛନ୍ତି ।

: ମୁଁ ସେଥିପାଇଁ ତୁମ ଭାଇଙ୍କୁ ପଚାଶଥର କହିଲିଣି, ପିଲାଦିନରୁ ଆଜି ପର୍ଯ୍ୟନ୍ତ ତ' ପଲିଟିକ୍ସ୍ କଲଣି, ଏଣିକି ଏସବୁ ଛାଡ଼ିଦିଅ । ଚୁପ୍‌ଚାପ୍ ହୋଇ ଘରେ ବସିରୁହ । ଏ ଦେଶବାସୀଙ୍କ ପାଇଁ ବହୁତ କଲଣି, ଗୋଟାକ ପରେ ଗୋଟାଏ ସମାଲୋଚନା କାଗଜ ବାହାର ତୁମଙ୍କ ଗୁଣ ବହୁତ ଗାଇଲେଣି । ଉପକାର ଶବ୍ଦଟା ସେମାନଙ୍କ

ପାଖରେ ନିରର୍ଥକ । କୃତଘ୍ନତା ପରି ହୃଦୟରେ ବସା ବାନ୍ଧିଛି । ମୋ କଥା ଶୁଣି ସେ କ'ଣ କହିଲେ ଜାଣ ?

। ଆଗ୍ରହ ସହିତ ନର୍ମଦା ପ୍ରଶ୍ନ କଲା ଭାଇ, କଣ କହିଲେ ?

ଭାଇ ତୁମର, ମୋତେ ବୁଝାଇବାକୁ ଯାଇ କହିଲେ, କଓ ମାଛ ମାରିବାକୁ ଇଚ୍ଛା, ଏଣେ ପୋଖରୀରୁ ପାଣି ଦେହରେ ଲାଗିବ ବୋଲି ଡର । ଏହା ଯେଉଁ ପରି କଥା ? ରାଜନୀତି କରିବ ଅଥଚ ତୁମକୁ କେହି ସମାଲୋଚନା କରିବେ ନାହିଁ ସେହିପରି ଯୁକ୍ତି । ନିଜ ଉପରେ ଆସ୍ଥା ନ ଥିବା ନେତା ହେଉଛନ୍ତି ଡେଣାହୀନ ପକ୍ଷୀ ସେମାନଙ୍କର ଛଟପଟ ହେବା କେବଳ କରୁଣକର ନୁହେଁ, ହାସ୍ୟକର ମଧ୍ୟ । ଆଉ ଯେଉଁ ପଲିଟିକ୍ସ କଥା କହୁଛ, ସେହି ଶବ୍ଦଟା ପରି ମୋ ସହିତ ପିଲାବେଳରୁ ରହି ଆସିଛି, ତାହାକୁ କଣ ଏତେ ସହଜରେ ଗ୍ରହଣ ହେବ ?

ନର୍ମଦା ହଠାତ୍ କଥା ମଝିରେ ବାଧା ସୃଷ୍ଟି କରି କହି ଉଠିଲା, କ'ଣ କହିଲେ ? ପଲିଟିକ୍ସ ତାଙ୍କ ସହିତ ପିଲା ଦିନରୁ ମିଶି କରି ରହି ଆସିଛି ? ମୁଁ କ'ଣ ଘରେ ଝିଅ ହୋଇ ଜନମି ନ ଥିଲକି ?

ହଁ, ଶୁଣ, ସେହିକଥା ଯାହା ସେ କହିଲେ । ପିଲାଦିନେ ତୁମେ ଆଉ ସେ ଦୁହେଁ ଘରେ ଏକାଠି ଖାଇବସିଲାବେଳେ, ହେଇ କୁଆ ଆସିଗଲା କହି ତୁମକୁ ଅନ୍ୟଆଡ଼େ ଚାହିଁବାକୁ କହି ସେ ତୁମ ଗିନାରୁ ଆଳୁ ଚକଟା ଟିକିଏ ନେଇ ଖାଇ ଦିଅନ୍ତି ! ତୁମେ ଯେତେବେଳେ କୁଆଫୁଆ କିଛି ନଦେଖି ନିଜ ଗିନାରେ ହାତ ମାରି ଜାଣିପାରି ଯେ ଭାଇ ତୁମ ଗିନାରୁ ଆଳୁ ଚକଟା ଧାପ୍ପେଇ କରି ନେଇଯାଇଛନ୍ତି ସେତେବେଳେ ତୁମେ ହାତଗୋଡ଼ ପିଟି କାନ୍ଦି ଉଠ । ତୁମର କାନ୍ଦ ଶୁଣି ଶାଶୁ ଏ ଦଉଡ଼ି ଆସନ୍ତି । ସେ ଯେତେବେଳେ ତୁମ ଭାଇଙ୍କୁ ଜେରା କରନ୍ତି ସେତେବେଳେ ଭାଇ ତୁମକୁ କହନ୍ତି ତୁ ଦେଖିଛୁ ମୁଁ ତୋହର ଆଳୁ ଚକଟା ଖାଇ ଯାଇଛି ?

ତୁମେ ସେତେବେଳେ କହ ସେ ପଲିଟିକ୍ସ ମୋ ପାଖରେ ପଶିବ ନାହିଁ । ମୋତେ କୁଆ ଦେଖିବାକୁ କହ ତୁମେ ମୋ ଗିନାରୁ ଆଳୁ ଚକଟା ଖାଇଯାଇନ ? ତେଣୁ ପଲିଟିକ୍ସଟା ଆମମାନଙ୍କ ଜୀବନରେ ପଖାଳ କଂସା ଠାରୁ ଆରମ୍ଭ କରି ଡାଇନିଙ୍ଗ୍ ଟେବୁଲ ପର୍ଯ୍ୟନ୍ତ ଶୂଲ ଆସିଛି । ଭାଇ, ଭାଇକୁ ଭାଗ ନଦେଲେ ଜଣେ ଜଣକୁ କହେ ସେ ପଲିଟିକ୍ସ ରଖିଦିଅ । କରାଣୀ ବିଲ ପାଶ୍ କରିବାକୁ ହଇରାଣ କଲେ କଣ୍ଟ୍ରାକ୍ଟର କହେ ମୁଁ ତୁମର ପଲିଟିକ୍ସ ବୁଝିଲଣି । ସ୍ୱାମୀ ସ୍ତ୍ରୀକୁ ଅନ୍ୟ ଆଳ ଦେଖାଇ ସିନେମା ଦେଖାଇ ନ ନେଲେ ସ୍ତ୍ରୀ କହେ : ସେ ପଲିଟିକ୍ସ ମୋ ପାଖରେ ଚଳିବ ନାହିଁ । ବଡ଼ ବଡ଼ ନେତାମାନେ ଯାହା ସଭା ସମିତିରେ ଚର୍ଚ୍ଚା କରି ନପାରନ୍ତି ରାତିରେ ନୈଶ ଭୋଜି ସଭାରେ ଡାଇନିଙ୍ଗ୍ ଟେବୁଲ ଉପରେ ବସି ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ନିଷ୍ପତ୍ତିମାନ ନିଅନ୍ତି । ତେଣୁ ପଲିଟିକ୍ସକୁ ଛାଡ଼ି କେହି ରହି ପାରିବେ ନାହିଁ । ଖବର କାଗଜ ପଢୁଥିବ । ବହୁତ ନେତାଏ କହୁଛନ୍ତି ଏଥର ମୁଁ ସକ୍ରିୟ ପଲିଟିକ୍ସରୁ ଦୂରେଇ ରହିବି । କିନ୍ତୁ ପୁଣି ଦିନ କେତେଟା ପରେ ଦେଖ ସେମାନଙ୍କର ଆଉ ଗୋଟାଏ ଦଳ, ତେଣୁ ସବୁ କଥା କହ ମାନିବି, କିନ୍ତୁ ପଲିଟିକ୍ସ ଛାଡ଼ି ପାରିବ ନାହିଁ ।

ଖେଁ-ଖେଁ ହୋଇ ହସି ଉଠିଲା ନର୍ମଦା । ନିଜ ସ୍ୱାମୀଙ୍କର ଗୁଣର ପ୍ରଶଂସା ଶୁଣି ଛାତି ତାହାର ଆନନ୍ଦରେ ଫୁଲି ଉଠିଲା । ହସି ହସି ସେ କହିଲା : ସେତିକି ବୁଦ୍ଧି ଅଛି ବୋଲି ସେ ରାଜ୍ୟ ଚଳାଉଛନ୍ତି । ଗଉଡ଼ ସିନା ଗାଈ ଚରାଏ କିନ୍ତୁ ବୁଦ୍ଧି ଥିବା ଲୋକ ମଣିଷ ଚରାଏ ।

ଗୋଟାଏ ଦୀର୍ଘନିଃଶ୍ୱାସ ଟାଣି ନନ୍ଦିକା ଦେବୀ କହିଲେ, ରାଜନୀତି ହେଲା ବୁଦ୍ଧିର ଖେଳ । କିନ୍ତୁ ରାଜନୀତି କରୁଥିବା ଲୋକଙ୍କ ପରିବାରଙ୍କ ଅବସ୍ଥା ଠିକ୍ ଦୀପ ପରି । ଦୀପ ସିନା ଘରର ଅନ୍ଧାରକୁ ଦୂର କରେ କିନ୍ତୁ ତା ତଳ ସଦାବେଳେ ଅନ୍ଧାର ସେହିପରି........

ଭଉଜଙ୍କ ପାଟିରୁ କଥା ଛଡ଼ାଇ ନେଇ ନର୍ମଦା କହିଲା ହଁ ଯାହା କହିଲ ସତ । ଦୀପତଳ ସିନା ଅନ୍ଧାର, କିନ୍ତୁ ବିଜୁଳିବତୀ

ଜାଲି କେହି ସନ୍ଧ୍ୟା ଧୂପ ଦଅନ୍ତି ନାହିଁ  ପୂଜା ପାର୍ବଣରେ ଯେପରି ପିତ୍ତଳ ଧୂପ ନଥିଲେ ନାହିଁ, ମାଟି ଧୂପଟି ହେଲେ  କାମ ଚଳିଯାଏ ସେହିପରି ଯେତେ ସଭା ସମିତି ସେଥିରେ ମନ୍ତ୍ରୀଟିଏ ନ ମିଳିଲେ, ପଞ୍ଚାୟତ ସମିତି ଚେୟାରମ୍ୟାନ କିମ୍ବା ସରପଞ୍ଚଙ୍କୁ ନେଇ କାମ ଚୁଲାଇ ଦିଆ ହୁଏ ।

ଥଟ୍ଟା କରି ନନ୍ଦିକା ଦେବୀ କହିଲେ  ଥାଉ. ସେତିକି ହୋଇ-ଥାଉ ।  ଆଉ ଭାଇଙ୍କୁ ଠେକ ନାହିଁ, ସହଜରେ ତ କିଛି ବୁଝୁ ନାହାନ୍ତି । ବୈରାଗୀ ପରି ବୁଲୁଛନ୍ତି । ଆଉ  ଭଉଣୀଙ୍କର ବଚନକା ଶୁଣିଲେ ସେ କ'ଣ ଆଉ ଭୂଇଁରେ ଚାଲିବେ ? କଥାର ମୋଡ଼ ଭାଙ୍ଗି ସେ ପ୍ରଶ୍ନ କଲେ : କହିଲ ନମି, ଘରଟା ଦେଖିଲତ,  ତୁମର କପରି ପସନ୍ଦ ହେଲା ?

: ହଇଓ ଭାଉଜ ! ବି. ଡ଼ି. ଓ. ଗୋଟାଏ ଅଫିସର ନା ଅସରପା ଗୋଟାଏ ଚଢ଼େଇ ? କାହିଁ କେଉଁ ମଫସଲରେ ଆଜବେଷ୍ଟସ କ୍ୱାଟରରେ ରହିବା ଲୋକ ଆମେ ! ଆମକୁ ପଚାରୁଛ ପୁଣି ମତ ? ଯିଏ ନିତି ପଖାଳ ଖାଏ ତାହାକୁ ଯଦି ପ୍ରଶ୍ନ କରାହୁଏ ବିରିଆନିଟା କପରି ଲାଗିଲା ? ଠିକ୍ ସେହିପରି ତୁମ·········

ଅଭିମାନ କରି ନନ୍ଦିକା ଦେବୀ କହିଲେ, ତୁମେ ତ ଏଇୟା କେବଳ କହିବ ? ମୁଁ କ'ଣ ଏଇଥିପାଇଁ ପଚାରିଲି ?

: ପ୍ରକୃତରେ ଭାଉଜ,  ଏ କୋଠାକୁ ଦେଖିଲେ ବାପାଙ୍କ କଥା ମନେପଡ଼େ । ସେ ଦେଖିଥିଲେ କି ଆନନ୍ଦ ହୋଇଥାନ୍ତେ ତାହା ବର୍ଣ୍ଣନା କରି ହେବ ନାହିଁ । ସେ ହସି ହସି କହିଥାଆନ୍ତେ ଏଇଟା ପ୍ରାସାଦ । ହର୍ମ୍ୟ । ରାଜା ଉଆସ ! ଯାହାହେଉ ତୁମର ପରିଶ୍ରମ ସାର୍ଥକ ହୋଇଛି ।

ନଣନ୍ଦ ମୁହଁରୁ କଥା ଛଡ଼େଇ ନେଇ ନନ୍ଦିକା ଦେବୀ କହିଲେ, ତୁମେ ସିନା ଏତିକି ଅନୁଭବ କଲ । କିନ୍ତୁ ତୁମ ଭାଇ; ଗୁଡ଼

ସେ ମୋ କପାଳ । କେଉଁ କାମରେ ତାଙ୍କଠାରୁ ପ୍ରଶଂସା ପଦ କାନ ଶୁଣିଲି ନାହିଁ । ମୁଁ ଯଦି ଗୃହିଁ ନ ଥାନ୍ତି ନା; ତୁମ ଭାଇ ତ ବହୁତ ଘର ରାଜଧାନୀରେ କରି ପାରିଥାନ୍ତେ ?

ନର୍ମଦା ନ ଜାଣିଲା ପରି ପ୍ରଶ୍ନ କଲା ଭାଉଜ କହିଲ ଏଥିରେ କେତେ ଟଙ୍କା ଖର୍ଚ୍ଚ କରିଥିବ ?

ମୁହଁ ଶୁଖିଗଲା ନନ୍ଦିକା ଦେବୀଙ୍କର । ଚୋଖତ ଅଭିନେତ୍ରୀ ପରି ସେ ଅଭିନୟ କରି କହିଲେ ଏ ଘର କଲା ନାହିଁ ଯେ ମୋ ପୁଅ ମୁଣ୍ଡ ସବୁଦିନ ପାଇଁ ବ୍ୟାଙ୍କ୍‌ରେ ବନ୍ଧକ କରି ଦେଲି । ଯାହା ଟଙ୍କା ଲାଗିଛି, ସେଥିପାଇଁ ଜମିବାଡ଼ି ବନ୍ଧା ଦେଇ ମୋ ବାପଘରୁ ଯେତେ ଅଳଙ୍କାର ଆଣିଥିଲି ସେ ସୁନାକୁ ବନ୍ଧା ଦେଲି ତଥାପି ହାତ ଉଧାର କେତେ ତାହାର ହିସାବ ନାହିଁ । ଘରଭଡ଼ା ଲାଗିବ । ସେଥିରୁ ଟଙ୍କା ଆସି ବ୍ୟାଙ୍କ୍ ଋଣ ସୁଝା ହେବ । ତାହାପରେ ଯାଇ ସେ ଘର ଆମର ହେବ । ଘର ତୋଳିବାକୁ ଟଙ୍କା ପଇସା ଆମ ହାତରେ ଆସିବ କେଉଁଠାରୁ ? ଭାଇ ତ ତୁମର ଦାତା କର୍ଣ୍ଣ । ଯେଉଁ ସଭା ସମିତିକୁ ଯିବେ ଶହେ, ଦୁଇଶହ ଦାନ କଲେ । ଲୋକମାନେ ମଧ୍ୟ ପାଇଲା ଗାଈଆ ବୁହାନ୍ତି । ସେଥିପାଇଁ ସବୁ ସଭା ସମିତିରେ ଭାଇଙ୍କୁ ନିମନ୍ତ୍ରଣ ଆଗ ।

ପୂଜାରୀ ଆସି ଡାକିଲା ।

ନନ୍ଦିକା ଦେବୀ ଉଠି ଚାଲିଗଲେ ।

ଭାଉଜଙ୍କ ଯିବା ପଛକୁ ନର୍ମଦା ଚାହିଁ ରହିଥିଲା ।

ରାଜଧାନୀରେ ନୂଆ ଘର ପ୍ରତିଷ୍ଠା ଉତ୍ସବକୁ ଭାଇ ଡକାଇ ଆଣିଥିଲେ । ଭାଇ ଓ ଭଉଣୀ ବୋଲି ସେ'ତ ଦୁଇଟି । ନ ଆସି ରହି ପାରନ୍ତା କିପରି ? ନର୍ମଦା ଭାବୁଥିଲା ସେ ଯଦି ଏହି ଉତ୍ସବକୁ ନ ଆସିଥାନ୍ତା ତେବେ ଆହୁରି ଖୁସି ହୋଇ ପାରିଥାନ୍ତା । ଆସିବା ଦିନଠାରୁ ଆଜିପର୍ଯ୍ୟନ୍ତ କେବଳ ଭାଉଜଙ୍କର ବାହାଦୁରୀ କାହାଣୀ ଶୁଣି ଆସିଛି । ଏଥିପାଇଁ ତାକୁ ଯେତିକି ଅସ୍ୱସ୍ତି ବୋଧ ହେଉ ନାହିଁ,

ସବୁ ଥାଇ ମଧ୍ଯ କିଛି ନଥିବାର ସେ ଯେଉଁ ଛଳନା କରୁଛନ୍ତି, ସେତିକି ତା ମନକୁ ବିଶେଷ କଷ୍ଟ ଦେଉଛି ।

ଆଖି କୋଣରେ ନର୍ମଦାର ଲୁହ ଜକେଇ ଆସିଲା । ମନେ ପଡ଼ିଲା—ବାପା, ବୋଉ ଆଖି ବୁଜିଲା ପରେ ସେ ଆଶା କରିଥିଲା ଭାଇ କିମ୍ବା ଭାଉଜ ବର୍ଷକୁ ଥରେ ଖଣ୍ଡେ ଅନ୍ତତଃ ତାହାକୁ ଡକାଇ ଆଣି ଶାଢ଼ୀ ଖଣ୍ଡିଏ କି ଘର ବୋଝ ଗଣ୍ଡିଏ ଦେବେ ! କିନ୍ତୁ ସେତକ, ତାହାର ଭାଗ୍ୟରେ ଲେଖା ନାହିଁ । ଭାଇ ଯେପରି ରାଜନୀତିରେ ମାତି ବନ୍ଧୁ ପରିଜନ ଭୁଲିଛନ୍ତି, ଭାଉଜ ମଧ୍ଯ ନିଜ ସମ୍ପତ୍ତି ବଢ଼ାଇବାରେ ମନ ଦେଇ ନଣନ୍ଦକୁ ପାଶୋରିଛନ୍ତି ।

ଆଖିରୁ ଲୁହ ପୋଛିଲା ନର୍ମଦା । ଗେହ୍ଲରକୁ ମାନ କରି ଖପରରେ, ଖାଇବା ଯାହା, ବାପ ମାଆ ମଲାପରେ ଶାଶୁଘରର ଝିଅ ଭାଇ ଭାଉଜଙ୍କ ଉପରେ ଅଭିମାନ କରିବା ସେଇଆ ।

ଭାଉଜଙ୍କ ଗୃହଚାଳନା ଗତିବିଧି ଦେଖି ନର୍ମଦା ଭାବୁଥିଲା ସେ ଜାଣିଥିଲା ସହରୀ ଶିକ୍ଷିତା ଝିଅମାନଙ୍କର ମନର ଭାଷା ଏବଂ ତୁଣ୍ଡର କଥା ଆଦୌ ସମାନ ନୁହେଁ । କିନ୍ତୁ ନପଢ଼ ମଫସଲରୁ ଯିଏ ଆସି ସହରରେ ନୀଡ଼ ରଚନା କରନ୍ତି ସେମାନେ ମଧ୍ଯ ସେଇଆ ହୋଇ ଯାଆନ୍ତି ?

ବାସ୍ତବିକ୍ ଆଜିକାଲିକାର ସହରୀ ସଭ୍ୟତା ଏକ କାମଳ ରୋଗ ଭୋଗ କରୁଥିବା ରୋଗୀ ପରି ସଂକ୍ରାମକ । ଏ ସହରରେ ଥରେ ପାଦ ଦେଲେ ଆଖିର ରଙ୍ଗ ବଦଳିଯାଏ ! ଦୁନିଆଁଟା ହଳଦିଆ ଦେଖାଯାଏ ।

ସେହି ହଳଦିଆ ଆଖି ନେଇ ସହରୀ ଭାଇ, ଭାଉଜମାନେ ମଫସଲ ଗାଆଁର ଯାଆ, ନଣନ୍ଦ, ଝିଆରୀ, ପୁଅଭାରିଙ୍କୁ ଚିହ୍ନି ପାରନ୍ତି ନାହିଁ ।

ଏ ସହର ଛଳନାମୟୀ, ଠିକ୍ ମୋ ଭାଉଜଙ୍କ ପରି ।





ବଳା ପାରିଲେ, କଳା ଗୁଡ଼େ ।

ମଣିଷ ସେଥିପାଇଁ ପ୍ରାର୍ଥନା କରି କହେ, ଭଗବାନ ମୋତେ ସୁଠାମ, ସୁନ୍ଦର, ପୁଅଟିଏ ନଦେଲେ ନାହିଁ କିନ୍ତୁ କାଳିଆ ଶୁକୁଟା କରି ଖଣ୍ଡିଏ ଦିଅ । ସେହି ଏକୋଇରବଳାର ଆୟୁଷ ଥିଲେ ସେ କାଆଲି କି କାଲି ମୋର କଳା ଛଡ଼ାଇବ । ମୋର ଏହି ଦୁଃଖ ଦୁର୍ଦ୍ଦଶା କିଛି ରହିବ ନାହିଁ । ସମୟ ଆସିବ ଯେତେବେଳେ ଏ ଅଙ୍ଗରୁ ରଙ୍ଗ ଝଡ଼ିଯିବ, ପୁରୁଣା ପୁରୁଣା ହାତ ଗୋଡ଼ର ଚମ ସବୁ ଲୁଢୁ ଲୁଢୁ ହୋଇ ଓହଳି ଝୁଲିବ, ଆଖିରୁ ଜ୍ୟୋତି ଲିଭିଯିବ, କାନକୁ ଶୁଭିବ ନାହିଁ, ସେତେବେଳେ ଏଇ ଶୁକୁଟା କାଳିଆ ଖଣ୍ଡିକ ଥିଲେ ଟେକା ଟେକି କରି ନବା ଆଣିବା କରିବ । ଗୁହ ମୁତ ସଫା କରିବ । ପର ଦୁଆରେ ମୂଲ ଲାଗି ନ ହେଲେ ଭିକ ଗଣ୍ଡେ ମାଗି ଆଣି, ତୋରାଣି କଂସାଏ ମୋ ଭୁଣ୍ଡିକୁ ଟେକି ଦେବ । ପରଜନ୍ମ କଥା କିଏ ପଚାରେ ? ଏହି ଜୀବନ ପାଇଁ ତ ଆଶା ହେବ ।

ଭାରତର ପାଠ ପଢ଼ା ସରିଲା ।

ଆଇନ ପରୀକ୍ଷାରେ ସେ ପ୍ରଥମ ହୋଇଛି ।

କୁନ୍ତଳା ପାଖକୁ ଫେରି ଆସି ଏକା ଜିଦ୍ କଲା : ନାଇଁ ମାଆ ତୋତେ ଗୃହକର୍ମ ଛାଡ଼ିବାକୁ ହେବ । ଆଉ ତୋର ଖଟିବା ଦରକାର ନାହିଁ । ମୁଁ ସିନା ପାଠ ପଢୁଥିଲି ବୋଲି ତୁ ଦୁଃଖ କଷ୍ଟ ସହି ଗୃହକର୍ମ କରୁଥିଲୁ । ମୋର ତ ପାଠ ପଢ଼ା ସରିଲା । ଏଣିକି ମୁଁ ରୋଜଗାର କରିବି । ମୁଁ କ'ଣ ତୋତେ ପୋଷି ପାରିବି ନାହିଁ ? ଚାଲ ଆମେ ଆମ ଗାଆଁକୁ ଫେରିଯିବା । ଆମ ଘରେ ରହିବା । କେତେଦିନ ହେବ ତୋ ହାତ ରନ୍ଧା ଖାଇ ନାହିଁ । ସେହି ସଜ ପଖାଳ, ସଜନା ଶାଗ ଖରଡ଼ା, ଆମ୍ବୁଲ ଚଟଣି ସବୁ ମନେ ପଡ଼ୁଛି । ପୁଣି ତୁ ରାନ୍ଧିବୁ । ମୁଁ ଖାଇବି ।

କୁନ୍ତଳା ଜାଣେ ଭରତ ତା ବାପ ଭଳି ଏକଜିଦିଆ । ଯାହା ବୁଝିଥିବ ସେଇଆ । ତାହା କଥାରୁ ଟିକିଏ ଏପଟ ସେପଟ ହେଲେ ଚାଲିବ ହଜାରେ ପାଲି । କିଏ ସଂଭାଳିବ ତାହାକୁ ? ତାହାର ଭିତର ଯାହା ବାହାର ସେୟା । ମନେ ମନେ ଯାହା ଭାବିଲା ପୁଅ ଆଗରେ ତୁଣ୍ଡ ଫିଟାଇ କହିଲା । ତୋରି ଲାଗି ସିନା ଏତେ କଷ୍ଟ ସହୁଥିଲି । ତୋତେ ମଣିଷ କରିବାକୁ ଖଦଡ଼ ମୁଣି ଧରି ଏ ଗାଆଁରୁ ସେ ଗାଆଁ ପାଞ୍ଚ ମାଇଲ ବୁଲୁଥିଲି, ତୁ ଯେବେ ମନା କରୁଛୁ ଥାଉ । ମୋର ଗୃହକର୍ମ କ'ଣ ହେବ ? ସରକାରୀ ଗୃହକର୍ମୀ ଖଣ୍ଡିକ ଚାଲିଗଲେ ପେନସନ ମୁଠାକ ଯିବ । ଭବିଷ୍ୟତ ପାଇଁ ସେତକ ସହାୟ ହୋଇଥାନ୍ତା । କିନ୍ତୁ ତୁ ତ ମୋର ଅତୀତ, ବର୍ତ୍ତମାନ, ଆଉ ଭବିଷ୍ୟତ । ପେନସନ ଟଙ୍କାତକ ତୋହରି ତୁଳନାରେ କେତେ ?

ପୁଅ କଥା ରଖିଲା କୁନ୍ତଳା ।

ଚାକିରିରୁ ଇସ୍ତଫା ଦେଲା ।

ସମସ୍ତେ ଆଶ୍ଚର୍ଯ୍ୟ ହେଲେ ।

ବି. ଡି. ଓ. ସାହେବ ଡକାଇଲେ । କେତେ କରି ବୁଝାଇଲେ । କହିଲେ ଆଜି ପୁଅ ବାହା ହୋଇ ନାହିଁ ପଚାରୁଛୁ । ଏ କଳି କାଳ । ସତ୍ୟ ଯୁଗ ନୁହେଁ । କାଲିକି କାଲି ଘରକୁ ବୋହୂ ଆସିବ ।

କାଟିଲେ ନ ପଗ୍ଭରିବ ? ସେତେବେଳେ ଏଇ ଗ୍ଭକିରିର ପେନ୍‌ସନ୍ ଟଙ୍କାତକ ତୁମକୁ ରୋଜଗାରିଆ ପୁଅ ଭଳି ସାହାଯ୍ୟ କରିଥାନ୍ତା । ମଲ୍ ମାଇଲ୍ କାଳରେ କେତେ ବି. ଏ., ଏମ୍. ଏ. ରାସ୍ତାରେ ବୁଲୁଛନ୍ତି । ତୁମେ ଏତେ ଦିନର ପୁରୁଣା ଗ୍ଭକିରି ଖଣ୍ଡିକ ଗ୍ଭଡ଼ିଦେବ ?

କୁନ୍ତଳା ବିନୀତ ଭାବରେ ଏତିକି ଉତ୍ତର ଦେଇଥିଲା ମଣିଷ ଟଙ୍କା ରୋଜଗାର କରେ ଆଙ୍କ । ଯାହାର ନିଜ ବାହୁ ଉପରେ ବିଶ୍ୱାସ ନ ଥାଏ ସେ ସିନା ଦମ୍ଭ ହରାଇ ବସେ । ଆପେ ଭଲ ରହିଲେ, ଦୁନିଆଁ ଭଲ । ମୁଁ ଯଦି କାଲି କାଣ୍ଡେଇ ହେବି ମୋ ବୋହୂ ମୋତେ ଦୁଇପଦ ନ କହି କ'ଣ ଗ୍ଭଡ଼ିବ ? ଗ୍ଭକିରି ଯାହା ପାଇଁ କରିଥିଲି, ସେ ତ ମନା କରୁଛି । ସେ ମୋର ବଡ଼ ନା ଗ୍ଭକିରି ବଡ଼ ? ତାହାର ମନ ଖୁସି କରିବା ପାଇଁ ସବୁ କରି ଆସିଛି । ତାହା ବୋହୂ ଯଦି କାଲି କିଷଣ ଦେଲେ ସେ ଖୁସି ହେବ ତାହାଁକି ଦୁଃଖିତ ହେବ କାହିଁକି ? ମଣିଷ ଦୁନିଆଁରେ ଯାହା ଆଶା କରେ ତାହା କ'ଣ ପାଇ ପାରେ ?

: ଏତେ ଦିନର ପୁରୁଣା ଗ୍ଭକିରି ?

କେତେ ଟଙ୍କା ଅବା ପେନ୍‌ସନ ପାଇବି ? ସେତିକି କ'ଣ ଗୋଟାଏ ପେଟ ପାଇଁ ମାସକୁ ଯଥେଷ୍ଟ ହେବ ? ପେଟରେ ଯେତେବେଳେ ନିଆଁ ଲାଗିବ, ମାସର ଶେଷ ସପ୍ତାହ ବୋଲି ଚୂଲି ତ ଆଉ ଧୀରେ ଧୀରେ ଜଳିବ ନାହିଁ । ଉପଯୁକ୍ତ ଉତ୍ତାପ ନ ହେଲେ ଭାତ କଣ ଫୁଟିବ ? ସେତେବେଳେ କାଠ ଦିଅଖଣ୍ଡ, ତୋରାଣି ମୁନ୍ଦାକ ପାଇଁ ସେହି ବୋହୂ ପୁଅଙ୍କ ପାଖରେ ତ ଠିଆ ହେବି ?

ବି. ଡ଼ି. ଓ. ଆଶ୍ଚର୍ଯ୍ୟ ହୋଇ କୁନ୍ତଳା ମୁହଁକୁ ଗ୍ଭହିଁ ରହି ଶୁଣୁଥିଲେ ।

ଉପି ଗ୍ଭଲିଥିଲି କୁନ୍ତଳା ଆଙ୍କ ଭାଗ୍ୟ ହେଉଛି ବଡ଼ । ମଣିଷକୁ ଯାହା ଯେତେବେଳେ ଭୋଗିବାକୁ ଥିବ ତାହାକୁ କେହି ଖଣ୍ଡନ କରି ପାରିବେ ନାହିଁ । ମଣିଷର ପାଞ୍ଚ ଆଙ୍ଗୁଠି ସମାନ ନାହିଁ ।

ସେହିପରି ସବୁ ମଣିଷର ପ୍ରକୃତି ସମାନ ନୁହେଁ । ଆପଣଙ୍କ ପରି କେତେ ହାକିମ ଦେଖିଛି । ସମସ୍ତେ ରାମଚନ୍ଦ୍ର ନୁହଁନ୍ତି । ସେମାନଙ୍କ ଭିତରେ ରାବଣ ବି ଥିଲେ । ଭିକ୍ଷା ମାଗିବା ବାହାନାରେ ପରସ୍ତ୍ରୀ ହରଣ କରିବାକୁ ସେମାନଙ୍କୁ ଭଲ ଲାଗେ । ସେହି କାର୍ଯ୍ୟକୁ ଗୌରବକର ବୋଲି ମନେ କରନ୍ତି । କିନ୍ତୁ ଝିଅଙ୍କ କ'ଣ ତାହା ଦେହରେ ଥିବା କଣ୍ଟାକୁ ସଦାବେଳେ ବ୍ୟବହାର କରେ ଯେତେବେଳେ ବିପଦ ଆସିଛି ମୁଁ ଦୁର୍ଗା ହୋଇଛି । ବଡ଼ିଲା ଝିଅଟିଏ ଏବୁଣ୍ଡି ବନି କେଉଁଠି ସ୍ୱାବଲମ୍ବୀ ହେବାକୁ ଇଚ୍ଛା କଲାବେଳେ ତାହାକୁ ଭଉଣୀ ବୋଲି କମ୍ବା ନିଜର ଝିଅ ଭଳି ଆମମାନଙ୍କୁ ଭାବିବାକୁ ବଡ଼ କଷ୍ଟ ଲାଗେ । ତେଣୁ ସବୁ ନିର୍ଭର କରେ ନିଜ ଉପରେ । ଦିନ ରାତି ଚବିଶ ଘଣ୍ଟା ମୁଁ ସେହି ଭଗବାନଙ୍କୁ ଡାକି ଆସିଛି, ଠିକ୍ ଯେମିତି ଦ୍ରୌପଦୀ ତଦ୍‌ଗତ-ପ୍ରାଣା ହୋଇ କୁରୁ ସଭାରେ ଡାକିଥିଲେ । ସେ ଦୟା ନ କରିଥିଲେ, ଏହି ପୁଅ, ଏହି ସରକାରୀ ଗୃହକେଶ୍, ଆଜିକାଲିକାର ଜନସାଧାରଣ କେହି କ'ଣ ମୋର ନାରୀପଣର ଦାୟିତ୍ୱ ନେଇ ପାରନ୍ତେ ?

ବି. ଡ଼ି. ଓ. ନୀରବ ରହିଲେ । ସବୁ ଶୁଣିବା ପରେ ତାଙ୍କର ଆଉ କିଛି କହିବାର ନ ଥିଲା । ବାଧ୍ୟ ହୋଇ ଇସ୍ତଫା ଗ୍ରହଣ କଲେ ।

କୁନ୍ତଳା ଫେରି ଆସିଲା ମାଧପୁର ଗାଆଁକୁ ।

ଗାଆଁରେ ପହଞ୍ଚି କୁନ୍ତଳା ତାହାର ପୈତୃକ ଘର ଖଣ୍ଡିକୁ ସଜାଡ଼ିଲା । ସେହିଠାରେ ପୁଅକୁ ନେଇ ରହିଲା । ବାଡ଼ିରେ ଦୁଇ ମନ୍ଦା କଖାରୁ, ଜହ୍ନି, କାକୁଡ଼ି ଲଗାଇଲା । ଗାଆଁର ବୁଢା, ବୁଢ଼ୀ, ବୋହୂ, ଝିଆରୀ, ପିଲାମାନଙ୍କ ଭିତରେ ନିଜକୁ ହଜାଇ ଦେଲା ।

ଭରତ ଆଜିକାଲି ଓକିଲ ହୋଇଛି । କଳା କୋର୍ଟ ପିନ୍ଧି ସେ କମଳପୁରକୁ ଓକିଲାତି କରିବାକୁ ସକାଳୁ ମାଟିକେଲ ଖଣ୍ଡିଏ ଧରି ବାହାରି ପଡ଼େ । ଦାଣ୍ଡ ଘରଟା କରିଛି ବୈଠକଖାନା । ଆଲମିରା ସାରି ଥାକ ଥାକ ବହି । କଚେରୀରୁ ଫେରିଲା ପରେ ଅନବରତ ପାଠପଢ଼ା ।

ଭରତର ପରିଶ୍ରମ ଦେଖି କୁନ୍ତଳା ଧନେ ଧନେ ବିରକ୍ତ ହୋଇ କହି ଉଠେ ଏତେ ପରିଶ୍ରମ କଲେ ଦେହ କ'ଣ ଭଲ ରହିବ ?

ହସି ହସି ଭରତ କହେ ମାଆ, ପରିଶ୍ରମ କରିବା ପାଇଁ ଏ ଦେହ ସୃଷ୍ଟି ହୋଇଛି ପରା ?

କୁନ୍ତଳା ନୀରବ ରହେ । ବେଳେବେଳେ ପୁଅର ମନ ବଢ଼ିବା ପାଇଁ କହେ ମୁଁ ଏତେ ଆଉ ଖଟି ପାରିବ ନାହିଁ ।

ହସି ହସି ଭରତ କହେ ପୁଅଟା ତୋର ପରା ନୂଆ ଓକିଲ ହୋଇଛି । ଜୁନିଅର ସିପ୍ ସମସ୍ତ ଯାଇ ନାହିଁ । ଯାହା ପଇସା ଅର୍ଜୁଛି ବର ଗଛ ତଳେ ଚିନାବାଦାମ ଖାଇବାକୁ ନିଅଣ୍ଟ ହେଉଛି । ଟିକିଏ ବାଟଗଲେ ଆଉ ଗୋଟାଏ ଲୋକ ଆମ ଘରେ କାମ କରିବାକୁ ରଖିବା ନାହିଁ ?

କୁନ୍ତଳା ମୁରୁମୁରୁ ହସି କରି କହେ : ମୁଁ କ'ଣ ଗୃହକର କା ଗୃହକରିଆଣୀ କଥା କହୁଥିଲି ?

ଭରତ କହେ ତୁ ଯାହା କଥା କହ, ସିଏ ମଣିଷଟିଏ ହୋଇଥିବ । ଆଉ ପଶୁ ପକ୍ଷୀ କ'ଣ ଆସି ତୋ ହାତରୁ କାମ ଛଡ଼ାଇ କରି ବସିବେ ?

କୁନ୍ତଳା ହସେ । ମନେ ମନେ ଭାବେ ପୁଅକୁ ଯୁକ୍ତିରେ ପାରି ହେବ ନାହିଁ । ଯାହା ତାକୁ ଭଲ ଲାଗୁଛି ତାହା କରୁ । ସେ ଯେତେବେଳେ ଗୃହିଣୀ ବାହା ହେବ । ତା ପରେ ପୁଅକୁ କ'ଣ କନିଆଁ ଅପୂର୍ବ ହେବ ? ତାର ତ ପୁଅ ପକ୍ଷ । ଗୋଡ଼ରେ ଗୋଡ଼ ପକାଇ ସେ ବସିବ । ଆଗ ଘର ଦୁଆର ଟିକିଏ ବାଟଗଲେ ନେଉ । ନିଜେ ରୋଜଗାର କରି ଚଳୁ । ତାହାପରେ ସିନା ଅପରକୁ ଚଳେଇବ ?

ମାଧପୁର ଗାଆଁରେ କୁନ୍ତଳାର ସମସ୍ତ ଆଉ ଅଣ୍ଟୁ ନାହିଁ । କେତେ ପର ଗାଆଁରେ ସେ ସେବା କରି ଆସିଛି । ଏଇଟା ତ ତାର

ନିଜ ଗାଆଁ । ସମସ୍ତ ତାର ମାଉସୀ, ମଉସା, ପୁଅ, ପୁତୁରା । ଆପଣାର । ଏହି ଗାଆଁକୁ ସେ ଛାଡ଼ି ଯାଇଥିଲା ବେଳେ ଯେଉଁ ଅବସ୍ଥାରେ ଦେଖି ଯାଇଥିଲା, ଦୀର୍ଘ ପଚିଶ ବର୍ଷ ପରେ ଫେରି ଦେଖୁଛି ଏହାର ଦଶା ସେହିପରି । ରାସ୍ତାରେ ଗାଣ୍ଡୁଆଏ ମାଟି ପଡ଼ି ନାହିଁ । ପିଇବା ପାଇଁ କୂଅଟିଏ ମଧ୍ୟ ଖୋଳା ଯାଇ ନାହିଁ । ଜନ ସଂଖ୍ୟା ଯେତିକି ବଢ଼ିଛି ସେହି ତୁଳନାରେ ରହିବା ଘର ନାହିଁ କମ୍ବା ପଢ଼ିବାକୁ ଗାଆଁରେ ସ୍କୁଲଟିଏ ନାହିଁ । ପିଲାମାନେ ସେଇମିତି ଅଜ୍ଞାନ ଅନ୍ଧକାରରେ ସଡ଼ୁଛନ୍ତି । ଗାଆଁ ମୁଣ୍ଡରେ ବର ଗଛ ତଳେ ବାହାରି ଠିକାଦାର ଦେଶୀ ମଦ ଦୋକାନ୍ ଖୋଲିଛି । ମଦୁଆଙ୍କ ସଂଖ୍ୟା ବଢ଼ି ଚାଲିଛି । ଏହାକୁ ଯଦି ସ୍ୱାଧୀନତା ଲାଭ ପରବର୍ତ୍ତୀ ସମୟର ପ୍ରଗତି କୁହାଯାଏ ତେବେ ସେତିକି ମାତ୍ର ଅଧିକା ହୋଇଛି ।

କୁନ୍ତଳା ନିଜେ ଏହି ଖାଡ଼ର ପାର । ସେ ଜାଣେ ବଡ଼ଲୋକମାନେ ହରିଜନ ଉନ୍ନତିକୁ ସେମାନଙ୍କର ନିର୍ବାଚନ ଇସ୍ତାହାରର ଏକ ଅଙ୍ଗ ଏବଂ ଶସ୍ତା ଭାଷଣର ଏକ ଭୂଷଣ କରିଛନ୍ତି । କିନ୍ତୁ ପ୍ରକୃତରେ ଏହି ମଳମୁଣ୍ଡିଆଗୁଡ଼ାଙ୍କର ଉନ୍ନତି କରିବାକୁ କେହି ଏମାନଙ୍କ ପାଖକୁ ଆସନ୍ତି ନାହିଁ । ସ୍ନେହ, ପ୍ରୀତି, ଶ୍ରଦ୍ଧା ଦେଇ ସେମାନଙ୍କୁ ଆପଣାର କରିବାକୁ କାହାର ମନ ବଳେ ନାହିଁ । ଏହି ନୁଖୁରା ମାଖୁରାଗୁଡ଼ାଙ୍କୁ ଦୁନିଆଁ ବିଷୟରେ ଟିକିଏ ଧାରଣା ଦେବାକୁ ହେଲେ ସେମାନଙ୍କୁ ଆପଣାର ବୋଲି ମନେ କରିବାକୁ ହେବ । ସେମାନଙ୍କ ମନରୁ ବହୁ ଦିନରୁ ରହି ଆସିଥିବା କୁସଂସ୍କାରକୁ ଦୂର କରିବାକୁ ହେଲେ ନିଜର ମାନକୁ ବଳି ଦେଇ ଅପମାନ ସହିବାକୁ ପଡ଼ିବ ।

ସମଗ୍ର ଭାରତବର୍ଷର ହରିଜନମାନଙ୍କର ସାମାଜିକ ଅବସ୍ଥା ସେ ସିନା ବଦଳାଇ ଦେଇ ପାରିବ ନାହିଁ; କିନ୍ତୁ ଏହା ବୋଲି ନିଜ ଗାଆଁର ଏଇ ଦଶ କୋଡ଼ିଏଟି ପରିବାରଙ୍କୁ କ'ଣ ଉନ୍ନତ ସ୍ତରକୁ ଆଣି ପାରିବ ନାହିଁ ? ସେଥିପାଇଁ ଭରତ କଟେଜକୁ ଗଲା ପରେ କୁନ୍ତଳା ଘରେ ଦଣ୍ଡେ ରହେ ନାହିଁ । ଏ ଘର, ସେ ଘର ବୁଲି ମଉସା, ମାଉସୀଙ୍କ ସହ ମିଳିମିଶି ଆତ୍ମୀୟତା ସୃଷ୍ଟି କରିବାରେ ଲାଗି ପଡ଼ିଛି ।

ଭରତ ମଧ୍ୟ କଚେରୀରୁ ଫେରିଲା ପରେ ଗାଆଁ ମୁଣ୍ଡ ଭାଗବତ ଘରେ ଘଣ୍ଟାଏ, ଦୁଇ ଘଣ୍ଟା ସମୟ ବିତାଉଛି । ଗାଆଁ ଭାଇଙ୍କ ସଙ୍ଗେ ମିଶୁଛି । ସମସ୍ତଙ୍କଠାରୁ ସ୍ନେହ, ମମତା ଆଦର ଏଥି ପାଇଁ ଏବେ ତାହା ଉପରେ ଅଜାଡି ହୋଇ ପଡୁଛି ।

ଭରତ କଥା ସମସ୍ତେ ଶୁଣୁଛନ୍ତି ଆଉ ସମସ୍ତଙ୍କ ଆପତ୍ତି ଅଭିଯୋଗ ଶୁଣିବାକୁ ଭରତ ପ୍ରସ୍ତୁତ ହୋଇ ରହୁଛି ।

ଭରତ ଏବେ ଜାଣି ପାରୁଛି ଏଇ ତାର ଗାଆଁ । ସହରର ଅମୃତ ତ ସେ ଚାଖି ନାହିଁ କିନ୍ତୁ ତାକୁ ଯଦି ପଚାରି ଯାଏ ସେ କହିବ ଚିନି ଠାରୁ ମିଠା ଏଠିକାର ସ୍ନେହ ।





ପୃଥିବୀରେ ଜନ୍ମ ହୋଇ ଦୁଃଖ ନପାଇଲେ କେବେ ହେଲେ ମଣିଷ ଉପରକୁ ଉଠି ପାରେ ନାହିଁ । ଯେଉଁମାନେ ବଞ୍ଚିବା ପାଇଁ ସଂଗ୍ରାମ କରନ୍ତି ସେମାନଙ୍କର ଅମରତ୍ୱ ଲୋଡ଼ା ନଥାଏ । ସେମାନେ ହେଉଛନ୍ତି ସାଧାରଣ ମନୁଷ୍ୟ । ପେଟକୁ ଗଣ୍ଡେ ଖାଇ, ଦେହକୁ ଖଣ୍ଡେ ପିନ୍ଧି ନୀରୋଗ ହୋଇ ବାସ୍ତବ ଜଗତରେ ବଞ୍ଚି ରହିବା ହିଁ ସେମାନଙ୍କର କାମନା ।

ଅସାଧାରଣ ମନୁଷ୍ୟ ଅମରତ୍ୱ ଚାହେଁ । ପରମାର୍ଥ କାମନା କରେ । ପୃଥିବୀର କଲ୍ୟାଣ କରି ଜୀବନକୁ ଉତ୍ସର୍ଗ କରେ । ସେହି ପ୍ରକାର ବ୍ୟକ୍ତି ଥିଲେ ବୁଦ୍ଧଦେବ । ପୃଥିବୀର ପ୍ରଥମ ବିପ୍ଳବୀ । ରାଜପୁତ୍ର ହୋଇ ବିଳାସ ବ୍ୟସନ ତ୍ୟାଗ କଲେ । ସମାଜବାଦକୁ ମୂଳମନ୍ତ୍ର ରୂପେ ଗ୍ରହଣ କଲେ । ମହାର୍ଘ ବସନ ଭୂଷଣ ବଦଳରେ ଚୀବର ପିନ୍ଧି ଲେଙ୍ଗୁଟି ମାରିଲେ । ଗଛମୂଳେ ଶୋଇଲେ । ଲୋକମାନଙ୍କ ପାଖକୁ ଆସିଲେ । ସେମାନଙ୍କ ମଧ୍ୟରେ ମିଶି ସେମାନଙ୍କର ଦୁଃଖ, ଯନ୍ତ୍ରଣା, କଥା ମର୍ମେ ମର୍ମେ ଅନୁଭବ କଲେ । କହିଲେ ଆମେ ସମସ୍ତେ ଏକ ।

ପୃଥିବୀର ସଭ୍ୟତାର କ୍ରମବିକାଶ ପୂର୍ବରୁ ପର୍ବତ ଗୁହାରେ ଥିଲାବେଳେ ଆମେ ମାନେ ଦିଗମ୍ବର ଥିଲେ । ଆମ ଭିତରେ ସାନ ବଡ଼ ଭେଦଭାବ ନଥିଲା । ଏକାଠି ବସୁଥିଲେ, ଖାଉଥିଲେ, ଶୋଉଥିଲେ ଆଉ ଗପୁଥିଲେ । ମଣିଷ ଯେତିକି ସଭ୍ୟ ହେଲା ସେତିକି କୁଟିଳ ହେଲା । ଉଚ୍ଚ ନୀଚ ଭେଦ ଭାବ ସୃଷ୍ଟି କଲା । ଭାଇ, ଭାଇ ଭିତରେ ପାଚେରୀ ଠିଆ କଲା । ତାହା ସଙ୍ଗେ ସଙ୍ଗେ ଯିଏ ତାକୁ ବିଶ୍ୱକୁ ପଠାଇଛନ୍ତି ସେହି ବିଶ୍ୱବିଧାତାଙ୍କୁ ଭୁଲିଲା ।

ମଣିଷ ତାଙ୍କୁ ତ ପାଶୋରି ଦେଲା ଆଉ ତାଙ୍କ ବାଣୀକୁ ଲଙ୍ଘନ କଲା ବୋଲି ବିସ୍ମିତ ହେବାର କିଛି ନାହିଁ ।

ସେହିଦିନ ଗାଆଁ ଭାଗବତ ଘରେ ଲୋକମାନଙ୍କୁ ବୁଝାଇବାକୁ ଯାଇ ଭରତ କହୁଥିଲା ତ୍ୟାଗୀ ଥିଲେ ହରିଶ୍ଚନ୍ଦ୍ର, ସତ୍ୟ ପାଇଁ ରାଜ୍ୟ କ'ଣ ନିଜ ପତ୍ନୀ ଓ ପୁତ୍ରଙ୍କୁ ମଧ୍ୟ ତ୍ୟାଗ କରିଥିଲେ । ତ୍ୟାଗୀ ଥିଲେ ସିଦ୍ଧାର୍ଥ । ଆଉ ଜଣେ ଏ କାଳର ତ୍ୟାଗୀ । ସେ ହେଉଛନ୍ତି ଉତ୍କଳମଣି ଗୋପବନ୍ଧୁ ଦାଶ । ମଣିଙ୍କ ଭିତରେ ଭଗବାନଙ୍କର ସନ୍ଧାନ ସେମାନେ ପାଇ ପାରିଲେ । ସେମାନେ ସତ୍ୟକୁ ପୂଜା କରୁଥିଲେ । ଛଳନା ସେମାନଙ୍କ ଠାରୁ ଦୂରେଇ ରହୁଥିଲା । ସେମାନେ ବ୍ୟକ୍ତିଗତ ଜୀବନରେ ଯାହା ଥିଲେ, ଲୋକମାନଙ୍କ ପାଖକୁ ଗଲାବେଳେ ସେମାନଙ୍କର ପରିଚୟ ସେଇଆ ରହୁଥିଲା । ସାକ୍ଷୀଗୋପାଳ ବନବିଦ୍ୟାଳୟର ଗୋପବନ୍ଧୁ, ଓଡ଼ିଶାର ଦୁର୍ଭିକ୍ଷ ସମୟର ଗୋପବନ୍ଧୁ ଆଉ ବିହାର ବିଧାନ ସଭାର ସଭ୍ୟ ଗୋପବନ୍ଧୁ ଭିତରେ ଫରକ୍ ନଥିଲା । ଗୋଟିଏ ବ୍ୟକ୍ତିତ୍ୱ । ଗୋଟିଏ ଚରିତ୍ର ।

ଆଜିକାଲି ସମାଜରେ ଯେଉଁ ନେତାମାନଙ୍କୁ ଦେଖୁଛି ସେମାନେ ଅଧିକାଂଶ ହେଉଛନ୍ତି ସାଧାରଣ ମନୁଷ୍ୟ । ଅସାଧାରଣ ନୁହଁନ୍ତି । ନିଜ ନିଜର ଉନ୍ନତି କରିବା ସେମାନଙ୍କର କାମନା । ଆମମାନଙ୍କର ଉନ୍ନତି କରିବା ସେମାନଙ୍କର ନିର୍ବାଚନ ବୈତରଣୀ ନଦୀ ପାରି ହେବା ପାଇଁ ଗୋଟିଏ ଗୋଟିଏ ଗୋରୁ ଲାଙ୍ଗୁଡ଼ ।

: ଭାଇମାନେ ଆମେମାନେ ନ ଜାଗିଲେ ଆମ କଥା କେହି ବୁଝିବେ ନାହିଁ । ଶୋଇବା ପୁଅର ଭାଗ ନଥାଏ । ପାଟି କରି ନ କାନ୍ଦିଲେ କଅଁଳା ପିଲାକୁ ମାଆ ଦଉଡ଼ି ଆସି ଥନଭାଙ୍ଗି କ୍ଷୀର ଦିଏ ନାହିଁ । ସେଥିପାଇଁ ଆମକୁ ଆମର ନିଜ ନିଜର ଅଧିକାର ବିଷୟରେ ସଚେତନ ହେବାକୁ ପଡ଼ିବ । ଆମେମାନେ ଯଦି ସ୍କୁଲକୁ ନ ଯିବା ତେବେ ଶିକ୍ଷା ପାଇ ପାରିବା ନାହିଁ । ଶିକ୍ଷା ନପାଇଲେ ଆମକୁ କିଏ ଠକୁଛି ତାହା ଜାଣି ପାରିବା ନାହିଁ । ଆମମାନଙ୍କ ପଢ଼ିବାପାଇଁ ସରକାର ଖାତା, ସ୍ଲେଟ , ବହି ସବୁ ମାଗଣାରେ ଯୋଗାଉଛନ୍ତି । ସେତକ ନେଇ ପାଠ ପଢ଼ିବା ଆମର ଉଚିତ । ଯଦି ଆମେ ପାଠ ନପଢ଼ିବା ତେବେ ସେହି ସ୍ଲେଟ, ଖାତା, ବହିକୁ ଅପବ୍ୟବହାର ପାଇଁ ପ୍ରଶ୍ରୟ ଦେବା । ମୁଁ ଯଦି ଆଜି ପାଠ ପଢ଼ି ନଥାନ୍ତି ତେବେ କ'ଣ ତୁମ ଭିତରୁ ଜଣେ ହୋଇ କଚେରୀରେ ଓକିଲ ହୋଇ ମକଦ୍ଦମା ଲଢ଼ିପାରୁଥାନ୍ତି ?

ଏହି ଯେଉଁମାନେ ଆମମାନଙ୍କୁ ଅଛୁଆ, ହରିଜନ କହି ଘୃଣା କରି ଆସୁଛନ୍ତି ସେମାନେ କାଳେ କାଳେ ଆମକୁ ଏହିପରି ଠକି ଆସୁଥିଲେ । ପୁରାଣ ଶୁଣିଥିବ, ଜାଣିଥିବ, ଆମରି ଜାତିର ବିଶ୍ୱାବସୁ । ପୂଜା କରୁଥିଲେ ନୀଳମାଧବଙ୍କୁ ଜଙ୍ଗଲରେ । ତାଙ୍କୁ ଚୋରାଇ କରି ନେବାକୁ ଆସିଲେ ବ୍ରାହ୍ମଣ ଯୁବକ ବିଦ୍ୟାପତି । ଆମରି ସରଳତାରେ ସେ ଗରଳ ଭରିଲେ । ବିଶ୍ୱାବସୁଙ୍କ କନ୍ୟା ଲଳିତା ସହିତ ବିଦ୍ୟାପତି ପ୍ରଣୟ କଲେ । ତାହାର ଇଜ୍ଜତ ଲୁଟିଲେ । ଶେଷରେ ଚୋରିକରି ନେଲେ ନୀଳମାଧବଙ୍କୁ । ତାହାଙ୍କୁ ନେଇ ପୁରୀ ଦେଉଳରେ ରଖି ପୂଜାକଲେ । ତାହାପରେ ଆମେ ଯେତେବେଳେ ଆମ ଜାତିର ଠାକୁରଙ୍କୁ ଟିକିଏ ଦର୍ଶନ କରିବାକୁ ମନ କଲୁ ଆମ ପାଇଁ ବଡ଼ ଦେଉଳର କବାଟ ବନ୍ଦ ହେଲା । ଆମେ ଅଛୁଆ, ଆମେ ହରିଜନ, ଦିଅଁ ଦେଉଳରେ ଆମ ପାଦ ପଡ଼ିଲେ ତାହା ଅପବିତ୍ର ହେବ ।

ଭାଇମାନେ, ଆମେ ବ୍ରାହ୍ମଣ ଘରେ ମୂଲ ଲାଗୁ , ମାଟି ଖୋଳି ଗାତ କରୁ । ଆମରି ହାତରେ ନଡ଼ିଆ ଗଛ ପୋତୁ । ମଞ୍ଜୁଷୀ ନେଇ

ନିତି ପ୍ରତି ପାଣି ଢ଼ାଳୁ ଗଛ ବଡ଼ ହୁଏ । ନଡ଼ିଆ ଫଳେ । କିନ୍ତୁ ଆମେ ଯଦି ଆମ ବାଡ଼ିରେ ଗାତ କରି ନଡ଼ିଆ ଗଛଟି ପୋତିବାକୁ ଯିବୁ ତେବେ ଆମର ପାପ ହେବ । ଆମ ସପ୍ତ ପୁରୁଷ ନର୍କରେ ପଡ଼ିବେ ।

ଏହି ବଡ଼ ଲୋକମାନେ ସ୍ୱାର୍ଥ ବଶରେ ଆସନ୍ତି । ଆମକୁ ବଡ଼ ବଡ଼ କଥା କହନ୍ତି । ସେମାନଙ୍କର କଥାର ଭେଳବାଜିରେ ଆମେ ଭୁଲି ଯାଉ । ତାହା ପରେ ସେମାନେ ଆମକୁ ଲୁଣ୍ଠନ କରନ୍ତି ।

ଭାଇମାନେ, ଶିକ୍ଷା ଠାରୁ ବଳି ବଡ଼ ମୂଲ୍ୟବାନ ଜିନିଷ ଦୁନିଆଁରେ କିଛି ନାହିଁ । ଧନ ଆଜି ଅଛି କାଲି ଚୋର ନେଇଯିବ । ସଂପତ୍ତିରୁ ଭାଇ ଭାଗ ମାଗିବ; କିନ୍ତୁ ପେଟରେ ବିଦ୍ୟା ଥିଲେ ମଣିଷର ଚିନ୍ତା ନଥାଏ । ବିଦ୍ୟା ବିନୟ ଶିକ୍ଷା ଦିଏ । ବିନୟ ଗୁଣରୁ ସଜ୍ଜନ ସଙ୍ଗ ଲାଭ ହୁଏ । ଫଳରେ ମଣିଷର ରୁଚି ଓ ଚାଲିଚଳଣି ମାର୍ଜିତ ହୁଏ । ମୁଁ ଏଇ ଗାଆଁରେ ଜନ୍ମିଥିଲି । ପାଠ ପଢ଼ି ନ ଥିଲେ ମୁଁ ମଧ୍ୟ ସକାଳୁ ଉଠି ସାଉକାର ଘରକୁ ବେଠି ଖଟିବାକୁ ଯାଉଥାନ୍ତି । ଚାରି ଟଙ୍କା ମଜୁରି ବଦଳରେ ଦୁଇ ଟଙ୍କା ଆଣୁଥାନ୍ତି । ସେମାନଙ୍କର ଅତ୍ୟାଚାର ଆଉ ଅନ୍ୟାୟକୁ ବୁକୁପାତି ସହି ଆସୁଥାନ୍ତି ।

: ଭାଇମାନେ, ପାଠ ମଧ୍ୟ ଏହି ଧୋବଧାଉଳିଆ ବାବୁମାନେ ଆମକୁ ପଢ଼ାଇ ଦେବାକୁ ସୁଖ ପାଆନ୍ତି ନାହିଁ । ଶିଶୁ ଶ୍ରେଣୀ ଠାରୁ କଲେଜ ପାଠ ପଢ଼ିଲା ବେଳେ ସେମାନଙ୍କ ଠାରୁ କମ୍ ଘୃଣା, ହତାଦର ପାଇନାହିଁ । ଜେଲ୍ ଓ ଜୋରିମାନା ଭୟକୁ ଡରି ପୂଜାରୀ ଭାଇନା ସିନା କିଛି କହେ ନାହିଁ, କିନ୍ତୁ ଛାତ୍ର ବାଡ଼ିଲା ବେଳେ ବୋର୍ଡିଂରେ ସେ ମୋଠାରୁ ହାତେ ଦୂରେଇ ରହେ । ମଦ ନାମ ଲିକର ହେବା ଭଳି ଆମେ ପାଣି ହାଡ଼ିରୁ ହରିଜନ ହୋଇଛୁ । କିନ୍ତୁ ସେମାନଙ୍କ ମନରୁ ଘୃଣା ଭାବ ଦୂରେଇ ପାରିନାହୁଁ । ସେଥିପାଇଁ ସବୁ ଅପମାନକୁ ମୁଁ ନୀଳକଣ୍ଠ ପରି ସହ୍ୟ କରି ସେମାନଙ୍କୁ ଦେଖାଇ ଦେଇ ପାରିଲି

ଯେ କେବଳ ବ୍ରାହ୍ମଣ ପିଲା ପାଠ ପଢ଼ିଲେ ଶ୍ରେଣୀରେ ପ୍ରଥମ ହୁଏ ନାହିଁ । ପାଠ ପଢ଼ିଲେ ହରିଜନ ପିଲା ମଧ୍ୟ ବୃତ୍ତି ପାଏ ।

ପାଠ ପଢ଼ି ସାରିବା ପରେ ମୋର ଯେତେବେଳେ ଜୀବନ ସଂଗ୍ରାମର ପର୍ବ ଆରମ୍ଭ ହେଲା, ସମସ୍ତେ କହିବାକୁ ଲାଗିଲେ ଆଦିବାସୀ, ହରିଜନଙ୍କ ପାଇଁ ଚାକିରୀ ସଂରକ୍ଷିତ ଅଛି । ସେହି ଚାକିରୀରୁ ଗୋଟିଏ ଅକ୍ଲେଶରେ ମିଳି ପାରିବ । ଚାକିରୀ କର । ମୁଁ କହିଲି ଚାକିରୀ ନ କରି ସ୍ୱାଧୀନ ବ୍ୟବସାୟ କରି ଜଣେ ହରିଜନ ମଧ୍ୟ ସମାଜରେ ପ୍ରତିଷ୍ଠା ଲାଭ କରି ପାରିବ । ସେ ଗରିବ ହୋଇପାରେ କିନ୍ତୁ ତାର ଆତ୍ମ ମର୍ଯ୍ୟାଦା ଅଛି । ସେ ମଧ୍ୟ ସାମାଜିକ ସ୍ୱୀକୃତି ଆଶା କରେ । ସେଥିପାଇଁ ଯେତେବେଳେ ଚାକିରୀ ମୋହ ଛାଡ଼ି ତୁମମାନଙ୍କ ପାଖକୁ ଫେରି ଆସିଲି ସେତେବେଳେ ମୋ ସଙ୍ଗରେ ପାଠ ପଢୁଥିବା ବଡ଼ଲୋକ ଘରର ପିଲାମାନେ ଯେଉଁମାନେ ଚାକିରୀ ପାଇଁ ବାର ଦୁଆର ଶୁଂଘି ପିଣ୍ଡା ହେଉଛନ୍ତି, ସେହିମାନଙ୍କର ଆଖି ଆଶ୍ଚର୍ଯ୍ୟରେ ତାଳୁରେ ଖୋସି ହୋଇଗଲା । କଳା କୋଟ୍ ପିନ୍ଧି ଯେତେ-ବେଳେ ଓକିଲାତି କରିବାକୁ ଓକିଲଖାନାରେ ବସିଲି ସେତେବେଳେ ମଧ୍ୟ ଟିପିଟିପି ହସ, ଥଟ୍ଟା, ପରିହାସ କମ୍ ସହି ନାହିଁ । ମଣିଷ ଗୋଟିଏ ଜାତି ପିଏକି କୁକୁରକୁ ସ୍ନେହ କରେ କିନ୍ତୁ ତାହା ଭଳି ହାତ ଗୋଡ଼ ଥିବା ଆଉ ଗୋଟିଏ ମଣିଷକୁ ଅସ୍ପୃଶ୍ୟ କହି ଘୃଣା କରେ । ଈର୍ଷା କରେ । ସେମାନଙ୍କର ବ୍ୟଙ୍ଗ ବିଦ୍ରୂପକୁ ସହି ଆସିଛି, ଆସିବି । ସେମାନଙ୍କୁ ମଧ୍ୟ ଦେଖାଇ ଦେବି ଯତ୍ନ, ଅଧ୍ୟବସାୟ, ଉଦ୍ୟମ ବଳରେ ଅସାଧ୍ୟ ମଧ୍ୟ ଏହି ଭୂତଳରେ ସାଧିତ ହୋଇପାରେ ।

ଭାଇମାନେ ଆମେମାନେ ଚେଷ୍ଟା ନ କଲେ କେହି ଆମ ପାଇଁ କରି ଦେବେ ନାହିଁ । ସେଥିପାଇଁ ମାଆକୁ ସରକାରୀ ଚାକିରୀ ଛଡ଼ାଇ ଘରକୁ ଫେରାଇ ଆଣିଛି । ସେ ମଧ୍ୟ ଆପଣମାନଙ୍କ ସେବା ପାଇଁ ପ୍ରସ୍ତୁତ । ଆସ ଆମେ ସମସ୍ତେ ମିଳି ମିଶି ଶପଥ ନେବା ଆମର ଏହି ଛୋଟ ବସ୍ତିକୁ ଏହି ଅଞ୍ଚଳରେ ଉନ୍ନତ କରିବା । ଆମେ ଆଦର୍ଶ ହେବା । ଆଖ ପାଖ ପାଞ୍ଚଖଣ୍ଡ ଗାଆଁରେ ନାଁଆ କରିବା । ଅନ୍ୟମାନେ ଯେପରି ଆମକୁ ଅନୁକରଣ କରିବେ ।

ଭାଇମାନେ, ପାଠ ପଢିବା ପାଇଁ ବୟସର ଗୋଟାଏ ନିର୍ଦ୍ଦିଷ୍ଟ ସୀମାରେଖା ସେପରି କରନ୍ତୁ ନ ଥାଏ । ତେଣୁ ସନ୍ଧ୍ୟା ପରେ ଯେଉଁମାନେ ମୋର ମଉସା, ଦାଦା, ପିଉସା ଅଛନ୍ତି ସେହିମାନେ ଏହି ଭାଗବତ ଘରକୁ ଆସନ୍ତୁ । ସେମାନଙ୍କୁ ପାଠ ପଢ଼ାଇବା ଦାୟିତ୍ୱ ମୋର । ଆଉ ଛୋଟ ଛୋଟ ପିଲାମାନଙ୍କୁ ପାଠ ପଢ଼ାଇବା ପାଇଁ ସକାଳେ ଏଠାକୁ ପଠାନ୍ତୁ । ସେ ଦାୟିତ୍ୱ ନେବ ମୋ ମାଆ । କାଲି ସକାଳୁ ଦେଖିବା ଦଶ ବର୍ଷରୁ କମ୍ ପିଲା ଯେପରି ସମସ୍ତେ ଏହିଠାକୁ ପଢ଼ିବାକୁ ଆସନ୍ତି । ଦିନ ଚାରିଟା ପରେ ଏ ଗାଆଁ ଦାଣ୍ଡରେ ଗୋଲି, ଡାବଲପୁଆ ଖେଳ ହେଉ କିନ୍ତୁ ଅନ୍ୟ ବେଳେ ପିଲାମାନେ ପାଠ ପଢ଼ନ୍ତୁ ।

ଦୁନିଆଁରେ ମଣିଷ ହୋଇ ଜନ୍ମ ହୋଇଛି । ମଣିଷ ପରି ବଞ୍ଚିବା ପଶୁ ପରି ଗଣ୍ଡେ ଖାଇ ପିଇ ମରିବା ପାଇଁ ବଞ୍ଚିବା ନାହିଁ । ଯଦି ବଞ୍ଚିବା ତେବେ ଜାଣିବା ପାଇଁ ।

ଗାଆଁ ଭାଗବତ ଘରେ ଭରତ ଆସି ଯୋଗ ଦେବା ଦିନରୁ ଏହି ଭଳି ପ୍ରତିଦିନ ବୁଝାଇ ଚାଲିଛି । ମାଧପୁରର ହରିଜନମାନେ ନିଜ ନିଜକୁ ବୁଝିବାକୁ ଚେଷ୍ଟା କଲେଣି । ବିହାରୀ ଠିକାଦାର ତାହାର ମଦ ଦୋକାନ ବନ୍ଦ କରି ଚାଲିଗଲାଣି । କେତେ କ୍ଷତି ଅବା ସମ୍ଭବ ?

ଭରତ ଖାଇ ପିଇ କଟେଇକୁ ଯିବା ପରେ କୁନ୍ତଳା ଭାଗବତ ଘରେ ମାଷ୍ଟ୍ରାଣୀ ହୁଏ । ସମସ୍ତେ କୁନ୍ତଳା ମାଉସୀଠାରୁ ପାଠ ଆଦାୟ କରିବାରେ ବ୍ୟସ୍ତ ।

ମାଧପୁରର ପ୍ରଭାବ, ଚଇତନପୁର, ଅର୍ଜୁନପୁର, ହରିଶରଣପୁର ପ୍ରଭୃତି ଗାଆଁର ହରିଜନମାନଙ୍କ ଉପରେ ପଡ଼ିଲାଣି । ଆଖ ପାଖ ପାଞ୍ଚଖଣ୍ଡ ମୌଜାର ଲୋକମାନେ କୁନ୍ତଳା ଦ୍ୱାରା ପ୍ରଭାବିତ ହେଲେଣି । ରାତି ପାହିବାଠାରୁ ରାତି ହେବା ପର୍ଯ୍ୟନ୍ତ ଏହିମାନଙ୍କ ଜଞ୍ଜାଳରେ ବୁଡ଼ି ରହି କୁନ୍ତଳା ତାହାର ଅତୀତର ହା-ହତାଶମୟ ଜୀବନର ପାଞ୍ଜି ବଢ଼ାକୁ ଖୋଲି ପଢ଼ିବାକୁ ଫୁରସତ୍ ପାଏ ନାହିଁ । ବେଳେବେଳେ ପଛ କଥା ଯଦି କେବେ କମିତି ମନ ତଳେ ଦେଖାଦିଏ ସେ ସବୁକୁ ଆଡ଼େଇ

ଦେବା ପାଇଁ କହେ ହଁ ହେ, ବାବୁ ଲୋକ ସେ । ସୁଖରେ ରହନ୍ତୁ । ନ ରହନ୍ତୁ । ମନରୁ ପାଶୋର ଦଅନ୍ତୁ । କିନ୍ତୁ ସେ'ତ ମନରେ ତାଙ୍କୁ ସାଇତ ରଖିଛି । ସେ ଦୀର୍ଘାୟୁ ହୋଇଥିଲେ ତା ହାତରେ ଦି ପଟ କାଚ ଆଉ ମୁଣ୍ଡରେ ଟୋପାଏ ସିନ୍ଦୂର ଉଜଳ ଉଠୁଥିବ ।

ଆଉ କିଛି ନ ହେଲେ ସେ କାଚମାଛ ନେଇ ସଂସାର କରୁଥିବ ତ ।





ସ୍ୱାଧୀନ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଯେତେବେଳେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଉଥିଲେ, ସେତେବେଳେ ତାଙ୍କୁ ବ୍ରିଟିଶ ସରକାର ହାତରେ ବନ୍ଦୀ ହେବାକୁ ହୋଇଥିଲା ।

ତାଙ୍କର ଜୀବନୀ ବସି ପଢ଼ୁଥିଲା ଭାରତ ।

ସେ ଜେଲ ଭିତରେ ଥିବାବେଳେ ଊଣେଇଶଶହ ବାଇଶି ମସିହା ଜାନୁଆରୀ ଚବିଶ ତାରିଖରେ ଯେଉଁ ଡାଏରୀ ଲେଖିଥିଲେ ତହିଁରୁ କେତେକାଂଶ ଉପରେ ଭାରତର ଆଖି ଏଠାରେ ଅଟକି ରହିଗଲା ।

"ଆମମାନଙ୍କର ଜାଣି ରଖିବା ଉଚିତ୍ ଯେ, ସ୍ୱରାଜ୍ୟ ମିଳିବା ସଙ୍ଗେ ସଙ୍ଗେ ବା ବହୁଦିନ ପର୍ଯ୍ୟନ୍ତ ଯେ ଅଧିକ ଉନ୍ନତ ଶାସନ ବା ଲୋକଙ୍କର ଅଧିକ ସୁଖ ଶାନ୍ତି ଆସିଯିବ ଏହା ନୁହେଁ । ଆମକୁ ସ୍ୱାଧୀନତା ମିଳିବା ସଙ୍ଗେ ସଙ୍ଗେ ନିର୍ବାଚନ ଏବଂ ଏହା ସହିତ ସମ୍ପୃକ୍ତ ଦୁର୍ନୀତି ଅନ୍ୟାୟ, ଧନର ପ୍ରଭାବ, ଅତ୍ୟାଚାର ଏବଂ ଶାସନ ଅପାରଗତା ପାଇଁ ଲୋକମାନଙ୍କୁ ନର୍କ ଯନ୍ତ୍ରଣା ଭୋଗିବାକୁ ହେବ । ପୂର୍ବ ଶାସନରେ ଅପେକ୍ଷାକୃତ ଅଧିକ ନ୍ୟାୟ, ଦକ୍ଷତା, ଶାନ୍ତି ଏବଂ ସାଧୁତା ଥିବାର

ଉପଲବ୍ଧି କରି ଲୋକମାନେ ଦୁଃଖପୂର୍ଣ୍ଣ ହୃଦୟରେ ତାହାକୁ ମନେ ପକାଇବେ । ତେବେ ପ୍ରଧାନ ଲାଭ ହେବ, ଜାତି ହିସାବରେ ଆମେ ପରାଧୀନତା ଅପମାନରୁ ରକ୍ଷା ପାଇବା । ସାର୍ବଜନୀନ ଶିକ୍ଷା ବ୍ୟବସ୍ଥା ଦ୍ୱାରା ଯଦି ପିଲାକୁ ନାଗରିକ ଜୀବନରେ ସଦାଚରଣ, ଭଗବତ ଭୟ ଏବଂ ସ୍ନେହର ବିକାଶ କରାଯାଇ ପାରେ ତେବେ ହିଁ ଭବିଷ୍ୟତ ଆଶାପ୍ରଦ ହେବ । ଆମେ ଏହା କରି ପାରିଲେ ସ୍ୱରାଜ୍ୟ ସୁଖମୟ ହେବ । ତାହା ନ ହେଲେ ଏହା ଧନର ଅତ୍ୟାଚାର ଓ ଅନ୍ୟାୟକୁ ଡାକି ଆଣିବ ।

ଯଦି ପ୍ରତ୍ୟେକ ବ୍ୟକ୍ତି ନ୍ୟାୟପରାୟଣ ହୁଅନ୍ତି ଏବଂ ସମସ୍ତଙ୍କଠାରେ ଭଗବତ ଭୟ ରହି ପାରନ୍ତା ଏବଂ ପରକୁ ସ୍ନେହ କରିବାରେ ଆନନ୍ଦ ଅନୁଭବ କରି ପାରନ୍ତେ ତେବେ ଆମର ଏ ପୃଥିବୀ ସତେ କେତେ ସୁଖମୟ ନ ହୁଅନ୍ତା !

ପୃଥିବୀରେ ଅନ୍ୟ ଦେଶ ଅପେକ୍ଷା ଭାରତରେ ଏହି ଆଦର୍ଶ ଚରିତାର୍ଥ ହେବାର ଅଧିକ ସମ୍ଭାବନା ରହିଛି ।"

ଏହି ମନ୍ତବ୍ୟକୁ ପଢି ସାରିବା ପରେ ଭରତ ମନରେ ଗୋଟିଏ ପ୍ରଶ୍ନ ଜାଗି ଉଠିଲା ଭାରତର ଜଣେ ମନୀଷୀ, ଚତୁର ରାଜମୀତିଜ୍ଞ, ଯେଉଁ ଆଶା କରିଥିଲେ ତାହା ସତ୍ୟରେ ପରିଣତ ହୋଇ ପାରୁ ନାହିଁ । କାହିଁକି ?

ଉତ୍ତର ପୁଣି ପରକ୍ଷଣରେ ତାହାର ମନରୁ ମିଳିଲା ରାଜାଜୀଙ୍କର ସ୍ୱପ୍ନ ସ୍ୱପ୍ନରେ ରହି ଯିବାର ଏକମାତ୍ର କାରଣ ସ୍ୱାର୍ଥ । ଯେଉଁମାନେ ନେତୃତ୍ୱ ନେଲେ ସେମାନେ ବିଚାର କଲେ ମୁଁ ବଡ଼ ହେବି, ମୋ ପିଲେ ଭଲରେ ରହିବେ, ମୋ ଜାତିକୁ ଉନ୍ନତ କରିବ । ଏହି ଆତ୍ମକେନ୍ଦ୍ରିକ ଭାବ ନେଇ ଯେତିକ ବିଭ୍ରାଟ ଦେଖା ଯାଇଛି, ପ୍ରତ୍ୟେକ ମନ୍ତ୍ରୀମଣ୍ଡଳ ଗଠନ ପରେ ପରେ ଗୋଟିଏ ତଦନ୍ତ କମିଶନ ବସୁଛି । ତେଣୁ ଗାନ୍ଧିଜୀଙ୍କ ପରିକଳ୍ପିତ ରାମରାଜ୍ୟ ସ୍ୱପ୍ନରେ ରହିଯାଇଛି

ମନେ ପଡ଼ିଲା ଏହି ଅଳ୍ପ ଦିନ ତଳେ ପଞ୍ଚାୟତ ନିର୍ବାଚନ ସରିଯାଇଛି । ସେହି ନିର୍ବାଚନରେ ସାମାନ୍ୟ ଓ୍ୱାର୍ଡ଼ ମେମ୍ବରଟିଏ ହେବା ପାଇଁ ଲୋକମାନେ ଯେପରି ଅକାତରେ ଧନର ଅପବ୍ୟବହାର କରିଗଲେ, ଦେଖିଲେ ଦୁଃଖ ଲାଗେ । ନିଜ ପଞ୍ଚାୟତ ଅଞ୍ଚଳର ଲୋକମାନଙ୍କ ପ୍ରବଳ ଅନୁରୋଧକୁ ଉପେକ୍ଷା କରି ନ ପାରି ସେ ଏହିଥର ସରପଞ୍ଚ ପାଇଁ ପ୍ରାର୍ଥୀ ହୋଇଥିଲା । କେହି ତା ସହିତ ପ୍ରତିଦ୍ୱନ୍ଦ୍ୱିତା କଲେ ନାହିଁ । ସମସ୍ତଙ୍କର ସ୍ନେହ, ଶ୍ରଦ୍ଧା ଏବଂ ସହାନୁଭୂତିକୁ ସମ୍ବଳ କରି ସେ ସ୍ୱାଧୀନ ଭାରତର ବିକେନ୍ଦ୍ରୀକରଣ ଶାସନ କ୍ଷମତାର ଏକ ଅଂଶକୁ ହାତକୁ ନେଇଛି । ତାହା ଅଞ୍ଚଳର ସେ ହେଉଛି ନିର୍ବାଚିତ ଜନ ପ୍ରତିନିଧି ।

ସରପଞ୍ଚ ହୋଇ ଦାୟିତ୍ୱ ଗ୍ରହଣ କରିବା ଦିନଠାରୁ ସେ ତାହାର ମାଆ ପାଦ ଛୁଇଁ ନିୟମ କରିଛି ବଞ୍ଚିବା ପାଇଁ ତାହାର ଆଇନ୍ ବ୍ୟବସାୟକୁ ସେ ଠିକ୍ ରୂପେ ଚଳାଇବ । ସେ ରାଜନୀତିରେ ପ୍ରବେଶ କଲେ ସୁଦ୍ଧା କେବଳ ,ସେବକ ହୋଇ ରହିବ । ରାଜନୀତିକୁ ବୃତ୍ତି ବା ପେଷା ରୂପେ ଗ୍ରହଣ କରିବ ନାହିଁ । ଯାହା ସତ୍ୟ ତାହା ଅପ୍ରିୟ ହେଲେ ମଧ୍ୟ ପ୍ରକାଶ କରିବାକୁ କୁଣ୍ଠାବୋଧ କରିବ ନାହିଁ । ତାର ଭାଇମାନେ ତାକୁ ଏଇ ସୁଯୋଗ ଦେଇଛନ୍ତି । ସେମାନଙ୍କର ସେବା ସେ ଅକୁଣ୍ଠ ଚିତ୍ତରେ କରିବ ।

ରାଜନୀତି ଭିତରେ ପ୍ରବେଶ କରି ସ୍ୱାଧୀନ ଭାବରେ ରହିବା ଏକ କଷ୍ଟକର ବ୍ୟାପାର । ତଥାପି ସେ ତାହା ପାଳନ କରିଛି । କିନ୍ତୁ ସେ ଉପଲବ୍ଧି କରି ପାରୁଛି ରାଜାଜୀ ଯାହା ଆଶଙ୍କା କରୁଥିଲେ ତାହା ସତ୍ୟ । ପ୍ରକୃତରେ ଦୁର୍ନୀତି, ଅନ୍ୟାୟ, ଧନର ପ୍ରଭାବ ହେତୁ ଲୋକମାନେ ନର୍କ ଯନ୍ତ୍ରଣା ଭୋଗୁଛନ୍ତି । ମୁନାଫାଖୋର ବ୍ୟବସାୟୀ, ଦୁର୍ନୀତିଗ୍ରସ୍ତ ସରକାରୀ କର୍ମଚାରୀ ଏବଂ ମୁଦ୍ରାସ୍ଫୀତି ଏ ଦେଶର ଅଗ୍ରଗତିକୁ ସମ୍ମିଳିତ ଭାବରେ ବ୍ୟାହତ କରି ଦେଲେଣି ।

ଏହି ତ ଦିନ କେତୋଟା ତଳର କଥା । ଅର୍ଜୁନପୁର ଗାଆଁରେ ହଜାରେ ଜଣ ବାସିନ୍ଦା । ସେମାନଙ୍କ ପାଇଁ ପିଇବା ପାଣିର ବ୍ୟବସ୍ଥା

ନ ଥିଲା । ପଞ୍ଚାୟତ ସମିତିରେ ସେହି ଅଞ୍ଚଳର ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶା କଥା ସେ ନିଜେ ଉତ୍‌ଥାପନ କଲା । ପଞ୍ଚାୟତ ସମିତି ଚେୟାରମ୍ୟାନ୍ ପ୍ରହ୍ଲାଦବାବୁ ସେ ଅଞ୍ଚଳ ପାଇଁ ପୋଖରୀଟିଏ ମଞ୍ଜୁର କରିଦେଲେ ।

ଏହି ଖବର ଯେତେବେଳେ ଅର୍ଜ୍ଜୁନପୁର ଲୋକମାନଙ୍କ ପାଖରେ ପହଞ୍ଚିଲା ସେତେବେଳେ ସେମାନଙ୍କର ଆନନ୍ଦ କହିଲେ ନ ସରେ । ଦଳ ଦଳ ହୋଇ ଗାଆଁ ଲୋକ ତାକୁ ଆସି ବଧାଇ ଜଣାଇବାକୁ ଲାଗିଲେ ।

ମଣିଷ ତ ସେ । ଏତିକରେ ସେ ପୁଲକିତ ହୋଇ ଉଠିଲା । ଆହୁରି କାର୍ଯ୍ୟ କରିବା ପାଇଁ ତାହା ମନରେ ପ୍ରେରଣା ଆସିଲା ।

କିଛି ଦିନ ପରେ ସେହି ଗାଆଁର ଜଣେ ଉତ୍ସାହୀ ଯୁବକ ଆସି ଅଭିଯୋଗ କରି କହିଲେ ଆଜ୍ଞା ଏ କ'ଣ ହେବାକୁ ଯାଉଛି ? ଆମ ଗାଆଁରେ ପୋଖରୀ ଖୋଳା ହେବ ଅଥଚ ମୂଲ ଆମେମାନେ ଲାଗିବୁ ନାହିଁ । ଠିକାଦାର କେତେକ ରେଜା କୁଲିଙ୍କୁ ଆଣି କାମରେ ଲଗାଇବାକୁ ବସିଛି । ଆମେ ଏହା ଆଦୌ କରି ଦେବୁ ନାହିଁ । ମୂଲ ମଜୁରୀ ମିଳୁ ନ ଥିଲାବେଳେ, ଆମ ଗାଆଁ ଲୋକ ଭୋକ ଉପାସରେ ଛଟପଟ ହେଉଛନ୍ତି । ଅଥଚ······

ଭରତ ସେହି ଯୁବକର ଅଭିଯୋଗ ଶୁଣିଲା । ମନେ ମନେ ସେ ସବୁକୁ ଯଥାର୍ଥ ବୋଲି ମନେ କଲା । ପରଦିନ ପଞ୍ଚାୟତ ସମିତି ଚେୟାରମ୍ୟାନଙ୍କ ସହ ସାକ୍ଷାତ୍ କରି ପ୍ରଶ୍ନ କରିଥିଲା ଆଜ୍ଞା, ଅର୍ଜ୍ଜୁନ-ପୁରରେ ଯେଉଁ ପୋଖରୀ ଖୋଳା ହେଉଛି, ସେହି କାର୍ଯ୍ୟ ପାଇଁ ନିଯୁକ୍ତ ହୋଇଥିବା କଣ୍ଟ୍ରାକ୍ଟର ସେହି ଗାଆଁର ଲୋକମାନଙ୍କୁ କାମରେ ନ ଲଗାଇ ଅନ୍ୟଠାରୁ ରେଜା କୁଲି ଆଣି କାମ ଆରମ୍ଭ କରୁଛି । ଏହା ଦ୍ୱାରା ଆମ ପଞ୍ଚାୟତ ସମିତିର ଉଦ୍ଦେଶ୍ୟ ସାଧିତ ହେଲା ପରି ମୋର କାହିଁକି ମନେ ହେଉନାହିଁ ।

ହସି ହସି ପ୍ରହ୍ଲାଦ ବାବୁ କହିଲେ ପଞ୍ଚାୟତ ସମିତିର ଉଦ୍ଦେଶ୍ୟ ଥିଲା ସେହି ଗାଆଁର ଲୋକମାନଙ୍କୁ ଜଳ କଷ୍ଟରୁ ମୁକ୍ତ

ଦେବା । ତାହା ତ ହେଉଛି । ପୋଖରୀ ଖୋଲା ହେଲା ପରେ ପାଣି ସେମାନେ ବ୍ୟବହାର କରି ପାରିବେ ।

ଭରତ ଚେୟାରମେନଙ୍କ ତୁଣ୍ଡରୁ କଥା ଛଡ଼ାଇ ନେଇ କହିଲା : ସେ କଥା ଆଜି ମୁଁ ବୁଝି ପାରୁଛି । ପୋଖରୀ ଯେତେବେଳେ ଅର୍ଜ୍ଜୁନପୁର ଗାଆଁରେ ଖୋଲା ହେବ ତେଣୁ ପାଣି ତ ସେଠିକାର ଲୋକେ ପିଇବା କଥା ପିଇବେ । କିନ୍ତୁ ଏହା ସହିତ ଆମର ଲକ୍ଷ୍ୟ ଥିଲା ବେକାର ଲୋକଙ୍କୁ ଆମେ କାମ ଯୋଗାଇ ଦେଇଥାନ୍ତି ଏବଂ ସେମାନେ ମୂଲ ମଜୁରୀ ପାଉ ନଥିବାବେଳେ କାମ କରି ଅନ୍ତତ ବଞ୍ଚି ଯାଇଥାନ୍ତେ ।

ପ୍ରହ୍ଲାଦ ବାବୁ କହିଲେ ବର୍ତ୍ତମାନ ମହାଭାରତୀୟ ସ୍ରୋତରେ ଆମକୁ ଭାସିଯିବାକୁ ହେବ । କର୍ମ କ୍ଷେତ୍ରରେ ତେଲଙ୍ଗା ବଙ୍ଗାଳୀ, ଓଡ଼ିଆ ଭଲ ବାଛ ବିଚାର ରଖିଲେ ଚଳିବ ନାହିଁ ।

ସାମାନ୍ୟ ଉତ୍ତେଜିତ ହୋଇ ଭରତ କହିଲା ଆପଣ ଦୁର୍ଦ୍ଦିନରେ ସେମାନଙ୍କର ଦୁଃଖ ବୁଝିବେ, ଏହି ଆଶାରେ ସିନା ଆପଣଙ୍କୁ ଭୋଟ ଦେଇଥିଲେ ?

ବଦ୍ରୂପର ହସ ହସି ପ୍ରହ୍ଲାଦ ବାବୁ କହିଲେ : ଭୁଲ ବୁଝିଛନ୍ତି ଆପଣ । ସେମାନେ ମୋତେ ଭୋଟ ଦେଇଥିଲେ ନା ମୁଁ ସେମାନଙ୍କର ଭୋଟ ଖରିଦ କରିଥିଲି ସେହି କଥା ଆଗ ସେମାନଙ୍କୁ ପଚାରି ବୁଝି ଆସନ୍ତୁ । ଆପଣ ପିଲା ଲୋକ, ନୂଆ କରି ରାଜନୀତିକୁ ପ୍ରବେଶ କରିଛନ୍ତି, ଓକିଲାତି ଆପଣଙ୍କର ବେଉସା ଏବଂ ରାଜନୀତି ଆପଣଙ୍କର ଖିଆଲ ବା ହବି କିନ୍ତୁ ରାଜନୀତି ଆମର ବୃତ୍ତି । ଆମର ଉମର ବଢ଼ିଲାଣି ଏଇଥିରେ । ପିଲାମାନଙ୍କ ପଢ଼ା ବହିରେ ଭୋଟ ଦେଲେ ନୋଟ ଲେଖା ହୋଇଥିଲା ବୋଲି ସମସ୍ତ ଅଭିଭାବକମାନେ ପାଟିତୁଣ୍ଡ କରିବାରୁ ତାହା ସଂଶୋଧିତ ହୋଇଗଲା ସିନା କିନ୍ତୁ ଭୋଟରମାନଙ୍କର ମନରୁ କ'ଣ ଭୋଟ ପାଇଁ ନୋଟ ନେବାର ସ୍ପୃହା କମି ଆସିଲାଣି ? ଯେଉଁ ଅର୍ଜ୍ଜୁନପୁରର ଯୁବକମାନେ ଆଜି ପ୍ରତିବାଦ କରୁଛନ୍ତି ସେହିମାନେ ପରା ତାଙ୍କର କ୍ଲବ ଘର ପାଇଁ ନଗଦ

ପାଞ୍ଚଶହ ଟଙ୍କା ନେବା ପରେ ତାଙ୍କ ଗାଆଁର ଖୋଟ ଦେଇଛନ୍ତି । ତେଣୁ······

ଭରତ ଏତିକ ଶୁଣି ସାମାନ୍ୟ ବିଚଳିତ ହୋଇ ପଡ଼ିଲା । ତା ଭିତରୁ ଆପଣା ଛୁଏଁ ବାହାରି ପଡ଼ିଲା ଏହାର ମାନେ ?

ହସି ହସି ପ୍ରହ୍ଲାଦ ବାବୁ କହିଲେ ଓକିଲାତି ଆଉ ରାଜନୀତି ଦୁଇଟା ଅଲଗା ଅଲଗା ପନ୍ଥା । ଓକିଲାତି ଆଇନକୁ ନେଇ ହୁଏ ଆଉ ରାଜନୀତି ଛଳନାକୁ ନେଇ କରାଯାଏ । ଅର୍ଜୁନପୁର ଗାଆଁର ଲୋକମାନଙ୍କୁ କାମରେ ଲଗାଇଲେ କଣ୍ଟ୍ରାକ୍ଟର ସେମାନଙ୍କୁ ମୂଲରେ ଠକି ପାରିବ ନାହିଁ । ନଗରର ଲୋକଙ୍କୁ ଠକି ହୁଏ । ତେଣୁ ସେ ଅଳ୍ପ ମୂଲରେ ରେଜା କୁଲିଙ୍କୁ ଲଗାଇଛି । ଅବଶ୍ୟ ତାହାର ଟେଣ୍ଡରେ ସବକନମ୍ବ ଏବଂ ତାହାକୁ ଆଇନ ଅନୁସାରେ ମଞ୍ଜୁର କରାଯାଇଛି । ଏହା ଭିତରେ ଯେତିକ ଅବୋଧ୍ୟ ରହିଗଲା ତାହାର ନାମ ରାଜନୀତି । ଏଥିରେ ଦୁଇକୂଳ ରକ୍ଷା ହୁଏ । ପିତୃକୂଳ ସଙ୍ଗେ ସଙ୍ଗେ ମାତୃକୂଳ ମଧ୍ୟ ଖୁସି ହୁଅନ୍ତି ।

ଭରତର ପ୍ରହ୍ଲାଦ ବାବୁଙ୍କୁ ଆଉ କିଛି କହିବାର ନଥିଲା । ସେ ନୀରବ ହୋଇ ବିଦାୟ ନେଇ ଚାଲି ଆସିଲାବେଳେ ପଛରୁ ପ୍ରହ୍ଲାଦ ବାବୁଙ୍କ ବ୍ୟଙ୍ଗବାଣୀର ଭଗ୍ନାଂଶ କେତେ ପଦ ତାର କାନରେ ଶୁଣି ପାରିଥିଲା । ସେ କହୁଥିଲେ ଛେଳିଙ୍କ ଗୋଡ଼ରେ ଯଦି ଧାନ ଅମଳ କରି ହେଉଥାନ୍ତା, ତେବେ ବଳଦ କାହିଁକି ଲୋଡ଼ା ପଡ଼ନ୍ତେ ?

ରାଜାଜୀଙ୍କର ନେଳିଲି ଡାଏରୀ ପଢ଼ୁପଢ଼ୁ ଭରତ ଭାବୁଥିଲା : ପ୍ରକୃତରେ ଧନର ପ୍ରଭାବ, ତାହା ସଙ୍ଗେ ଦୁର୍ନୀତି ଲାଗି ଆଜି ସ୍ୱାଧୀନ ଭାରତର ଏହି ଅବସ୍ଥା ।

ମନ ଭିତରୁ ତାହାର ଯେପରି କିଏ ବିଦ୍ରୋହ ଘୋଷଣା କରି କହି ଉଠିଲା : ପ୍ରହ୍ଲାଦ ବାବୁଙ୍କ ଭଳି ଯେଉଁ ନେତାମାନେ ଆଜି ରାଜନୀତିକୁ ସେମାନଙ୍କର ଜୀବିକା ବୋଲି ଗ୍ରହଣ କରି ଆସିଛନ୍ତି, ସେମାନଙ୍କର ମୁଖା ତାହାକୁ ଖୋଲି ଦେବାକୁ ହେବ । ଗାନ୍ଧିଜୀ ଭଳି ଜଣେ ଦେଶକୁ ପରାଧୀନତାରୁ **ମୁକ୍ତ** କରିଥିଲେ । ସେହିପରି ଜଣ ଜଣକୁ ମିଶାଇ ଗଣ । ଗଣ ଚେତନା ସୃଷ୍ଟି କରିବାକୁ ହେଲେ ଜଣ ଜଣକୁ ନିଷ୍ଠାପର କର୍ମୀ ହେବାକୁ ପଡ଼ିବ ।





ସଂସାରରେ ଯେଉଁମାନେ ବଡ଼ ହୋଇଛନ୍ତି ସେମାନଙ୍କର ଧର୍ମ ଅଲଗା । ସେମାନେ ଧରାବନ୍ଧା ନିୟମ ମାନି ଚଳନ୍ତି ନାହିଁ । ନିୟମ ସେମାନଙ୍କୁ ମାନି ଚାଲେ । ସେମାନଙ୍କ ପାଇଁ ନିୟମ ସେମାନେ ତିଆରି କରନ୍ତି । ନିଜକୁ ସୁହାଇଲା ଭଳି । ଏହା ପୁଣି ସଦାବେଳେ ପରିବର୍ତ୍ତନଶୀଳ ।

ଭରତ ରାଜନୀତିରେ ପ୍ରବେଶ କରୁ କରୁ ଏହି ମହାନ୍ ସତ୍ୟକୁ ଉପଲବ୍ଧି କଲା ।

ଚେୟାରମ୍ୟାନ ପ୍ରହ୍ଲାଦବାବୁଙ୍କର ଯେତିକି ଶିକ୍ଷାଗତ ଯୋଗ୍ୟତା ସେତିକରେ ସେ ସରକାରୀ ଚାକିରି ପାଇଁ ପ୍ରାର୍ଥୀ ହୋଇ ଥିଲେ କେଉଁ ଅଫିସରେ ପିଅନଟିଏ କିମ୍ବା ଅର୍ଦ୍ଦଳିଟିଏ ହୋଇ ପାରିଥାନ୍ତେ । ପାଠ ତାଙ୍କର ଚତୁର୍ଥ କିମ୍ବା ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ । ଯେତିକି ବିଦ୍ୟାକୁ ଭୂଷଣ କରି ସେ ଆଜିକାଲିକାର ଦୁନିଆରେ ଯେତିକି ଅଗ୍ରଗତି କରିଛନ୍ତି ତାହା ଚିନ୍ତା କଲେ ବିସ୍ମିତ ହେବାକୁ ହୁଏ । ଲୋକମାନଙ୍କଠାରୁ ଶୁଣିଛି ପ୍ରହ୍ଲାଦ ବାବୁ ପ୍ରଥମେ ଏକ ବେସରକାରୀ ଅନୁଷ୍ଠାନରେ ଅର୍ଦ୍ଦଳି କମ

କରୁଥିଲେ । ରହୁଥିଲେ ପ୍ରବାସରେ । ଘରେ ରହୁଥିଲେ ତାଙ୍କର ପରିବାର । ଚଳିବାକୁ ବଡ଼ କଷ୍ଟ ହେଉଥିଲା ।

କଲିକତାରେ ହିନ୍ଦୁ ମୁସଲମାନ ଗଣ୍ଡଗୋଳ ବେଳେ ନିଜର ମୌତ୍ରିକ ଜୀବନକୁ ବଞ୍ଚାଇବା ପାଇଁ ପ୍ରହ୍ଲାଦ ବାବୁ ଯେତେବେଳେ ଗାଆଁକୁ ଫେରି ଆସିଲେ, ସେତେବେଳେ ତାଙ୍କ ସ୍ତ୍ରୀଙ୍କର ଏକା ଜିଦ୍ ଆଉ ତୁମେ ବିଦେଶ ଯିବା ଦରକାର ନାହିଁ । ଯେଉଁ ମାଣିକ ଗୁଣ୍ଡିକ ଅଛୁ ସେତିକ ଚାଷବାସ କରି ହାଡ଼ ମାଟି ହାଡ଼ରେ ନିହିଲେ ଆମ ପେଟ ଅପୋଷା ରହିବ ନାହିଁ ।

ସ୍ତ୍ରୀଙ୍କ କଥା ଅବଶ୍ୟ ପ୍ରହ୍ଲାଦ ବାବୁ ମାନିଲେ । ଆଉ ବିଦେଶ ଗଲେ ନାହିଁ । କିନ୍ତୁ ଚାଷ କରିବାକୁ ବିଲକୁ ଗଲେ ନାହିଁ । ଦେଶ ନୂଆ କରି ସ୍ୱାଧୀନତା ପାଇଥାଏ । ନେତୃତ୍ୱ ନେଇଥାନ୍ତି ଦୁଷ୍ମନ୍ତ ବାବୁ । ପ୍ରହ୍ଲାଦ ବାବୁଙ୍କୁ ସୁବର୍ଣ୍ଣ ସୁଯୋଗ ମିଳିଗଲା । ସେ କଲିକତିଆ ପୋଷାକକୁ ଫିଙ୍ଗି ଖଦଡ଼ ଧୋତି ପଞ୍ଜାବି ପିନ୍ଧି ହଠାତ୍ ଦିନେ ଦୁଷ୍ମନ୍ତ ବାବୁଙ୍କର କର୍ମୀ ରୂପେ ଦେଖା ଦେଲେ ।

ସମୟ ଗଡ଼ି ଚାଲିଲା । ଦୁଷ୍ମନ୍ତ ବାବୁ କର୍ମୀରୁ ଏମ୍. ଏଲ୍. ଏ. । ଏମ୍. ଏଲ୍. ଏରୁ ମନ୍ତ୍ରୀ ହେଲେ । ଆଉ ପ୍ରହ୍ଲାଦ ବାବୁ କର୍ମୀରୁ ସରପଞ୍ଚ, ସରପଞ୍ଚରୁ ଉନ୍ନୀତ ହୋଇ ପଞ୍ଚାୟତ ସମିତି ଚେୟାରମେନ ହୋଇଛନ୍ତି । ହସି ହସି ବିନୟ ବଚନ କହନ୍ତି । ସମସ୍ତଙ୍କୁ ମୁଣ୍ଡ ନୁଆଇଁ ପ୍ରଣତି ଜଣାନ୍ତି । ଚିହ୍ନିଥାନ୍ତୁ କି ନଥାନ୍ତୁ ଭଲ ମନ୍ଦ ପଚାରି ଦିଅନ୍ତି ।

ଦୁଷ୍ମନ୍ତ ବାବୁ ରହନ୍ତି ସହରରେ । ନିର୍ବାଚନ ମଣ୍ଡଳୀର ହାନିଲାଭର ଦାୟିତ୍ୱ ସେ ବୁଝନ୍ତି–ପ୍ରହ୍ଲାଦ ବାବୁଙ୍କ ଠାରୁ ଏବଂ ଗାଆଁର ଜମିବାଡ଼ିର ହାନିଲାଭର ତତ୍ତ୍ୱ ବୁଝନ୍ତି ନିଜ ଗୁମାସ୍ତାଙ୍କଠାରୁ ।

କର୍ମଚାରୀଙ୍କୁ ବିଶ୍ୱାସ ନ କଲେ ବ୍ୟବସାୟ କ'ଣ ସୁରଖୁରରେ ଆଗେଇ ପାରେ ? ସେହିପରି ରାଜନୀତିରେ କର୍ମୀମାନଙ୍କୁ ଅବିଶ୍ୱାସ କଲେ ନେତାର ପତନ ସୁନିଶ୍ଚିତ ।

ମନ୍ତ୍ରୀଙ୍କର ପାଖ ଲୋକ ଭାବରେ ପ୍ରହ୍ଲାଦ ବାବୁଙ୍କର ନିର୍ବାଚନ ମଣ୍ଡଳୀରେ ଅଖଣ୍ଡ କ୍ଷମତା । ସରକାରୀ କର୍ମଚାରୀଙ୍କୁ ବଦଳି ଧମକ ଠାରୁ ପ୍ରାଥମିକ ଶିକ୍ଷକମାନଙ୍କୁ ଏପଟ ସେପଟ କରିବାରେ ସେ ବେଶ ଦକ୍ଷତା ଦେଖାଇ ପାରିଛନ୍ତି ।

ନିଜର ପ୍ରତିପତ୍ତି ବଳରେ ପୈତୃକ ସଂପତ୍ତି ବେଶ ବଢ଼ିପାରିଛି । ଗାଆଁରେ କୋଠାଘର ତୋଳିଛନ୍ତି । ମାଣେ କି ଗୁଣ୍ଠେ ଯାହା ଜମି ଥିଲା ତାହା ବର୍ତ୍ତମାନ ବାଟିଏ ହୋଇଛି । ପୁଅ ଗୋଟିଏ । ପାଠ ଯାହା ପଢ଼ିଛି ତାହା ଅପେକ୍ଷା ଶାଠ ବେଶୀ ଶିଖିଛି । ତାକୁ ବ୍ଲକ୍‌ର କଣ୍ଟ୍ରାକ୍ଟର କରି ଦେଇଛନ୍ତି । ପଞ୍ଚାୟତ ସମିତିର ସବୁ ରାସ୍ତାଘାଟ, ବନ୍ଧବାଡ଼ର କାମ ପୁଅ ତାଙ୍କର ଠିକା ନିଏ ।

ବିନା ବେତନରେ ସେ ଦେଶସେବୀ । ସରପଞ୍ଚ କାର୍ଯ୍ୟ ପାଇଁ ସେ ଭତ୍ତା ପାଇ ନାହାନ୍ତି କିମ୍ବା ଚେୟାରମ୍ୟାନ କାମ ପାଇଁ ଦରମା କେବେ ଦସ୍ତଖତ କରି ନେଇ ନାହାନ୍ତି । ତେବେ ଏଇ ନିର୍ମଳ ଦେଶସେବାରୁ ସେ କିପରି ଏତେ ବିପୁଳ ସଂପତ୍ତିର ଅଧିକାରୀ ହେଲେ ସେହି ପ୍ରଶ୍ନ ଯେତେବେଳେ ଲୋକମାନଙ୍କ ଭିତରେ ଦେଖାଦିଏ ସେତେବେଳେ କେତେକ କହନ୍ତି ମାଛ ପାଣିରେ ରହିଲେ ପାଣି ନିଶ୍ଚୟ ପିଇବ । ସେଥିପାଇଁ କ'ଣ ମାଛର ଦୋଷ ? ଆଉ କେତେକ କହନ୍ତି ଘାସ ଚେଞ୍ଚଲେ ହାତ ନିଶ୍ଚୟ ଚିକ୍‌ଣ ହୁଏ ।

ଭିତର ଅନୁସଂଧାନ କରି ଜାଣିଲି ଗାଆଁକୁ ଆସୁଥିବା ମକ୍କା ଗୁଣ୍ଡ, ସୋୟାବିନ୍ ତେଲ, ଖାଦ୍ୟ ପାଇଁ କାର୍ଯ୍ୟ ଯୋଜନାର ଗହମ, ଗୁଡ଼ଲ, ଏବଂ ପ୍ରାଥମିକ ଶିକ୍ଷକଙ୍କ ବଦଳିଜନିତ ଭେଟିରେହିଁ ପ୍ରହ୍ଲାଦ ବାବୁଙ୍କର କୋଠାର ଇଟା ପୋଡ଼ା ହୋଇ ଯୋଡ଼ା ହୋଇଛି ।

ଯୋଜନା ନାମରେ ଯେତେ ଋଣ ଟଙ୍କା ଲୋକମାନଙ୍କ ପାଖକୁ ଆସେ ଯଥା କୂଅ ଖୋଳିବା, ମେଣ୍ଢା କିଣିବା, କୁକୁଡ଼ା ପାଳନ, ଜର୍ସି ଗାଈ କିଣିବା ପ୍ରଭୃତିରେ ପ୍ରହ୍ଲାଦ ବାବୁଙ୍କର ସୁପାରିଶ୍

ନହାନ୍ତି ଅପରିହାର୍ଯ୍ୟ । ଲୋକମାନଙ୍କୁ ସାହାଯ୍ୟ କରିବା ବେଳେ ସେମାନେ ଫଳେ ପୁଷ୍ପେ ଯାହା ଦିଅନ୍ତି ପ୍ରହ୍ଲାଦ ବାବୁ ତାହା ନିର୍ବିଘ୍ନରେ ଗ୍ରହଣ କରନ୍ତି । ତାଙ୍କୁ ଯେବେ ଏ ବିଷୟରେ କେହି କେବେ ପ୍ରଶ୍ନ କଲେ ହୁଏତ ସେ କହନ୍ତି ତାଙ୍କ ଅଞ୍ଚଳର ଲୋକମାନଙ୍କ ମନରେ ଦୁଃଖ ଦେବାକୁ ସେ ବୋଧହୁଏ ଉଚିତ୍ ବିଚାରୁ ନାହାନ୍ତି ।

ଭରତ ଭାବୁଥିଲା ପ୍ରକୃତରେ ଏତେଦିନ ପରେ କପି ସତ କହୁଛି । ଏଣିକି ତାହାର ମୃତ୍ୟୁବେଳ ଆସନ୍ନ ଏଥିରେ କୌଣସି ସନ୍ଦେହ ନାହିଁ । ପ୍ରହ୍ଲାଦ ବାବୁ ଠିକ୍ କହୁଛନ୍ତି ରାଜନୀତି ତାଙ୍କର ଜୀବିକା । ସେ ତାଙ୍କର ଜୀବନ ବଞ୍ଚାଇବା ପାଇଁ ଦେଶ ସେବାକୁ ଧ୍ୱଜା କରି ଧରି ଚାଲିଛନ୍ତି ।

ଅତି ଲେମ୍ବୁ ଚିପୁଡ଼ିଲେ ପିତା ଲାଗେ । ଅତି ଗର୍ବରୁ ଲଙ୍କାର ରାବଣ ମଲା ଆଉ ଅତି ଦୁର୍ନୀତିରୁ ପ୍ରହ୍ଲାଦବାବୁଙ୍କ ଅବସ୍ଥା............

ଗୋପପୁରରେ କୃଷ୍ଣ ମଥୁରାର କଂସର ନିଧନ ପାଇଁ ଜନ୍ମ ନେଇଥିଲେ । ସେ ହେବ ଏଇଭଳି ଦେଶର ଶତ୍ରୁମାନଙ୍କ ପାଇଁ ଏକ ଶନିଗ୍ରହ । ସେମାନଙ୍କର ମୁଖା ଖୋଲି ଦେବାକୁ ତାହାକୁ ବେଶି ସମୟ ଲାଗିବ ନାହିଁ । ଘର ଭିତରେ ପଶିଲେ ଆଲୁଅ ଆଉ ଅନ୍ଧାର ଜାଣିଲା ପରି ପ୍ରହ୍ଲାଦ ବାବୁଙ୍କ ମହକୁମା ପଞ୍ଚାୟତ ସମିତିରେ ଯୋଗ ଦେବା ପରେ ତାହାଙ୍କର ଦୁର୍ନୀତିର ସୂତ୍ର ଜାଣିବାକୁ ତାହାର ଆଉ ବାକି ରହିଲା ନାହିଁ ।

ଏଣିକି ପ୍ରହ୍ଲାଦ ବାବୁ ଖସି ଯାଇପାରିବେ ନାହିଁ । ମନ୍ତ୍ରୀ ଦୁଷ୍ମନ୍ତ ବାବୁ ଆଉ ଘଣ୍ଟ ଘୋଡ଼ାଇ ପାରିବେ ନାହିଁ । କାରଣ ଏ ଦେଶରେ ଆଇନର ଶାସନ ଚାଲିଛି । ପଞ୍ଚାୟତ ସମିତିର ପାଣ୍ଠି ଯେତିକି ତୋଷରପାତ ହୋଇଛି ତାହାର ଯେଉଁ ଅଭିଯୋଗ ଜିଲ୍ଲା କଲେକ୍ଟରଙ୍କ ପାଖରେ ଭରତ ଉପସ୍ଥାପିତ କରିଛି ସେତିକି ପ୍ରମାଣ ହୋଇଗଲା ପରେ; ପ୍ରହ୍ଲାଦ ବାବୁ ସ୍ତ୍ରୀ ହାତରେ ପିତଳ ଖଡ଼ୁ ବଦଳରେ ଦେହରେ ଭରି ହୋଇଥିବା ଭରି ଭରି ସୁନା ଗହଣାକୁ କାଟିବାକୁ ସମୟ ପାଇବେ ନାହିଁ ।



ପିମ୍ପୁଡ଼ା ପିମ୍ପୁଡ଼ି ବାହା ହୋଇ ଗଲେ
ଗଗନେ ଉଡ଼ିଲା ଧୂଳି
ବଳରେ କଙ୍କଡ଼ା ମାଦଳ ଧରିଲେ
ବେଙ୍ଗ ଦେଲେ ହୁଳହୁଳି
କୁକୁର ଗୋଡ଼ରେ ଝୁମୁକା କଠାଉ
ନେଉଳ ନାକରେ ଗୁଣା
ମୂଷା ଶୋଇଥିଲା ରତ୍ନ ପଲଙ୍କରେ
ମଞ୍ଜାରୀ ବଜେଇ ବଇଣା ।

ସକାଳର 'ଜନମତ' କାଗଜର ସଂବାଦ ସଙ୍ଗେ ପ୍ରହ୍ଲାଦ ବାବୁଙ୍କ ସ୍ୱତନ୍ତ୍ର ବାର୍ତ୍ତାବହ ହାତରେ ଚିଠି ଖଣ୍ଡି ପଢ଼ି ସାରିବା ପରେ ଭରତର ଅନେକ ଦିନ ତଳେ ଶୁଣିଥିବା ଏହି ଗୀତଟି ମନେ ପଡ଼ିଗଲା । ସେ ଯେତେବେଳେ ଅତି ପିଲା ହୋଇଥିଲା, ଅଝଟିଆ ହେଲାବେଳେ ତାହାର ଆଈ ଏହି ଗୀତଟି ବୋଲୁଥିଲା ସେତେବେଳେ ଏହି ଲୋକଗୀତର ଅର୍ଥ ସେ ଆଦୌ ବୁଝି ନଥିଲା । କାନକୁ ଭଲ ଶୁଭୁଥିଲା ତେଣୁ ମନକୁ ଛୁଉଁଥିଲା ।

ଏହି ବର୍ଷ ପ୍ରଗତି ସାଂସ୍କୃତିକ ସଂସ୍ଥା ତରଫରୁ ଜନ ସେବା ପାଇଁ ମନ୍ତ୍ରୀ ଦୁଷ୍ମନ୍ତ ପଟ୍ଟନାୟକଙ୍କୁ ଲୋକସେବକ ଉପାଧିରେ ଭୂଷିତ କରାଯାଇଛି । 'ଜନମତ'ରେ ବିରାଟ ଫଟୋ ସହ ଦୁଷ୍ମନ୍ତ ବାବୁଙ୍କର ଦେଶ ସେବାର ବିସ୍ତୃତ ବିବରଣୀ ପ୍ରକାଶ ପାଇଛି ।

ପଞ୍ଚାୟତ ସମିତି ଚେୟାରମେନ୍ ପ୍ରହ୍ଲାଦ ବାବୁ ଲେଖିଛନ୍ତି, ନଗର ଉନ୍ନୟନ ଓ ପଞ୍ଚାୟତରାଜ ବିଭାଗ ମନ୍ତ୍ରୀ ଭାବରେ ଦୁଷ୍ମନ୍ତ ବାବୁ ଏହି ଉପାଧିରେ ଭୂଷିତ ହୋଇଥିବା ହେତୁ ତାହାଙ୍କୁ ପଞ୍ଚାୟତ ସମ୍ବର୍ଦ୍ଧିତ ସମିତି ତରଫରୁ ଏକ ପୌର ସଂବର୍ଦ୍ଧନା ଦିଆଯାଇ ସଂବର୍ଦ୍ଧିତ କରାଯିବ । ସେଥିପାଇଁ ସେ ପ୍ରତ୍ୟେକ ସରପଞ୍ଚଙ୍କର ଅନୁମତି ପାଇ ସାରିଛନ୍ତି । ତେଣୁ ଆଶା କରିଛନ୍ତି ଭରତ କେବେ ଅନ୍ୟ-ମାନଙ୍କ ସମର୍ଥନ ବିରୁଦ୍ଧରେ ଯିବ ନାହିଁ ।

ସ୍ୱାର୍ଥପର ଲୋକେ ସ୍ତୁତି କରିବା ପାଇଁ ଘୃଣା ବୋଧ କରନ୍ତି ନାହିଁ । ସେହିପରି ପ୍ରହ୍ଲାଦ ବାବୁ ଭରତର ନିର୍ଭୀକତା ଓ ସ୍ପଷ୍ଟବାଦିତାକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଲେଖିଛନ୍ତି ପ୍ରତିଭାର ଉପଯୁକ୍ତ ପୂଜା ନକଲେ ଆମେ ଯେପରି ଆମର କର୍ତ୍ତବ୍ୟରେ ହେଳା କରିବା ସେହିପରି ଆମ ପଞ୍ଚାୟତ ସମିତି ଦୁଷ୍ମନ୍ତ ବାବୁଙ୍କ ସୁନଜରରୁ ବଞ୍ଚିତ ହୋଇ ପାରେ । ମଣିଷ ଏହି ସମାଜର ଜଣେ ଜଣେ ବ୍ୟକ୍ତି । ସାମାଜିକ ନିୟମରେ ସେ ବନ୍ଧା । ସେ ସ୍ୱାଧୀନ ଭାବରେ ଜନ୍ମ ନେଇଛି ସତ କିନ୍ତୁ ସ୍ୱେଚ୍ଛାଧୀନ ନୁହେଁ । ସାମାଜିକ ହେବାକୁ ହେଲେ ଅନେକ କ୍ଷେତ୍ରରେ ନିଜର ଇଚ୍ଛାକୁ ଦମନ କରିବାକୁ ହୋଇଥାଏ । ପଞ୍ଚାୟତ ସମିତିର ସମୂହ କଲ୍ୟାଣ ଦୃଷ୍ଟିରୁ ସେଥିପାଇଁ ସେ ଭରତର ସହଯୋଗ ଲୋଡ଼ିଛନ୍ତି ।

ଛାତ୍ରାବସ୍ଥାରୁ ଆରମ୍ଭ କରି ପ୍ରତ୍ୟକ୍ଷ ରାଜନୀତି କ୍ଷେତ୍ରରେ ପ୍ରବେଶ କଲା ପର୍ଯ୍ୟନ୍ତ ସେ ଦୁଷ୍ମନ୍ତ ବାବୁଙ୍କର ରାଜନୈତିକ ଚରିତ୍ର ବିଷୟରେ ସଂପୂର୍ଣ୍ଣ ଅବହିତ ଅଛି । ସ୍ୱାର୍ଥ ପାଇଁ ସେ ରାଜନୀତିକୁ ତାଙ୍କର ବୃତ୍ତି କରିଛନ୍ତି । ଏକର ଏକର ଜମି ରଖି ସେ ଭାଗ ଚାଷୀଙ୍କୁ ହଇରାଣ କରୁଥିଲେ ବେଳେ ଏବେ ଲଙ୍ଗଳ ଯାହାର ଜମି ତାହାର ଏହି

ପ୍ରୋଗାନ ଦିଅନ୍ତି । ନିଜେ ରାଜଧାନୀରେ ଶୀତତାପ ନିୟନ୍ତ୍ରିତ ପ୍ରାସାଦ ତିଆରି କରି, ସରକାରୀ କ୍ୱାର୍ଟରରେ ରହି ତାହାକୁ ଭଡ଼ା ଲଗାଇ; ଲୋକମାନଙ୍କୁ ଟାଇଲ ଛପର ଘର କରିବାକୁ ଉପଦେଶ ଦିଅନ୍ତି । ପୁଅ ନାମରେ ବିଦେଶୀ ମଦ ଦୋକାନ ଲାଇସେନ୍ସ ଏବଂ ବିଳାସପୂର୍ଣ୍ଣ ହୋଟେଲ ବ୍ୟବସାୟ ଚଳାଉଥିବା ବେଳେ ଜନସାଧାରଣଙ୍କୁ ସେବାର ମହତ୍ତ୍ୱ ବୁଝାନ୍ତି । ସଞ୍ଚୟର ମୂଲ୍ୟବୋଧ ବିଷୟରେ ଶସ୍ତା ଭାଷଣ ଦିଅନ୍ତି ।

ଭରତଙ୍କୁ ହସ ମାଡ଼ିଲା । ତାହାକୁ ଲାଗିଲା ନିଜେ ମଦ ଖାଇ ନିଶାରେ ଚୁର ଥିବା ବ୍ୟକ୍ତି ନିଶା ନିବାରଣ ନୀତିର ଆଦର୍ଶ ବ୍ୟାଖ୍ୟାନ କଲା ସମୟରେ ତାହାର ପ୍ରଚାରକୁ ଶୁଣୁଥିବା ଲୋକ ଯେଉଁ ଭଳି ଗ୍ରହଣ କରନ୍ତି ସେହି ଭଳି ଦୁଷ୍ମନ୍ତ ବାବୁଙ୍କ ଭାଷଣ ଶୁଣି ଲୋକମାନେ ପ୍ରତିକୂଳ ମନ୍ତବ୍ୟ ଦେଉଛନ୍ତି । ସେହିଭଳି ଜଣେ ବ୍ୟକ୍ତି ସେବା ପାଇଁ ଆଜି ଏକ ସାଂସ୍କୃତିକ ସଂସ୍ଥା ତରଫରୁ ସଂବର୍ଦ୍ଧିତ ହୋଇଛନ୍ତି । 'ସେବା'—ଏହି ଶବ୍ଦଟିକୁ ଦୁଷ୍ମନ୍ତ ବାବୁ ମହାପ୍ରସାଦ ସେବା କରିବା ଅର୍ଥରେ ସର୍ବଦା ବ୍ୟବହାର କରି ଆସିଛନ୍ତି । ତାହାର ଯେ ଅନ୍ୟ ଏକ ମୂଲ୍ୟବୋଧ ଅଛି ତାହା ବୋଧହୁଏ ତାହାଙ୍କୁ ଜଣା ନାହିଁ ।

ଭରତର ମନେ ହେଲା ଇତିହାସର ପୃଷ୍ଠା ଓଲଟାଇଲେ ଉପାଧି ପ୍ରଦାନ ଭାରତୀୟ ସଂସ୍କୃତିରେ ନଥିଲା । ଯେଉଁ ଦିନ ପର୍ଯ୍ୟନ୍ତ ଏହି ଜାତି ତାହାର ସଂସ୍କୃତି ଓ ଜାତୀୟତାରେ ଉଦ୍‌ବୁଦ୍ଧ ଥିଲା ସେତେ ଦିନ ପର୍ଯ୍ୟନ୍ତ ଏହାର ଉନ୍ନତ ଥିଲା, ସମ୍ମାନବୋଧ ଥିଲା । ଯେଉଁ ଦିନ ଏ ଜାତି ଅନୁକରଣ ପ୍ରିୟ ହୋଇ ଅନ୍ୟ ସଂସ୍କୃତିର ଗୋଡ଼ାଣିଆ ହେଲା, ସେହି ଦିନ ଠାରୁ ଏହାର ଅଧଃପତନ ହେଲା । ପ୍ରତିଭା ପୂଜା ନାମରେ ଏ ଦେଶରେ ବ୍ୟକ୍ତି ପୂଜା ଏବଂ ଖୋସାମତିର ପାଳି ଆରମ୍ଭ ହୋଇଗଲା ।

ଏ ସମାଜରେ ଯଶ କ୍ଷଣସ୍ଥାୟୀ ଲୋକପ୍ରିୟତା ଆକସ୍ମିକ ଭାବରେ ଆସେ ଧନ ଆଜି ଅଛି କାଲି କାଲିକି ନଥିବ । ଗୋଟିଏ ବିଷୟ ଚିରସ୍ଥାୟୀ ହୋଇ ରହିବ । ସେହିଟି ହେଲା 'ଚରିତ୍ର' । ଚରିତ୍ର ଉଜ୍ଜ୍ୱଳ ଥିଲେ ତାହା ସବୁ ଦିନ ପାଇଁ ମରକତ ମଣି ପରି ଜଳୁଥିବ ।

ସେହି ଆଲୋକରେ ଯଶ ଚିରସ୍ଥାୟୀ ହେବ, ଏବଂ ଲୋକମାନଙ୍କ ଭିତରେ ସେହି ବ୍ୟକ୍ତି ଦେବତା ଭଳି ପୂଜା ପାଇ ପାରୁଥିବ । ସେହିଭଳି ବ୍ୟକ୍ତିତ୍ୱର ଉଦାହରଣ ହେଉଛନ୍ତି ମହାତ୍ମା ଗାନ୍ଧି, ଏବଂ ଉତ୍କଳମଣି ଗୋପବନ୍ଧୁ ଦାସ ।

କୌଣସି ମହାନ ଉଦ୍ଦେଶ୍ୟ ସାଧନ ନିମନ୍ତେ ଏକାଧିକ ବ୍ୟକ୍ତି ଏକତାବଦ୍ଧ ହେଲେ ସମାଜ ଗଢ଼ିଉଠେ । ସମାଜର ଦୁଇଟି ଉଦ୍ଦେଶ୍ୟ ଥାଏ । ପ୍ରଥମତଃ ସଂଘବଦ୍ଧତା ଏବଂ ଦ୍ୱିତୀୟଟି ହେଲା କୌଣସି ମହତ୍ ଉଦ୍ଦେଶ୍ୟ ପରିପୂରଣ ପାଇଁ ପ୍ରଚେଷ୍ଟା । ତେଣୁ ଭରତକୁ ଏହି ସମାଜକୁ ବଦଳାଇବାକୁ ହେଲେ ଏ ଦେଶର ଯୁବ ଶକ୍ତିକୁ ସଂଗଠିତ କରି ସେମାନଙ୍କୁ ଏକତାବଦ୍ଧ କରିବାକୁ ହେବ । ଏବଂ ସେହିମାନଙ୍କ ସହାୟତାରେ ସେ ସମାଜରୁ ଏହି ଦୁଷ୍ଟ ବ୍ରଣମାନଙ୍କୁ ନିର୍ମୂଳ କରି ଏକ ସୁସ୍ଥ ସମାଜ ଗଢ଼ିପାରିବ ।

ଭରତ ମନ ଭିତରୁ ଯେପରି କିଏ ପ୍ରଶ୍ନ କଲା ଏହି ସମାଜକୁ ବଦଳାଇବାକୁ ହେଲେ ତୋତେ ସମାଜ ଭିତରେ ରହିବାକୁ ହେବ ନା ସମାଜ ବାହାରେ ରହି ସଂଗ୍ରାମ କରିବାକୁ ହେବ ?

ଉତ୍ତର ପୁଣି ସେହି ମନ ସଙ୍ଗେ ସଙ୍ଗେ ଦେଇ କହିଲା ସମାଜକୁ ବଦଳାଇବାକୁ ହେଲେ ସମାଜ ଭିତରେ ରହିବାକୁ ହେବ । ଅସାମାଜିକ ହେଲେ ଲୋକମାନେ ତାହାକୁ ଗ୍ରହଣ କରିବେ ନାହିଁ । ମଦୁଆ, ଜୁଆଡ଼ି ବାପକୁ ସଂଶୋଧିତ କରିବାକୁ ହେଲେ ଘର ଭିତରୁ ବାପକୁ ବାହାର କରି ଦେଇ ନୁହେଁ କିମ୍ବା ନିଜେ ପିଲା-କବିଲା ଧରି ଘରୁ ବାହାରି ଯାଇ ଅନ୍ୟତ୍ର ରହିବାଦ୍ୱାରା ନୁହେଁ । ପ୍ରକୃତ ପରିବାରର ପଣିଆ ଜଣା ପଡ଼େ ଯିଏ ଘର ଭିତରେ ରହି ବିପଥଗାମୀ ବାପକୁ ଠିକ୍ ବାଟକୁ ଆଣି ପାରେ ।

ଭରତ ନିଷ୍ପତ୍ତି କଲା ସମୂହ ସ୍ୱାର୍ଥ ଦୃଷ୍ଟିରୁ, ମାଧପୁର ପଞ୍ଚାୟତର ଉନ୍ନତି ପରିପ୍ରେକ୍ଷୀରେ ତାହାକୁ ବର୍ତ୍ତମାନ କ୍ଷେତ୍ରରେ ପ୍ରହ୍ଲାଦ ବାବୁଙ୍କ ଅନୁରୋଧକୁ ଗ୍ରହଣ କରିବା ଉଚିତ ହେବ ।

ତାହାର ସଂଗଠନ ମଜଭୁତ୍ ହେବା ମାତ୍ରେ ଏହି ଛଳନାପ୍ରିୟ ରାଜନୈତିକ ନେତାମାନଙ୍କ ମୁଖା ଖୋଲି ଦେବାକୁ ତାହାକୁ ବେଶୀ କଷ୍ଟକର ହେବ ନାହିଁ ।

ସମାଜରେ ରହିବାକୁ ହେଲେ ସମୟ ସମୟରେ ନିଜ ଇଚ୍ଛା ବିରୁଦ୍ଧରେ କେତେକ କାର୍ଯ୍ୟ କରିବାକୁ ପଡ଼ିଥାଏ ଯାହା ପ୍ରହ୍ଲାଦ ବାବୁ ଲେଖିଥିଲେ ଭରତ ଅନୁଭବ କଲା ତାହା ବାସ୍ତବ । ବୋଧହୁଏ ସେଥି ପାଇଁ ମୁନି ଋଷିମାନେ କହିଥିଲେ ସତ୍ୟ କହିବ, ପ୍ରିୟ କହିବ, କିନ୍ତୁ ଅପ୍ରିୟ ସତ୍ୟ କହିବ ନାହିଁ ।

ପରିସ୍ଥିତି ଦୃଷ୍ଟିରୁ ସିନା ମାର୍ଜାର ରତ୍ନ ପଲଙ୍କରେ ଶୋଇଥିବା ମୂଷାକୁ ବିଅଣାରେ ବିଞ୍ଚୁଛି କିନ୍ତୁ ସମୟ ଆସିବ ଯେତେବେଳେ ବିରାଡ଼ି ନିଜକୁ ବୁଝି ପାରିବ । ସେତେବେଳେ ସେ କ'ଣ ମୂଷାକୁ ସୁନିଦ୍ରା ପାଇଁ ରତ୍ନ ପଲଙ୍କରେ ଗୁଡ଼ାଇଦେବ ?

ହସି ଦେଲା ଭରତ । ବିରାଡ଼ି ଯେତେବେଳେ ତାହାର ନିଶ ଦୁଇ ପଟା ଫୁଲାଇ ହାଇଟାଏ ମାରିବ, ସେତେବେଳେ ଯଦି ବିଗୁଣୀ ମୂଷାର ନିଦ ଭାଙ୍ଗି ଯାଏ ତେବେ ତାହାର ଅବସ୍ଥା କି ଦୟନୀୟ ନ ହେବ ? ରତ୍ନ ପଲଙ୍କ ଗୁଡ଼ି ନିଜକୁ ରକ୍ଷା କରିବା ପାଇଁ ଗାତ ଖୋଜୁ ଖୋଜୁ ଯଦି ବିରାଡ଼ି ଖପ୍ କରି ମାଡ଼ି ବସେ············

ସେହିପରି ଯେଉଁ ଜନତାଙ୍କର ପ୍ରତିନିଧି ବୋଲି ପ୍ରହ୍ଲାଦ ବାବୁ ଆଜି ଗଣକୁ ପାଶୋରି ଜଣଙ୍କ ପଛରେ ଧାଇଁଛନ୍ତି, ସେହି ଗଣ ଦେବତା ଯେତେବେଳେ ଜାଗି ଉଠିବେ ସେତେବେଳେ ଏଇ ଜଣକ କଣ ତାଙ୍କୁ ରକ୍ଷା କରିପାରିବେ ?





ମହାଭାରତରେ ଧର୍ମବକ ଯୁଧିଷ୍ଠିରଙ୍କୁ ପ୍ରଶ୍ନ କରିଥିଲେ "ମୋହ, ଅଭିମାନ, ଆଳସ୍ୟ ଏବଂ ଶୋକ କାହାକୁ କହନ୍ତି ?"

ଯୁଧିଷ୍ଠିର ଉତ୍ତର ଦେଇଥିଲେ ଧର୍ମ ସମ୍ବନ୍ଧରେ ଅନଭିଜ୍ଞତା ହିଁ ମୋହ, ଅଯଥା ଆତ୍ମ ସମ୍ମାନବୋଧ ହିଁ ଅଭିମାନ, କର୍ତ୍ତବ୍ୟ ବିମୁଖତା ହିଁ ଆଳସ୍ୟ ଏବଂ ଅଜ୍ଞାନତା ହିଁ ଶୋକ ।

ଏହା ଶୁଣି ବକ ଆଉ ଗୋଟିଏ ପ୍ରଶ୍ନ କରିଥିଲେ କାହାକୁ ତ୍ୟାଗ କଲେ ମନୁଷ୍ୟ ଅନ୍ୟର ପ୍ରିୟ, ଶୋକଶୂନ୍ୟ, ଅର୍ଥବାନ୍ ଓ ସୁଖୀ ହୁଏ ?

ଯୁଧିଷ୍ଠିର କହିଲେ ଅଭିମାନ ତ୍ୟାଗ କଲେ ମନୁଷ୍ୟ ଅନ୍ୟର ପ୍ରିୟ, କ୍ରୋଧ ତ୍ୟାଗ କଲେ ଶୋକଶୂନ୍ୟ, କାମନା ତ୍ୟାଗ କଲେ ଅର୍ଥବାନ୍ ଏବଂ ଲୋଭ ତ୍ୟାଗ କଲେ ସୁଖୀ ହୋଇ ପାରିଥାଏ ।

ଭରତ ମୋହନ [illegible] ବାବୁଙ୍କର ସମ୍ବର୍ଦ୍ଧନା ଉତ୍ସବରେ ମଧ୍ୟ ଯୋଗ ଦେଇଥିଲି କିନ୍ତୁ ନିଜକୁ ଏକ ନୀରବ ଦର୍ଶକ ରୂପେ ଗ୍ରହଣ କରି ନେଇଥିଲି । ସମସ୍ତ କାର୍ଯ୍ୟକଳାପକୁ ମୋ ମନୋଯୋଗ ସହକାରେ ନିରୀକ୍ଷଣ କରୁଥିଲି । ମଧ୍ୟ ଅନ୍ତର୍ବେଦନା ଅନୁଭବ କରୁଥିଲି

କିନ୍ତୁ ପ୍ରକାଶ କରି ପାରୁ ନଥିଲା ଯେ ହେତୁ ସେ ନିଜକୁ ସୁଅ ମୁହଁରେ ପତ୍ର ଭଳି ମନେ କରୁଥିଲା ।

"ଲୋକ ସେବକ" ଉପାଧିରେ ଭୂଷିତ ହୋଇଥିବା ମନ୍ତ୍ରୀ ଦୁଷ୍ମନ୍ତ ବାବୁଙ୍କ ସମ୍ବର୍ଦ୍ଧନା ସଭାକୁ ଦେଖି ସେ ପଢ଼ିଥିବା ଦରବାର କାବ୍ୟ ମନେ ପଡ଼ି ଯାଉଥିଲା । ସେ ସ୍ପଷ୍ଟ ଅନୁଭବ କରି ପାରୁଥିଲା ଉପାଧି ଲାଳସା ବ୍ୟାଧିରେ ପ୍ରପୀଡ଼ିତ ଦୁଷ୍ମନ୍ତ ବାବୁ କିପରି ମନୁଷ୍ୟତାକୁ ମଧ୍ୟ ବଳି ଦେଉଛନ୍ତି । ଷୋଡ଼ଶ ଉପଚାରରେ ଠାକୁର ପୂଜା ଗ୍ରହଣ କଲା ପରି ତାଙ୍କୁ ଲୋକମାନେ ସମ୍ମାନିତ କଲେ । ପ୍ରାୟ ଏକ ମାଇଲ ଦୂରରୁ ତାହାଙ୍କୁ ଏକ ବିରାଟ ପଟୁଆରରେ ସଭାସ୍ଥଳକୁ ପାଛୋଟି ଅଣା ହୋଇଥିଲା । ବିବିଧ ରକମର ବାଦ୍ୟ ସହ, ପାଇକ ଖେଳ, ଶବର ନୃତ୍ୟ ଘୁମୁରା ନୃତ୍ୟ ପ୍ରଭୃତି ମଧ୍ୟ ଶୋଭାଯାତ୍ରାରେ ସ୍ଥାନ ପାଇଥିଲା ।

ସଭାରେ ଚେୟାରମ୍ୟାନ ପ୍ରହ୍ଲାଦ ବାବୁ ମାନପତ୍ର ପଢ଼ିଥିଲେ । ସେ ଯେଉଁ ସ୍ତୁତି ଗାନ କରିଥିଲେ ତାହା ମନେ ପଡ଼ିଲେ ଭରତକୁ ଏବେ ମଧ୍ୟ ହସ ମାଡ଼େ । ସେହି ମାନପତ୍ରର ଲେଖନ ଶୈଳୀ ପ୍ରହ୍ଲାଦ ବାବୁଙ୍କ ଭଳି ଯୋଗ୍ୟ ବ୍ୟକ୍ତିଠାରୁ ଆଦୌ ଆଶା କରାଯାଇ ପାରେ ନାହିଁ । ଦୁଷ୍ମନ୍ତ ବାବୁଙ୍କର ଦେଶ ସେବା ଅତୁଳନୀୟ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ତାଙ୍କୁ ସେ ସୂର୍ଯ୍ୟଙ୍କ ସହିତ ତୁଳନା କରିଥିଲେ । କହୁ କହୁ ସେ ତାଙ୍କର ଭାଷଣ ପ୍ରସଙ୍ଗରେ କହିଥିଲେ ସୂର୍ଯ୍ୟଙ୍କୁ ଚିହ୍ନାଇବା ପାଇଁ ପ୍ରଦୀପର ଆବଶ୍ୟକତା ଆଦୌ ନାହିଁ । କିନ୍ତୁ ସୂର୍ଯ୍ୟଙ୍କ ପୂଜା ପାଇଁ ପ୍ରଦୀପର ଅଭାବ ସର୍ବଦା ଅନୁଭୂତ ହୋଇଥାଏ । ସେହିଠାରେ ହିଁ ପ୍ରଦୀପର ବୈଶିଷ୍ଟ୍ୟ ଜଣା ପଡ଼େ ।

ପ୍ରଦୀପ ସୂର୍ଯ୍ୟଙ୍କୁ ଅଭିନନ୍ଦନ କରି ନିଜକୁ ଧନ୍ୟ ମନେକରେ ।

ସଭା ପରେ ସମସ୍ତ ସରପଞ୍ଚ, ମେମ୍ବର ସମେତ ମନ୍ତ୍ରୀଙ୍କ ଗହଣରେ ଆସିଥିବା ଅଫିସରମାନଙ୍କୁ ଭୂରିଭୋଜନରେ ଆପ୍ୟାୟିତ କରା ଯାଇଥିଲା । ଏହି ଅବସରରେ ଭରତ ଜାଣିପାରିଥିଲା ଏହି ମାନପତ୍ରକୁ ଦୁଷ୍ମନ୍ତବାବୁ ପୂର୍ବରୁ ପଢ଼ି ସାରିଥିଲେ ।

ନିଜ ଘରକୁ ଫେରିବା ପୂର୍ବରୁ ଭରତ ଏତିକ ମାତ୍ର କହିଥିଲା ବୁଝିଲେ ପ୍ରହ୍ଲାଦ ବାବୁ, ଆପଣଙ୍କଠାରୁ ଗୋଟିଏ କଥା ଆଜି ଶିକ୍ଷାଲାଭ କଲି । ସେଇଟା ହେଉଛି ଖୋସାମତି ବା ସ୍ତବ ଶୁଣିଲେ ଯେଉଁଠାରେ ଦେବତା-ମାନେ ପ୍ରସନ୍ନ ହୁଅନ୍ତି ସେତେବେଳେ ମଣିଷ କେତେକମାତର ?

ନିଜ ଆତ୍ମ ପ୍ରଶଂସା ଶୁଣି ପୁଲକିତ ହୋଇ ଉଠିଲେ ପ୍ରହ୍ଲାଦ ବାବୁ । ପାନ ଖିଆ ଦାନ୍ତ ଦୁଇଧାଡ଼ି ଦେଖାଇ କହିଲେ, ରାଜନୀତି କରିବାକୁ ହେଲେ ଖାଇ, ଖୁଆଇବ । ଆମେ ଯଦି ମନ୍ତ୍ରୀଙ୍କ ସମ୍ବର୍ଦ୍ଧନା ପାଇଁ ପାଞ୍ଚ ଦଶ ହଜାର ଖର୍ଚ୍ଚ ନ କରିବା ତେବେ ଆମ ପଞ୍ଚାୟତ ସମିତିକୁ ସେ ଅନ୍ୟମାନଙ୍କ ତୁଳନାରେ ଭିନ୍ନ ଦେଖିବାକୁ ଯିବେ କାହିଁକି ?

ଭରତ ଗମ୍ଭୀର ହୋଇ କହିଲା ସଙ୍ଗଦୋଷରେ ପଡ଼ି ମନୁଷ୍ୟ ବେଳେବେଳେ ମାଦକ ଦ୍ରବ୍ୟ ସେବନ କରିଥାଏ । କିନ୍ତୁ ତାହାର ଯେତେବେଳେ ଆତ୍ମ ଚେତନା ଆସେ ସେତେବେଳେ ସେ ସେହି ବନ୍ଧୁମାନଙ୍କଠାରୁ ଦୂରରେ ରହେ ସେହିଭଳି ମୁଁ ବ୍ୟକ୍ତି ପୂଜାର ସମ୍ପୂର୍ଣ୍ଣ ବିରୋଧୀ । ଯିଏ ଯାହା ନୁହେଁ ତାକୁ ସେପରି କହିବା ହେଉଛି ପାପ । ମୋ ଅଞ୍ଚଳର ଅବହେଳିତ ଭାଇମାନଙ୍କର ଉନ୍ନୟନ ଖର୍ଚ୍ଚ ବାବଦରୁ ପଞ୍ଚାୟତ ଚାନ୍ଦା ହିସାବରେ ଯେତିକି ଦାନ ମୁଁ ଦେଇଛି ମୋର କପରି ମନେ ହେଉଛି ମୁଁ ସେମାନଙ୍କର ବିଶ୍ୱାସରେ ବିଷ ଦେଇଛି ।

ଦୁଷ୍ମନ୍ତ ବାବୁ ମନ୍ତ୍ରୀ ହୋଇଛନ୍ତି । ସେଥି ପାଇଁ ଏ ସମ୍ବର୍ଦ୍ଧନା । ତାଙ୍କ ହାତରେ କ୍ଷମତା ନଥିଲେ ବୋଧହୁଏ ତାଙ୍କୁ ଏହିଭଳି ସେପରି ସମ୍ବର୍ଦ୍ଧନା ଆପଣ କଦାପି ଦେଇ ନଥାନ୍ତେ ।

ଦୁଷ୍ମନ୍ତ ବାବୁ ଶାସକ ବୋଲି ନିଜକୁ ମନେ କରୁଛନ୍ତି । ଦେଶ ସେବକର ଆତ୍ମ ଅଭିମାନ ରହେ ନାହିଁ । ସେ ତାହାର ଭଲ ମଣିଷଙ୍କଠାରୁ

ପୂଜା ଗ୍ରହଣ କରିବାକୁ ଘୃଣା କରେ । ଦୁଷ୍ମନ୍ତ ବାବୁ ଯେତେ ଜିଦ୍‌ଖୋର ହୁଅନ୍ତୁ ନା କାହିଁକି ବିଶ୍ୱ ବିଜୟୀ ଆଲେକ୍‌ଜାଣ୍ଡରଙ୍କଠାରୁ କଦାପି ଶ୍ରେଷ୍ଠ ହେବେ ନାହିଁ । ସେହିଭଳି ବ୍ୟକ୍ତି ତ ମଲା ପୂର୍ବରୁ କହିଗଲେ—

ବୋଇଲେ ଏ ପ୍ରାଣ ଗଲେ ପିଣ୍ଡ ଛାଡ଼ି
ନେବ ମୋତେ ଯେବେ କୋକେଇରେ କାଢ଼ି
ଦେଇଥିବ ତହିଁ ମୋ ଶବ ଶୁଆଇ
ବେନି ପାଖେ ବେନି କରକୁ ଝୁଲାଇ
ଯା ଦେଖି ଜାଣିବେ ଜଗତେ ସମସ୍ତେ
ଆସିଥିଲା, ଫେରି ଗଲା ଶୂନ୍ୟ ହସ୍ତେ ।

ପ୍ରହ୍ଲାଦ ବାବୁ ଏତିକି ଶୁଣିବା ପରେ ପରେ ବିରକ୍ତି ପ୍ରକାଶ କରି କହିଲେ : ବୁଝିଲେ ଭରତ ବାବୁ ! ଧର୍ମ ନେଇ କଦାପି ରାଜନୀତି ହୁଏ ନାହିଁ । ଆପଣମାନେ ଯୁବକ । ଶିଖିବାକୁ, ଠିକିବାକୁ ଜୀବନରେ ବହୁତ ବାକି ଅଛି ।

ହସିଦେଇ ଭରତ କହିଲା ଜୀବନରେ ଆମର ଶିଖିବା ତୁଳନାରେ ଠକି ହେବା ବହୁତ ଅଳ୍ପ ଅଛି ।

ବହିର ନୈଶଭୋଜୀ ସଭାକୁ ଭରତ ବର୍ଜନ କରିଥିଲା । ପ୍ରହ୍ଲାଦ ବାବୁଙ୍କ ଅନୁରୋଧ ତାହାକୁ ତାହାର ନିଷ୍ପତ୍ତିରୁ ଟଳାଇ ପାରି ନଥିଲା ।

ସଭା ଭାଙ୍ଗିବା ପରେ ମନ୍ତ୍ରୀ ଦୁଷ୍ମନ୍ତ ବାବୁଙ୍କ ଘେରି ଯେତେବେଳେ ଅନ୍ୟ ସରପଞ୍ଚମାନେ ଆମ୍ର ପ୍ରସାଦ ଅନୁଭବ କରୁଥିଲେ ଭରତ ସେତେବେଳେ ମାଧପୁର ଗାଆଁକୁ ସାଇକେଲରେ ପେଡ଼ାଲ ମାରି ଫେରୁଥିଲା ।





ସାରିଆ କ'ଣ କରୁଛୁ କଲେ ? ଡାକ ଡାକ ଲୋଚନ ମାଷ୍ଟ୍ରେ ମୁଣ୍ଡ ନୁଆଇଁ ଘର ଭିତରକୁ ପଶିଗଲେ ।

ବେଳ ସେତେବେଳକୁ ରତ ରତ । ସାରିଆ ନାତିକୁ କୋଡ଼ରେ ଶୁଆଇ ହଳଦ ମାଲପା ଘଷୁଥାଏ ! ଦାଣ୍ଡ ଦୁଆରୁ ମାଷ୍ଟ୍ରଙ୍କ ପାଟି ଶୁଣି ନିଜକୁ ଟିକିଏ ସଜତ କରି ନେଲା ।

ଆଲୋ, କେତେଦିନ ହେବ ନାତିଆଟାକୁ ଦେଖି ନଥିଲି । ଏଇବାଟେ ତ ଯାଉଥିଲି, ଟିକିଏ ପଶି ଅଇଲି । ଏବେ ତୋର କ'ଣ ହେଇଛୁ କେଜାଣି ଆଉ ତ ଦେଖା ଦର୍ଶନ ମିଳୁନାହିଁ ।

ମୁଣ୍ଡ ଉପରକୁ ଚିରା ଶାଢ଼ୀର ଓଢ଼ଣାଟା ଟାଣି ନେଇ ସାରିଆ କହିଲା ତମେ ସାନ୍ତେ ! ଯେଉଁ ଜଞ୍ଜାଳରୁ ମୁକ୍ତ ପାଇଥିଲି ସେଇ ଜଞ୍ଜାଳ ପୁଣି ମୋତେ କୁଣ୍ଢାଇ ଧରିଛି । କୁନ୍ତଳା ଜନ୍ମ ହେବା କେତେଦିନ ହେଲାଣି, ଏଇ ଗୁହ ମୂତ ସବୁ ଗୁଡ଼ବ ହୋଇ ଯାଇଥିଲା । ପୁଣି କେଉଁଠାରେ ଏଇଁ କାଳ ଖଣ୍ଡିକ ଥିଲା, ମୋ ପିଲା ପେଟକୁ ଆଇଲା, ମୋତେ ଘାଣ୍ଟି ଖାଇଲା ।

ହସିଦେଲେ ଲୋଚନ ମାଷ୍ଟ୍ରେ । କହିଲେ ଯଦ ବଡ଼ପିଡ଼ା ଲାଗୁଛି ଶଳାଟାକୁ ଅଳଆ ବଣକୁ ଫିଙ୍ଗି ଦେ……

: ଫିଙ୍ଗି ଦେବ ? ହାତେ ଲମ୍ବ ଜଭ କାଢ଼ି ସାଉଆ କହିଲା ତାହା ହୋଇଥିଲେ ତ କେତେ ଦିନୁ କର ସାରନ୍ତାଣି । ମୁଁ ଦେଖୁଛି ତମେ ଆପଣ ସବୁ ନାଟର ଗୋବର୍ଦ୍ଧନ । ଏଣେ ଡାହାଣୀ ହୋଇ ଲାଗୁଛ, ତେଣେ ଗୁଣିଆ ହୋଇ ଛଡ଼ାଉଛ । ପୁଅ ନାଁ ଦେଲ ଭରତ । ତା ମାଆକୁ ପଠାଇ ଦେଲ ପାଠ ପଢ଼ିବାକୁ । ଆଉ ଟୋକାଟା ମୁହଁ ନେଫିଡ଼ିଲା ବେଳକୁ କହୁଛ……

: ଲୋଭ ଲାଗିଲାଣିଟି ? ଏହାକୁ କହନ୍ତି ମାୟା । ଆଲୋ ଏହି ମାୟାରେ ଜଗତ ଭୁଆଣ । ନ ହେଲେ ତୁ କଏ ଆଉ ଭରତ କଏ ?

ପିଣ୍ଡା ଉପରେ ଖଣ୍ଡିଆ ପଟିଟାରେ ଭରତକୁ ଶୁଆଇ ଦେଇ ସାଉଆ ଧଡ଼ପଡ଼ କର ଯାଇ ପିଢ଼ାଟା ଆଣି ଥୋଇ ମାଷ୍ଟ୍ରଙ୍କୁ ବସିବାକୁ କହିଲା ।

ଲୋଚନ ମାଷ୍ଟ୍ରେ ପିଢ଼ା ଉପରେ ବସିପଡ଼ ଭରତର ଗାଲ ଚିପିଦେଲେ । ପାକୁଆ ପାଟିକୁ ମେଲାଇ ଦେଇ କଲ କଲ ହୋଇ ହସି ଉଠିଲା ଭରତ ।

ସାଉଆ କହିଲା ସାନ୍ତେ ସେଇ ପୁରାଣ ଅଧା ରହିଲା । ଆଉ କ'ଣ ସରବ ନାହିଁ ।

ନ ସରବ କାହିଁକ ? ନଡ଼ିଆ ଖାଇବାକୁ ମନ ହେଲେ ଟିକିଏ କଷ୍ଟ କରବାକୁ ପଡ଼େ । ନଡ଼ିଆ ଦେହରୁ କତା ଛଡ଼ାଇବ, ନଡ଼ିଆକୁ ପଥରରେ ଭାଙ୍ଗିବ, ତେବେ ଯାଇ ତାହା ଭିତରୁ ମିଠା ପାଣି ପିଇବ । ନଡ଼ିଆ ରସ ଖାଇବ । ପୁରାଣଗୁଡ଼ାକ ସେହିପରି । କଥାରେ ଅଛି ପାଇଁ ଅଛି ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ । ଅର୍ଥାତ୍ ମହାଭାରତରେ ଯାହା ନାହିଁ ତାହା ଭାରତବର୍ଷରେ ନଥିବ ।

ଉତ୍କଣ୍ଠା ସୃଷ୍ଟି କରି ସାରିଆ କହିଲା  ଅଳସୁଆ ଦୁଆରକୁ ଗଙ୍ଗା ବିଜେ କରନ୍ତି । ଏଇ ଟୋକା ଜଞ୍ଜାଳରେ ଧନ୍ଦି ହୋଇ ମୁଁ ତ ଆପଣଙ୍କ ପାଦ ତଳକୁ ଯାଇ ପାରିଲି ନାହିଁ । ହେଲେ ତମେ ସାନ୍ତେ ଯେତେବେଳେ ଆସିବା ହୋଇଛନ୍ତି......

ଲୋଚନ ମାଷ୍ଟ୍ରେ ଗଳା ଖଙ୍କାରି କହିଲେ  କଥା କହି ଜାଣିଲେ ଘୁଇଁ ଚଙ୍ଗୁଡ଼ି ବି ବନ୍ଦି ହୋଇଯାଏ । ହଉ ଶୁଣ୍ । ଶକୁନ୍ତଳାଙ୍କୁ ତ ଦୁଷ୍ମନ୍ତ ମହାରାଜା ଫେରାଇ ଦେଲେ । ସେ ଅବା କ'ଣ କରିବେ ? ଜଙ୍ଗଲକୁ ଫେରି ଆସିଲେ । ଆଶ୍ରମରେ କଣ୍ୱମୁନି ପୁଣି ସାଇତିଲେ । ମାସ ମାସ ହୋଇ ଦଶ ମାସ ହେଲା । ଦଶ ଦିନ ବି ପୂରିଲା । ଶକୁନ୍ତଳାଙ୍କ ଗର୍ଭରୁ ଆମ ନାତିଆ ଭଳି ଦିବ୍ୟ ସୁନ୍ଦର କୁମରଟିଏ ଜନ୍ମ ହେଲା । କଣ୍ୱମୁନି ତାହା ନାମ ଦେଲେ ଭରତ । ଆଉ ଶକୁନ୍ତଳା ଡାକିଲେ ସର୍ବ ଦମନ ।

"ସର୍ବ ଦମନ" କ'ଣ ଗୋଟାଏ ନାଆଁ ? ସାରିଆ ଅପସନ୍ଦ କରି କହିଲା ।

: ଆଲୋ, ମାଙ୍କପି ଝିଅ ଶକୁନ୍ତଳା, ତାହା ମନରେ କେତେ ଦୁଃଖ ? ହକ୍ ବାହା ହୋଇ ରଜା ତାକୁ ରଜ ସଭାରେ ଚିହ୍ନି ନପାରି ମୁହଁ ଫେରାଇ ନେଲେ । ସେ ଅସତୀ; କଳଙ୍କିନୀ ହେଲା । ତେଣୁ ସେହି ପୁଅର ବାପ ଉପରେ ପ୍ରତିଶୋଧ ନେବା ପାଇଁ ପୁଅ ନାଁ ଦେଲା ସର୍ବ ଦମନ । ନିଜ ପୁଅକୁ ପାଳିଲା, ସ୍ନେହ କଲା । ସେଇମିତି ଗଢ଼ିଲା ।

ନିଜ ପୁଅ ଯେତେବେଳେ ସେ ସ୍ନେହ ନ କରି କ'ଣ ଆଉ କିଏ କରନ୍ତା ? ଗଢ଼ିଲା କିପରି ମ ?

: ପୁଅକୁ ନିର୍ଭୟ କରାଇଲା । ତାହା ପୁଅ ଯଦି ଜନ୍ମରୁ ଡରକୁଳା ହେବ ତେଣିକି......

ସାରିଆ ପ୍ରଶ୍ନ କଲା  ତା'ପରେ କ'ଣ ହେଲା ?

ହିବ ଆଉ କ'ଣ ? କେତେଦିନ ପରେ ରଜା ଦୁଷ୍ମନ୍ତ ଦିନେ ପାରିଧି କରିବାକୁ ସେହି ଜଙ୍ଗଲକୁ ଆସିଲେ । ଜଙ୍ଗଲ ଭିତରେ ମିରିଗ

ପଛରେ ଗୋଡ଼ାଇ ଗୋଡ଼ାଇ ଗୋଟିଏ ଅଦ୍ଭୁତ ଦୃଶ୍ୟ ଦେଖି ସେ ସ୍ତମ୍ଭୀଭୂତ ହୋଇ ଉଠିଲେ । ସାରଥୀକୁ ରଥ ରଖିବାକୁ କହିଲେ ।

କ'ଣ ଏମିତି ଦେଖିଲେ କି ?

ଦେଖିଲେ ଗୋଟିଏ ଗ୍ରେଠ ପିଲାଟିଏ ସିଂହ ଛୁଆ ପାଟିରେ ହାତ ଭର୍ତ୍ତିକରି ତାହାର ଦାନ୍ତ ଗଣୁଛି ।

ସିଂହ ଛୁଆ ପାଟିରେ ହାତ ଭର୍ତ୍ତି କରୁଛି ? ଇଲେ ମା ସେ ମଣିଷ ପିଲା ନା ଆଉ କ'ଣ ?

ହସି ଦେଇ ଲୋଚନ ମାଷ୍ଟ୍ରେ କହିଲେ ସେଇଠାରେ ତ ମଜା ! ଦୁଷ୍ମନ୍ତ ମହାରାଜା ଭାବିଲେ ଏ ସାମାନ୍ୟ ପିଲା ନୁହେଁ । କାହାର ପିଲା ବୋଲି ସଂଧାନ ନେଲେ । ଆଶ୍ରମକୁ ଗଲେ । ସେଠାରେ ପହଞ୍ଚିବା ପରେ ଶକୁନ୍ତଳାଙ୍କୁ ଦେଖି ପାରିଲେ । ପଛ କଥା ତାଙ୍କର ମନେପଡ଼ିଗଲା । ସେଇଠାରୁ ଜାଣି ପାରିଲେ ଏଇ ସର୍ବ ଦମନ ହେଉଛି ତାଙ୍କର ପୁଅ । ତେଣିକି ଆଉ ସବୁ ତୁ ତ ଜାଣି ପାରୁଥିବୁ । ଶକୁନ୍ତଳାଙ୍କୁ ଓ ଭରତଙ୍କୁ ସଙ୍ଗରେ ଆଣିଲେ । ସୁଖରେ ରାଜୁତି କଲେ । ସେହି ଦୁଷ୍ମନ୍ତଙ୍କ ପୁଅ ଭରତ ଏପରି ଭାବରେ ସତ୍ୟ ଓ ନ୍ୟାୟରେ ରାଜ୍ୟ ଶାସନ କଲେ ଫଳରେ ତାଙ୍କ ନାମ ଅନୁସାରେ ଆମ ଦେଶର ନାମ ଭାରତବର୍ଷ ହେଲା ।

ସାଗିଆ ହସି ଦେଇ କହିଲା ଯାହାହେଉ ସାଆନ୍ତେ ଭଗବାନ ଶକୁନ୍ତଳାର ଦୁଃଖ ବୁଝିଲେ ।

ଆକାଶକୁ ଆଙ୍ଗୁଠି ଦେଖାଇ ଲୋଚନ ମାଷ୍ଟ୍ରେ କହିଲେ ସବୁ କାଳବାଲା ଉପରେ ପାପ ପୁଣ୍ୟ ତଉଲିବା ପାଇଁ ନିକିତି ଧରି ସେ ବସିଛି ।

ଭରତଟା କାନ୍ଦି ଉଠିଲା । ବୋଧହୁଏ କନା କି ପିମ୍ପୁଡ଼ି କଣଟେ କାମୁଡ଼ିଲା । ସାଗିଆ ଦଉଡ଼ି ଯାଇ ନାତିକୁ କୋଳକୁ ନେଲା ।

ଲୋଚନ ମାଷ୍ଟ୍ରେ ଉଠୁ ଉଠୁ କହିଲେ ଯାଉଛି ଲେ ସାଗିଆ । କେବେ ଘର ଆଡ଼େ ଆସିବୁ । ମାଆ କହୁଛନ୍ତି । ତୋ ନାତି ପାଇଁ କ'ଣ ରଖିଛନ୍ତି ଯେ ଦେବେ ବୋଲି କହୁଥିଲେ ।





ଶିଷ୍ୟ ଗୁରୁଙ୍କୁ ପ୍ରଶ୍ନ କଲେ ଆଜ୍ଞା ସତ୍ୟ ଠାରୁ ମିଥ୍ୟାର ଦୂରତ୍ୱ କେତେ ?

ଗୁରୁ ଉତ୍ତର ଦେଲେ ମାତ୍ର ପାଞ୍ଚଅଙ୍ଗୁଳି ।

ଶିଷ୍ୟ ଆଶ୍ଚର୍ଯ୍ୟ ହୋଇ ଗୁରୁଙ୍କ କଥାକୁ ଅବିଶ୍ୱାସ କଲାଭଳି କହି ଉଠିଲେ ପାଞ୍ଚ ଅଙ୍ଗୁଳି !

ଗୁରୁ ଶିଷ୍ୟର ସଂଦେହ ମୋଚନ କରିବା ପାଇଁ କାନ ଓ ଆଖି ମଝିରେ ନିଜ ପାପୁଲିକୁ ରଖି ଦେଲେ ।

ତଥାପି ଶିଷ୍ୟ ପ୍ରଶ୍ନ କଲେ ଆଜ୍ଞା, ମୋତେ ଟିକିଏ ବୁଝାଇ ଦିଅନ୍ତୁ ।

ଗୁରୁ କହିଲେ କାନରେ ଶୁଣିବା କଥା ମିଛ ଆଉ ନିଜ ଆଖିରେ ଯାହା ଦେଖିବ ତାହା ସତ୍ୟ । ସେଥିପାଇଁ ପଦ ପ୍ରଚଳିତ ଅଛି ଯାହା ନ ଦେଖିବ କେବେ ନୟନେ, ପରତେ ନଯିବ ଶୁଣି ବଚନେ ।

ଶିଷ୍ୟ ଗୁରୁଙ୍କ ପାଦତଳେ ପ୍ରଣମି କହିଲେ ଆଜ୍ଞା, ଏତେ ଦିନରେ ଜ୍ଞାନ ପାଇଲି ।

ଦୁଷ୍ମନ୍ତ ବାବୁ ମନ୍ତ୍ରୀ ହେବା ପରେ କାନରେ ଶୁଣିବା କଥାକୁ ବେଶୀ ବିଶ୍ୱାସ କରନ୍ତି । ସତ କି ମିଛ ପରୀକ୍ଷା କରିବାକୁ ତାଙ୍କୁ ସମୟ ଖୁବ୍ ଅଳ୍ପ ମିଳେ

ପ୍ରହ୍ଲାଦ ବାବୁ ଆସିଥିଲେ । ଯୁବକ ସରପଞ୍ଚ ଭରତ ନାଏକ ବିରୁଦ୍ଧରେ ସବୁ ଗପି, ଯାଇଛନ୍ତି । କପରି ସେହି ହରିଜନ ଯୁବକ ମନସ୍ୱୀ ହୋଇ ଲୋକମାନଙ୍କୁ ତାଙ୍କ ନେତୃତ୍ୱ ବିରୁଦ୍ଧରେ ସଂଗଠିତ କରୁଛି । ହରିଜନମାନଙ୍କୁ ଏପରି ମୁହଁ ଦେଲାଣି ଯେ ସେମାନେ ଆଉ ଇନ୍ଦ୍ର ଚନ୍ଦ୍ର ମାନୁ ନାହାନ୍ତି । ସେମାନଙ୍କ ଆଖିରେ ନେତା କହିଲେ ଭରତ କୁମାର । ସେ ଯଦି ନଈକୁ ଡେଇଁ ପଡ଼ିବାକୁ କହିବେ ତେବେ ନ ବୁଝି ନବିଚାରି ସେମାନେ ଫକ୍‌କରି ଝାମ୍ପ ଦେବେ ।

ମୂଳ୍ପ ମାଇଲେ ଯିବ ସରି ନ୍ୟାୟରେ ଏହି ଦିନରୁ ଯଦି ଭରତର ରାଜନୈତିକ ଜୀବନକୁ ଲୋକମାନଙ୍କ ଆଗରେ ନିନ୍ଦିତ ଏବଂ କଳଙ୍କିତ କରି ନଯାଏ ତେବେ ଆସନ୍ତା ନିର୍ବାଚନରେ ସେହି ଅଞ୍ଚଳରୁ ଭୋଟ ପାଇବା ଦୁଷ୍କର ହୋଇ ଉଠିବ ।

ଦୁଷ୍ମନ୍ତ ବାବୁ ଚେୟାରମ୍ୟାନ ପ୍ରହ୍ଲାଦ ବାବୁଙ୍କ କଥା ମନରେ ତଉଲୁ ଥିଲେ । ପ୍ରକୃତରେ ଏହି ଭରତ ନାଏକର ଆଦୌ ଗୁରୁଜନମାନଙ୍କ ପ୍ରତି ଭକ୍ତି ନାହିଁ । ସେଦିନ ରାଜି ଭୋଜନରେ ସମସ୍ତେ ତାଙ୍କ ସହିତ ଯୋଗ ଦେଲେ କିନ୍ତୁ ମାଧପୁର ସରପଞ୍ଚ ଅନୁପସ୍ଥିତ ରହିଲେ । ପରେ ଯାହା ବୁଝିଲେ ସେଥିରେ ଜାଣି ପାରିଲେ ଯେ ପଞ୍ଚାୟତ ସମିତିର ପ୍ରତ୍ୟେକ କାର୍ଯ୍ୟକୁ କଠୋର ସମାଲୋଚନା କରିବା ସଙ୍ଗେ ସଙ୍ଗେ ସେ ଅନେକ କାର୍ଯ୍ୟରେ ଅସହଯୋଗ କରୁଛନ୍ତି । ରାଜନୀତି କ୍ଷେତ୍ରରେ ସେ ବର୍ତ୍ତମାନ ଶିଶୁ । ପରିପକ୍ୱତା ହାସଲ କରିବାକୁ ଅନେକ ଦିନ ଅଛି । ତେଣୁ ନୀତି ଶାସ୍ତ୍ର

ଅନୁସାରେ ରୋଗକୁ ନିର୍ମୂଳ କଲାପରି ଶତ୍ରୁକୁ ସମୂଳେ ନିଧନ କରିବା ହେଉଛି ବିବେକୀ ଲୋକର କାର୍ଯ୍ୟ ।

ରାଜନୀତିରେ ତ ପଦେ ପଦେ କଣ୍ଟା । ପ୍ରତ୍ୟେକ ବିଷୟରେ କିଛି ନା କିଛି ଭୁଲ ନିଶ୍ଚୟ ରହିଥିବ । କେହି କଦାପି ଚେଷ୍ଟା କଲେ ନିଚ୍ଛକ ସଚ୍ଚୋଟ ରାଜନୈତିକ କର୍ମୀ ହୋଇ ପାରିବ ନାହିଁ । ଏହା ଯଦି ଏକ ନିପାତନ ସତ୍ୟ ହୁଏ ତେବେ ଭରତ କ'ଣ ଏହାର ବ୍ୟତିକ୍ରମ ହୋଇ ପାରିଥିବ ।

ଅଟ୍ଟହାସ୍ୟ କରି ହସି ଉଠିଲେ ଦୁଷ୍ମନ୍ତ ପଟ୍ଟନାୟକ ।

ଅନେକ ଦିନ ତଳେ ମଥୁରା ରାଜସିଂହାସନରେ ବସି କଂସ ଏହି ଭଳି ଅଟ୍ଟହାସ୍ୟ କରିଥିଲା । ଶୁଣିଲା ଗୋପପୁରରେ ନନ୍ଦ ଗଉଡ଼ ଘରେ କିଏ କୃଷ୍ଣ ଜନ୍ମ ହୋଇଛନ୍ତି । ସେ ପୁଣି କଂସର ବଇରୀ ହେବେ । କଂସ ମନକୁ କଥା ଆଦୌ ପାଇଲା ନାହିଁ । କହି ଉଠିଲା : ମେଣ୍ଢଉଡ଼ ଟୋକାଟିଏ । ଦଳି ଦେଲେ ଛତୁ ହୋଇଯିବ । ସେ ପୁଣି ମୋହର ବଇରୀ ହେବ ? କଂସ ମହାରାଜାଙ୍କ ପାଖ ଲୋକେ ପରାମର୍ଶ ଦେଇ କହିଲେ ମୂଳ ମାଇଲେ ଯିବ ସରି । ବାଳ ଗୋପାଳ ଆଉ ଥିବେ ଯେ ବଡ଼ ହେବେ·········

କଂସ ଚିନ୍ତା କରି ପାରିଲା ନାହିଁ ଯେ ଶିଶୁ ଯୁଗେ ଯୁଗେ ଅପାପବିଦ୍ଧ । ସେ ହେଉଛି ଆଗାମୀ ଯୁଗର ସ୍ରଷ୍ଟା । ସେଥି ପାଇଁ ଶିଶୁ ସବୁବେଳେ ଅବଧ୍ୟ । ଯିଏ ଯେତେବେଳେ ଶିଶୁକୁ ହତ୍ୟା କରିବାକୁ ଇଚ୍ଛା କରିଛି ସେ ସେତେବେଳେ ନିଜେ ହିଁ ଧ୍ୱଂସ ପାଇ ଯାଇଛି । ସେଥି ପାଇଁ କଂସ ସବୁ ପ୍ରକାର ଷଡ଼ଯନ୍ତ୍ର କରି ନିଜେ ଶେଷରେ ସେହି ଶିଶୁ କୃଷ୍ଣଙ୍କ ହାତରେ ବିନାଶ ପାଇଲେ । କୃଷ୍ଣ କେବଳ କ୍ରନ୍ଦନ କରି କହି ଉଠିଲେ ମଞ୍ଚରୁ ପଡ଼ି ମାମୁଁ ମଲା, ମୋତେ ତ ଦଇବ ରଖିଲା

କଂସ ଗୋପପୁରରୁ ଘୋଷ ନେଇ ପତ୍ର ଲେଖିଲା ପରି ଦିନେ ଭରତ ମନ୍ତ୍ରୀ ଦୁଷ୍ମନ୍ତ ପଟ୍ଟନାୟକଙ୍କଠାରୁ ଏକ ବ୍ୟକ୍ତିଗତ ଚିଠି ପାଇଲା । ସେହି

ଚିଠିରେ ଲୋକ ସେବକ ବିଶିଷ୍ଟ ସମାଜ ସେବୀ ଦୁଷ୍ମନ୍ତ ବାବୁ ଅଭିଯୋଗ କରିଛନ୍ତି ଯେ ମାଧବପୁର ଗ୍ରାମପଞ୍ଚାୟତକୁ ଦିଆ ଯାଇଥିବା ଉନ୍ନୟନ ପାଣ୍ଠି ସେ ତୋଷରପାତ କରିଛନ୍ତି । ତେଣୁ ଏହି ସନ୍ଧାନରେ ଆସନ୍ତା ସୋମବାର ଦିନ କମଳପୁର ଡାକ ବଙ୍ଗଳାରେ ତାଙ୍କ ସହିତ ସାକ୍ଷାତ କରିବାକୁ ନିର୍ଦ୍ଦେଶ ଥିଲା ।





ପହିଲି ଆଷାଢ଼ ।

ସକାଳ ପହରୁ ଆଚ୍ଛାକରି ଅସରାଏ ବର୍ଷା ହୋଇ ଯାଇଛି । ମାଧବପୁରରେ ସତେ ଯେପରି ଆଶା ସଞ୍ଚାର ହୋଇଛି । ଏଇ କେତେ ମାସ ହେବ ପୃଥିବୀ ଖରାରେ ଜଳୁଥିଲା । ଦାଣ୍ଡକୁ ବାହାରି ହେଉ ନଥିଲା । ଗୃହବାସ ସବୁ ବନ୍ଦ ଥିଲା । ଅକ୍ଷିତୃତୀୟା ପରେ ଯିଏ ଯାହାର ସାଉକାର ବିଲକୁ କେବଳ ଅକ୍ଷିମୁଠି ଧରି କମିତ ଯାଇ ଅନୁକୂଳ କରି ଦେଇ ଆସିଥିଲେ ।

ଏଇ ଅସରକ ବର୍ଷା ପରେ ସମସ୍ତଙ୍କ ତୁଣ୍ଡରୁ ସନ୍ତୋଷରେ ବାହାରି ପଡ଼ିଲା ଆରେ ଯାହା ହେଉ ମଣିଷ ଏଣିକି ବଞ୍ଚିବ । ଗାଈ ବଳଦ ଅନ୍ତତଃ ଚଡ଼ିଆରେ ମୁହଁ ମାରିବେ । ପିଇବାକୁ, ଗାଧୋଇବାକୁ ପାଣି ମୁନ୍ଦାଏ ହେଲେ ମିଳିବ ।

ଆଉ ସାଉକାର ଘରମାନଙ୍କରୁ ଏଣିକି ମୂଲ ଲଗିବା ପାଇଁ ଡାକରା ଆସିବ ।

ଏଇ କେତେଦିନ ହେବ ସାରିଆ ଲୋକେ ମାଷ୍ଟ୍ରଙ୍କ ଘରକୁ ଯାଇ ପାରି ନଥିଲା । କୁନ୍ତଳା ତାର ନେତ୍ରମଙ୍କ ପାର ଗାଁକୁ ଫେରି ଆସିଛି ।

ନାତିଆ ଟୋକା ଭରତଟା ବଡ଼ ଦୁଷ୍ଟ ହୋଇଛି । ଠୂକୁ ଠକୁ ହୋଇ ଚାଲିଲାଣି । ତାକୁ ଏଣିକ ଗୋଟେଡ଼ ଗୋଟେଡ଼ ଜଗିବାକୁ ପଡ଼ୁଛି । ବଡ଼ ହନୁମାଠା ହୋଇଛି ତ !

କାଲି କୁନ୍ତଳାର ଚାକିରି ପାଇଁ କାଗଜ ଆସି ପହଞ୍ଚିଲା । ନରହରିପୁର ଗାଆଁରେ ସେ ଯାଇ ଚାକିରି କରିବ । ଏଣିକି ଏଇ ଗାଆଁ ଛାଡ଼ି ତାକୁ ସବୁଦିନ ଝିଅ ଓ ନାତି ସଙ୍ଗରେ ଯିବାକୁ ହେବ ।

ସାରିଆ ମନେ କଲା : ଏତେ ବଡ଼ ବିପଦରେ ତାର କେବଳ ସାହା ଭରସା ହୋଇଛନ୍ତି ଲୋଚନ ମାଷ୍ଟ୍ରେ । ଦିଅଁ ଦେବତାଙ୍କ କଥା ଶୁଣିଛି କିନ୍ତୁ ଚଳନ୍ତି ଠାକୁରରୂପେ ଲୋଚନ ମାଷ୍ଟ୍ରଙ୍କୁ ତା ଆଖି ଦେଖି ଆସିଲା । ମନରେ ତାର ଯଦି କାହା ପ୍ରତି ଭକ୍ତି ଥାଏ ତେବେ ସେଇ ମହାପୁରୁଷଙ୍କ ପାଇଁ ଯିଏ ବ୍ରାହ୍ମଣ ହୋଇ ସୁଦ୍ଧା ଛୁଆଁ ଅଛୁଆଁଙ୍କୁ ପାଦରେ ଏଡ଼ ଦେଇ ତା ଆଖିରୁ ଲୁହ ପୋଛି ଦେଇଥିଲେ । ସେ ଯଦି ନ ରହିଁଥାନ୍ତେ ତେବେ ମାଆ, ପିଲା ଦୁଇଟା ଭସି ଯାଇଥାନ୍ତେ ।

ସତ୍ ପଥକୁ ବାଟ ସିଏ ଦେଖାଇ ଦେଇଥିଲେ । ଥିଲା ନଥିଲାକୁ ସାହା ହେଲେ । ଉତୁଆଣି ପିଲାଟାକୁ ଧରି ସେ ଯେତେବେଳେ ଧନ୍ଦି ହେଉଥିଲା ସେ ସେତେବେଳେ ତାକୁ ଦମ୍ଭ ଦେଇଥିଲେ ।

କୁନ୍ତଳା ଏଣିକ ଯୋଗା ହେଲାଣି । ସରକାର ଘରେ ଚାକିରି କରି ତା ପିଲା ଆଉ ତାକୁ ପୋଷିବ । ଆଉ ପର ଦୁଆରେ ଦିହ ମିହିନତ କରିବାକୁ ପଡ଼ିବ ନାହିଁ । ବେଳ ଅବେଳରେ ବାର ଛିଃ-ଛିକାର ଶୁଣିବାକୁ ପଡ଼ିବ ନାହିଁ ।

ରାତି ପାହି ସକାଳ ହେଲେ ସେ ଏଇ ଗାଆଁ ଛାଡ଼ି ଚାଲିଯିବ । ଦଉଡ଼ିହବ ଏଇ ଡିହ ଖଣ୍ଡିକ । ମନେ ମନେ ହସିଲା ସାରିଆ ହଁ ହେ, ଆଉ ତ କିଛି ବିପୁଳ ସପତ୍ତି ନାହିଁ, ଏଇ ଟେମାକ ମାଟି ଟିଁ ପଡ଼ିଥାଉ । ଭଗବାନ ଯଦି ଭରତକୁ ଆୟୁଷ ଦେଇଥିବେ, ସେ ଯେତେବେଳେ ବଡ଼ ହେବ, ତା ମୁଣ୍ଡକୁ ହାତ ପାଇଲେ ସେ'ତ ଜାଣିବ ତା ଆଈ ତା ପାଇଁ ଏ ଖଣ୍ଡିକ ଛାଡ଼ି ଯାଇଛି······

କୁନ୍ତଳା ଲଗାଇଛୁ ସକାଳୁ ସେମାନଙ୍କୁ ଯିବାକୁ ହେବ । ତେଣୁ ନାତି ଆଉ ଝିଅକୁ ସଙ୍ଗରେ ଧରି ସାରଥୀ ଆସି ଲୋଚନ ମାଷ୍ଟ୍ରଙ୍କ ଘରେ ପାଦ ଦେଲା ।

ବେଳ ସେତେବେଳକୁ ଖରା ମୁଣ୍ଡ ଉପରେ । ଲୋଚନ ମାଷ୍ଟ୍ରେ ଖାଇ ସାରି ଦାଣ୍ଡ ଘରେ ଗଡ଼ପଡ଼ ହେଉଥିଲେ । ଆଖି ପଡ଼ିଗଲା ସାରଥୀ ତା ସଂସାର ଧରି ଆସି ପହଞ୍ଚିଲାଣି ।

ସେ ସପ ଉପରୁ ଉଠି ବସିପଡ଼ିଲେ ।

କୁନ୍ତଳା, ସାରଥୀ ଲୋଚନ ମାଷ୍ଟ୍ରଙ୍କ ପାଦତଳେ ମୁଣ୍ଡିଆ ମାରିଲେ ।

ହସି ଉଠିଲେ ଲୋଚନ ମାଷ୍ଟ୍ରେ ।

ସେ ହସ ଥିଲା ଆତ୍ମୀୟତାର ।

ହସି ହସି ସେ କହିଲେ କ'ଣ କାଲି ସକାଳୁ ଯାଇ ଟ୍ରେନିଂରେ ଯୋଗ ଦେବା ଠିକ୍ ତ ?

କୁନ୍ତଳା କହିଲା ଆପଣ ପରା କହିଲେ କାଲି ଯାଇ ଜଏନ୍ କରିବା ପାଇଁ । ତେଣୁ ଆପଣଙ୍କ କଥାକୁ ଅବମାନନା କିପରି ହୁଅନ୍ତା ?

ସାରଥୀ କୃତାର୍ଥ କୃତାର୍ଥ ହୋଇ କହିଲା ତମେ ସାନ୍ତେ ଯାହା କହିବ ସେ ଆମର ବେଦର ଗାର । ଆମେ ଶୁଭ-ଅଶୁଭ କ'ଣ ଜାଣୁ ନାହିଁ । ଆପଣଙ୍କ ବଚନ ହିଁ ଆମ ପାଇଁ ଅନୁକୂଳ ।

ହସିଲେ ଲୋଚନ ମାଷ୍ଟ୍ରେ । କହିଲେ ତୁମେ ତ ମାଆ ଝିଅ ଯିବ ଆଉ ଏଇଟାକୁ······

କୁନ୍ତଳା ଲାଜେଇ ଗଲା !

ସାରଥୀ ଭରତ ମୁହଁରେ ଆଦରରେ ଚୋକଟିଏ ଦେଇ କହିଲା ଏଇ ଖଣ୍ଡିକ ପାଇଁ ସିନା ଏତେ ଦୁଃଖ । ତାକୁ ଆଉ କ'ଣ ଫିଙ୍ଗି ଦେଇ ପାରିବି ? ମୁଁ ତ ବଞ୍ଚି ନଥିବ ଦେଖିବାକୁ । ହେଲେ, ଆପଣଙ୍କ ଚରଣ ଧୂଳି ପଡ଼ିଥିଲେ ଏଇ ଖଣ୍ଡିକ ଯଦି ମଣିଷ ହୁଏ ତେବେ ମୋ ନାଁ କ'ଣ ଆପଣଙ୍କ ନାଁ ରଖିବ । ରଜା ମହାରଜାମାନେ

ସିନା ଦେଉଳ ତୋଳୁଥିଲେ କିନ୍ତୁ ଆପଣ ଯେଉଁ ମହତ କାମ କଲେ ସେଥିରେ କୁନ୍ତଳା ବଂଶ ଥିବା ପର୍ଯ୍ୟନ୍ତ ଆପଣ ସେମାନଙ୍କ ପାଇଁ ଠାକୁର, ଧର୍ମ, ଦେବତା, ସବୁକିଛି ।

ଲୋଚନ ମାଷ୍ଟ୍ରେ କହିଲେ ହଉ, ଥାଉ ସେ କଥା । ତମେ ମାଆ, ଝିଅ ଟିକିଏ ବସିପଡ଼ ଆଉ ଦେଖା ହେବ କି ନାହିଁ କିଏ କହିବ ? ମଣିଷ ଜୀବନ ଆଜି ଅଛି କାଲିକି କ'ଣ ହେବ କିଏ ଜାଣେ । ଠିକ୍ ସାରୁ ପତ୍ରରେ ପାଣି ପରି ଏ ଜୀବନ ଚଞ୍ଚଳ । ସେ ଯାହା ହେଉ ମୁଁ ଏତିକି କହୁଛି ଦେଖିବୁ ଏଇ 'ଭରତ' ମୋର ଆଶିଷରୁ ନିଶ୍ଚୟ ମଣିଷ ପରି ମଣିଷଟିଏ ହେବ । ସେକାଳର 'ଭରତ'ଙ୍କ ପାଇଁ ସିନା ଜମ୍ବୁଦ୍ୱୀପର ନାମ ଭାରତବର୍ଷ ହେଲା ଦେଖିବୁ ଏଇ 'ଭରତ' ଏ କାଳ ଭାରତର ରୂପ ଅନ୍ୟକାଳ ପାଇଁ ବଦଳାଇ ଦେବ ।

ହସି ପକାଇଲା ସାରଆ । କହିଲା ଖୁବ ପୁରାଣଟା ଠିକେ ଠିକେ କହିଗଲ । ସବୁ ଶୁଣିଲି, ହେଲେ ମୋ ମନକୁ ଗୋଟିଏ କଥା ପାଇଲା ନାହିଁ, ସେଇଟା ହେଲା ଏଇମିତି କି କାମ ଦୁଷ୍ମନ୍ତ ମହାରାଜା କରି ନ ପାରିଲେ ଯେ ତାଙ୍କ ପୁଅ ଭରତ ସେ କାମ କରିପାରିଲେ ? ଅଯୋଧ୍ୟାର ରାଜା ଥିଲେ ସେ, କ'ଣ ଅବା ଅଭାବ ଥିଲା ତାଙ୍କର ? ଧନ, ମାନ, କ୍ଷମତା କେଉଁଥିରେ ଅବା ସେ ଊଣା ଥିଲେ ?

ଲୋଚନ ମାଷ୍ଟ୍ରେ ଗଭୀର ନିଃଶ୍ୱାସଟିଏ ଛାଡ଼ି କହିଲେ ତୁ ଯାହା କହିଲୁ ସତ । ସବୁ ତାଙ୍କର ଥିଲା । ଧନଜନ ଗୋପ ଲକ୍ଷ୍ମୀରେ ତାଙ୍କ ଉଆସ ପରିପୂର୍ଣ୍ଣ ଥିଲା । ଏତେ ଜିନିଷ ଥାଇ ସୁଦ୍ଧା ତାଙ୍କର ଗୋଟିଏ କଥାର ଅଭାବ ଥିଲା । ସେଇଟି ହେଲା ସତ୍ୟବାଦିତା । ସେ ଯଦି ସତ୍ୟକୁ ଭଲ ପାଉ ଥାନ୍ତେ ତେବେ ସତ୍ୟ ପାଳନ ପାଇଁ ସେ ନିଶ୍ଚୟ ଶକୁନ୍ତଳାଙ୍କୁ ଆଣି ରାଣୀ କରି ପାରିଥାନ୍ତେ । କିନ୍ତୁ ମଣିଷ ଯେତେବେଳେ ଧନ ସଂପଦରେ ଭୋଳ ହୋଇଯାଏ ସେ ବିବେକକୁ ମଧ୍ୟ ପାଶୋରି ଦିଏ । ଦୁଷ୍ମନ୍ତ

ଯେତେବେଳେ ରାଜଗାଦୀରେ ବସିଲେ ବିଷୟବାସନାରେ ଏତେ ମଜ୍ଜିଗଲେ ଯେ ତାଙ୍କ ପ୍ରତିଶ୍ରୁତି ବିଷୟ ଭୁଲିଗଲେ । ପ୍ରଜାମାନଙ୍କ ପାଇଁ ଯେତିକି ତାଙ୍କର କର୍ତ୍ତବ୍ୟ ତାହା ମଧ କରି ନଥିଲେ । କିନ୍ତୁ ଭରତ ଯେତେବେଳେ ରାଜ୍ୟରେ ଦାୟିତ୍ୱ ନେଲେ ସେ ବିବେକ ଅନୁସାରେ କାର୍ଯ୍ୟ କଲେ । ସତ୍ୟରେ ପୂଜାର୍ହ ହେଲେ । ତୁ ମୋତେ ଗୋଟିଏ ପ୍ରଶ୍ନ କରିପାରୁ ଏହା ସମ୍ଭବ ହେଲା କିପରି ?

ତାହାର ସେ ଉତ୍ତରରେ ମୁଁ ଏତିକି କହିବି ସବୁ କାର୍ଯ୍ୟ ପାଇଁ ସାଧନା ଆବଶ୍ୟକ । କଷ୍ଟ କରି ସାଧନା କଲାପରେ ସିଦ୍ଧି ବହୁତ ବିଳମ୍ବରେ ମିଳିଥାଏ । ଠିକ୍ ତୁ ଏଇ ନାତିଆଟାକୁ କଷ୍ଟ କରି ଗୁହ ମୂତ ପୋଛୁଥିବାରୁ ସିନା ତା ପାଟି ଫିଟିଲାରୁ ସେ ତୋତେ ଆଗ 'ଆଈ' ବୋଲି ଡାକିଲା ! କହିଲୁ ଯେତେବେଳେ ଖିନ ଖିନ ହୋଇ ତା'ର ପାକୁଆ ପାଟିରୁ 'ଆଈ' ଡାକ ଶୁଣିଲୁ ତୋ ମନରେ କେତେ ଆନନ୍ଦ ହୋଇ ନଥିବ ? ହଣ୍ଡା ହଣ୍ଡା, ସୁନା ଅସରପି ଯଦି କିଏ ତୋତେ ଦେଇ ଥାନ୍ତା ତାହା କ'ଣ ସେହି ଆନନ୍ଦ ସହ ସମତୁଲ ହୋଇ ପାରିଥାନ୍ତା ?

ସାରିଆ କହିଲା ତମେ ସାନ୍ତେ ଯାହା କହିଲ ସବୁ ସତ କଥା । କିନ୍ତୁ ଦୁଷ୍ମନ୍ତ ରାଜାଙ୍କର ସିନା ରାଜଗାଦୀ ଥିଲା, ରାଜ୍ୟଥିଲା, ସେ ତାଙ୍କର ପୁଅ 'ଭରତ'କୁ ରାଜ୍ୟକୁ ଡାକି ନେଇ ତାହା ହାତରେ ରାଜ୍ୟ ସମର୍ପି ଦେଲେ । କିନ୍ତୁ ପୁରାଣ କଥା ଯଦି ସତ ନ ହୁଏ ? ଆମ ଦୁଷ୍ମନ୍ତ ବାବୁ ଯଦି ମୋ ନାତି 'ଭରତ'କୁ ନ ଚିହ୍ନନ୍ତି ନ ପଚାରନ୍ତି ତେବେ............

ଲୋଚନ ମାଷ୍ଟ୍ରେ ହସିଦେଲେ । କହିଲେ ସେଥିପାଇଁ କଥା ଅଛି "ଆଦମ୍ କେ ଆଦମ୍ ଅନ୍ତର, କୋଇ ହୀରା କୋଇ ପଥର ।" ମଣିଷ ମାନଙ୍କେ ସମସ୍ତ ହାତ, ଗୋଡ଼ ସବୁ ଅଙ୍ଗ ପ୍ରତ୍ୟଙ୍ଗ ଥିବା ଦୃଷ୍ଟିରୁ ସମାନ କିନ୍ତୁ ସେମାନଙ୍କ ଭିତରେ ଜଣେ ସାଧୁ ହେଲେ ଆଉ ଜଣେ ତସ୍କର ହୁଏ । ଏହା କାହିଁକି ହୁଏ ? ଏହାର ଉତ୍ତର କେବଳ

ଗୋଟିଏ—ସେଇଟି ହେଲା ସାଧନା । ଭଲ ମଣିଷ ହେବାକୁ ହେଲେ "ସତ୍ୟ"କୁ ଭଲ ପାଇବାକୁ ହେବ । ଜୀବନର ଝଡ଼, ଝଞ୍ଜା, ବିପଦ, ଆପଦ ସବୁକୁ ବୁକୁ ପାତି ଯିଏ ହସି ହସି ସହି ନେଇ ସତ୍ୟର ପୂଜାରୀ ହୁଏ, ସେ ପୁରୁଷରୁ ମହାପୁରୁଷ ହୁଏ । ସେହିଭଳି ଲୋକ ହେଉଛନ୍ତି ଗାନ୍ଧିଜୀ । ତାଙ୍କୁ ସେଥି ପାଇଁ ସମସ୍ତେ ମହାତ୍ମା କହୁଛନ୍ତି ।

ଦୁଷ୍ମନ୍ତ ପଟ୍ଟନାୟକ ବଡ଼ ହୁଅନ୍ତୁ କିମ୍ବା 'ଭରତ'ର ପିତା ବୋଲି ପରିଚୟ ଦିଅନ୍ତୁ, କିମ୍ବା ନ ଦିଅନ୍ତୁ ସେଇଟା ବଡ଼ କଥା ନୁହେଁ । ବଡ଼ କଥା ହେଉଛି ଭରତକୁ ଯଦି 'ମଣିଷ' ଭଳି ପିଲାଦିନରୁ ଗଢ଼ାଯାଏ ତେବେ ସେ ପ୍ରକୃତ ଭାରତୀୟ ହୋଇ ପାରିବ । ଆଉ କ'ଣ ରାଜ୍ୟ ଅଛି ନା ରାଜା ଅଛନ୍ତି ? ଆମ ଦେଶର ଆମେ ମାଲିକ । ତେଣୁ ସେ କାଳର 'ଭରତ' ନାଁରେ ଜମ୍ବୁ ଦ୍ୱୀପ ନାଁ ଭାରତ ହେଲା । ଏ କାଳର ଭରତ ଅନ୍ୟ କାଳ ପାଇଁ ଇତିହାସ ସୃଷ୍ଟି କରିବ । ତାର ଦେଶକୁ, ତାର ଦେଶବାସୀଙ୍କୁ ସେ ଯଦି ଭଲ ପାଇ ପାରିବ ସେତିକି ତା ପକ୍ଷରେ ଆଉ ଆମ ପକ୍ଷରେ ଯଥେଷ୍ଟ ।

କଥାମଝିରେ କୁନ୍ତଳା ପ୍ରଶ୍ନ କଲା ଆଜ୍ଞା, ମୁଁ ତ ଗୃହକର୍ମ କରିବି, ବାର ଦୁଆରେ ବୁଲିବି । ଆଉ ଭରତ···

ବିରକ୍ତ ହୋଇ ଲୋଚନ ମାଷ୍ଟ୍ରେ କହିଲେ ଏତିକି ପାଠ ପଢ଼ି ତୁ କିଛି ବୁଝି ପାରିଲୁ ନାହିଁ । ପେଟ ପୋଷିବା ପାଇଁ ତୁ ଗୃହକର୍ମ କରିବୁ । ମାଆ ଓ ତୋ ପୁଅକୁ ବଞ୍ଚାଇବା ପାଇଁ ତୁ ବାର ଦୁଆର ବୁଲିବୁ କିନ୍ତୁ ଭରତକୁ ମଣିଷ କରିବା ପାଇଁ ତୋତେ ସାଧନା କରିବାକୁ ହେବ । ସେ ସାଧନା ବଡ଼ କଷ୍ଟ । ପୁଣି ଭାବି ବସିଲେ ବଡ଼ ସହଜ । ତାକୁ ପିଲା ଦିନରୁ "ସତ୍ୟ"କୁ ଭଲ ପାଇବା ପାଇଁ ଶିକ୍ଷା ଦେବୁ । 'ସତ୍ୟ' ବିଷୟରେ ତୋତେ ଗୋଟିଏ ଗପ କହିବି । ଶୁଣ, ଆମ ଓଡ଼ିଆରେ କହନ୍ତି 'ସତ ଥିଲେ ଭାତ ମିଳେ' । ଏହା ଅର୍ଥ ଖାଇବା 'ଭାତ' ନୁହେଁ । ସତ ଥିଲେ ମହତ୍ତ୍ୱ ବଢ଼େ ।

ସାରିଆ କହିଲା ତମେ ସାନ୍ତେ ସେଇ ଗପଟି କୁହ । ଆଜି ରାତି ପାହି କାଲି ସକାଳ ହେଲା ପରେ ଆଉ ତ ଦର୍ଶନ ପାଇ ପାରିବି

ନାହିଁ, କେବେ କମିତି ମନ ବ୍ୟସ୍ତ ହେଲେ ଦଉଡ଼ ଆସୁଥିଲି ଯେ ତମେ ଆପଣ ପୁରାଣରୁ କାହାଣୀଟିଏ କହି ଏ ମନକୁ ଶାନ୍ତି ଦେଉଥିଲ । ଏଣିକି ସେତକ ସାତ ସପନ ହେବ । ଯାହା ପାରୁଛ—ଶୁଣି ନେଇଥାଏ । ଏ ପାପ କାନ ହେଲେ ପବିତ୍ର ହେଉ ।

ଲୋଚନ ମାଷ୍ଟ୍ରେ କହିବାକୁ ଆରମ୍ଭ କଲେ :

ଆଜକୁ ଅନେକ ଦିନ ତଳେ ଜଣେ ରାଜା ଥିଲେ । ତାଙ୍କ ନାମ ଥିଲା ସତ୍ୟବ୍ରତ । ନାଁକୁ ଚାହିଁ ତାଙ୍କର ଗୁଣ ମଧ୍ୟ ଠିକ୍ ସେଇମିତି ଥିଲା । ସେ ସତ୍ୟ କହିବାକୁ, ସତ ଶୁଣିବାକୁ ଆଉ ସତ୍ କାର୍ଯ୍ୟ କରିବା ପାଇଁ ଜୀବନର ବ୍ରତ ବୋଲି ଗ୍ରହଣ କରି ନେଇଥିଲେ । ତାଙ୍କ ରାଜ୍ୟରେ ସୁଖ, ଶାନ୍ତି ବିରାଜି ଥିଲା । ରାଜ୍ୟରେ କେହି ପଦେ ହେଲେ ମିଛ କହୁ ନଥିଲେ ।

ସେଥିପାଇଁ ତାଙ୍କ ରାଜ୍ୟ ନାମ ଥିଲା ସତ୍ୟପୁର ।

ସବୁ ବର୍ଷ ତ ଗଙ୍ଗାରେ ସ୍ନାନ ଯୋଗ ପଡ଼େ ନାହିଁ । ସେହିବର୍ଷ ଗଙ୍ଗାରେ ସ୍ନାନ ଯୋଗ ପଡ଼ିଲା । ରାଜା ସତ୍ୟବ୍ରତ ସେଥିପାଇଁ ପାହାନ୍ତା ପହରରୁ ନିଦରୁ ଉଠି ଉଆସରୁ ବାହାରି ପଡ଼ିଲେ । ସେ ଉଆସରୁ ଆସି ସିଂହଦ୍ୱାର ପାଖରେ ପହଞ୍ଚିଛନ୍ତି, ଏହି ସମୟରେ ଗୋଟିଏ ଅଦ୍ଭୁତ ଦୃଶ୍ୟ ଦେଖି ଚମକି ପଡ଼ିଲେ । ଘଟଣାଟି ହେଲା ତାଙ୍କ ଉଆସରୁ ଜଣେ ନାରୀ ମୂର୍ତ୍ତି ସିଂହଦ୍ୱାର ମଧ୍ୟଦେଇ ବାହାରକୁ ଚାଲି ଯାଉଛନ୍ତି । ସେ ଦେଖିବାକୁ ଅତ୍ୟନ୍ତ ସୁନ୍ଦରୀ । ଦେହରେ ଅଷ୍ଟ ଅଳଙ୍କାର ମଣ୍ଡି ହୋଇଛନ୍ତି ।

ରାଜା ସେହି ନାରୀ ଜଣକୁ ଦେଖି ଆଦୌ ଚିହ୍ନି ପାରିଲେ ନାହିଁ । କାରଣ ତାଙ୍କ ଉଆସରେ ପାଟ ରାଣୀଙ୍କୁ ମିଶାଇ ଯେତକ ଦାସୀ ଅଛନ୍ତି ସେମାନଙ୍କ ଭିତରେ ଏହି ଭଳି ଜଣକୁ, ସେ କଦାପି କୌଣସି ଦିନ ଦେଖି ନଥିଲେ । ତେଣୁ ସେ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ପ୍ରଶ୍ନ କଲେ ଆପଣଙ୍କ ପରିଚୟ ?

ଯୁବତୀ ଜଣକ ଉତ୍ତର ଦେଲେ ମୋର ନାମ ହେଉଛି ମହାଲକ୍ଷ୍ମୀ । ମୁଁ ବହୁକାଳ ଧରି ଏହି ଉଆସ ଭିତରେ ରହି ଆସିଥିଲି । ଆଜି ମୁଁ ଏଠାରୁ ଚାଲି ଯାଉଛି ।

ରାଜା ପଚାରିଲେ: ଚାଲିଯିବାର କାରଣ ?

ମହାଲକ୍ଷ୍ମୀ କହିଲେ: ସେପରି କିଛି କାରଣ ନାହିଁ । ମୋର ପ୍ରକୃତି ହେଲା ମୁଁ ଗୋଟିଏ ସ୍ଥାନରେ ସ୍ଥିର ହୋଇ ରହିପାରେ ନାହିଁ । ସେଥିପାଇଁ ମୋ ସ୍ୱାମୀ ମୋତେ ଚଞ୍ଚଳା ବୋଲି ଡାକନ୍ତି । ମୁଁ ଏଣେ ତେଣେ ବୁଲିବାକୁ ଭଲ ପାଏ ।

ରାଜା କହିଲେ: ଆପଣଙ୍କର ଇଚ୍ଛାରେ ମୁଁ ବାଧା ଦେବି ନାହିଁ । ଆପଣ ଯଦି ଚାହୁଁଛନ୍ତି ଯାଆନ୍ତୁ । ପୁଣି ଯେତେବେଳେ ଇଚ୍ଛା ହେବ ଆସି ପାରନ୍ତି । ଏହି ଦ୍ୱାର ଆପଣଙ୍କ ପାଇଁ ସଦାବେଳେ ଖୋଲା ଅଛି ।

ମହାଲକ୍ଷ୍ମୀ ଚାଲିଗଲେ ।

କିଛି ସମୟ ପରେ ରାଜା ଦେଖିଲେ: ତାଙ୍କ ପଛେ ପଛେ ଆଉ ଜଣେ ନାରୀ ମୂର୍ତ୍ତି ମଧ୍ୟ ଉଆସ ଭିତରୁ ବାହାରି ଆସୁଛନ୍ତି । ଏଥର ରାଜା ଆହୁରି ବିସ୍ମିତ ହୋଇ ଉଠିଲେ । ତାଙ୍କ ଆଡ଼କୁ ଆଗେଇ ଆସୁଥିବା ନାରୀ ମୂର୍ତ୍ତିକୁ ଚାହିଁ ପ୍ରଶ୍ନ କଲେ: ଆପଣ କିଏ କୁହନ୍ତୁ ?

ଉତ୍ତର ମିଳିଲା: ମୋ ନାଁ ଦାନଲକ୍ଷ୍ମୀ । ମହାଲକ୍ଷ୍ମୀ ଯେତେବେଳେ ଏ ଉଆସ ଛାଡ଼ି ଚାଲି ଯାଉଛନ୍ତି ସେତେବେଳେ ମୁଁ ରହି ଲାଭ କ'ଣ ? ଧନ ଥିଲେ ସିନା ଦାନ କରିବ । ତେଣୁ ଲକ୍ଷ୍ମୀ ଠାକୁରାଣୀ ଯୁଆଡ଼େ ମୁଁ ସିଆଡ଼େ ।

ସତ୍ୟବ୍ରତ ମହାରାଜ ଆଦୌ ଦୁଃଖିତ ହେଲେ ନାହିଁ । ମହାଲକ୍ଷ୍ମୀଙ୍କୁ କହିଲା ପରି କହିଲେ: ମୁଁ ତ ଆପଣଙ୍କ ଇଚ୍ଛାରେ ବାଧା ଦେବି ନାହିଁ, ଯଦି ଚାହୁଁଛନ୍ତି ତେବେ ଖୁସିରେ ଯାଆନ୍ତୁ ।

ଦାନଲକ୍ଷ୍ମୀ ଚାଲିଗଲେ ।

ରାଜା ମୁହଁ ଫେରାଇ ଦେଖିଲେ: ନଅରରୁ ଆଉ ଜଣେ ସୁନ୍ଦର ପୁରୁଷ ବାହାରି ଆସୁଛନ୍ତି । ତାହାଙ୍କୁ ଦେଖି ରାଜା ପ୍ରଶ୍ନ କଲେ : ଆପଣ ମହାଶୟ କିଏ ସେ ? ପରିଚୟ ଦୟାକରି ଦିଅନ୍ତୁ ।

ହସି ହସି ଯୁବକ ଜଣକ କହିଲେ: ମୋ ନାମ ହେଉଛି ସଦାଚାର । ମୁଁ ଥିଲେ ଲୋକ ପାଞ୍ଚ ପଚିଶିରେ ପୂଜା ପାଏ । କିନ୍ତୁ

ଲକ୍ଷ୍ମୀ ଯାହାକୁ ଛାଡ଼ି ଯାଆନ୍ତି ତା ନିକଟରେ ମୁଁ ରହେ ନାହିଁ । ବର୍ତ୍ତମାନ ମୋ ଆଗରୁ ତୁମ ଉଆସରୁ ଧନଲକ୍ଷ୍ମୀ ଏବଂ ଦାନଲକ୍ଷ୍ମୀ ବାହାରି ଚାଲି ଗଲେଣି, ତେଣୁ ମୋର ରହିବାର ପ୍ରଶ୍ନ ଆଦୌ ଉଠୁ ନାହିଁ ।

ରାଜା କହିଲେ ଆପଣଙ୍କର ରୀତିକୁ ମୁଁ ତ ଅବରୋଧ କରି ପାରିବି ନାହିଁ । ଯେହେତୁ ଆପଣଙ୍କୁ ମୁଁ ଭକ୍ତି କରେ । ତେଣୁ ଆପଣ ଯାଇ ପାରନ୍ତି ।

ରାଜା ଆଉ ଗଙ୍ଗାସ୍ନାନ କରିବାକୁ ଯିବେ କ'ଣ ? ଅପେକ୍ଷା କଲେ କାଳେ ଆଉ କିଏ ପୁଣି ଉଆସରୁ ବାହାରି ଯିବେ କି ?

ଏହି ସମୟରେ ସେ ଦେଖିଲେ ଆଉ ଜଣେ ତରୁଣୀ ଉଆସ ଭିତରୁ ବାହାରି ଚାଲି ଯାଉଛନ୍ତି ।

ରାଜା ତାଙ୍କ ନିକଟକୁ ଯାଇ ପ୍ରଶ୍ନ କଲେ : ଆପଣ କିଏ ସେ ? କାହିଁକି ମୋ ରାଜ ନଅର ଛାଡ଼ି ଚାଲି ଯାଉଛନ୍ତି ?

ତରୁଣୀ ଜଣକ ମୁହଁ ଶୁଖାଇ କହିଲେ : ବୁଝିଲେ ମହାରାଜ ! ମୋ ନାଁ ହେଉଛି ଯଶ ଲକ୍ଷ୍ମୀ । ଯେଉଁଠାରେ ଧନ ପ୍ରଚୁର ଥାଏ । ସେ ଲୋକ ଦାନ କରୁଥାଏ ଏବଂ ସେ ସଦାଚାରୀ ହୋଇଥାଏ । ସେହିପରି ସ୍ଥାନରେ ମୁଁ ବାସ କରେ । ତୁମ ଉଆସରୁ ଜଣେ ଜଣେ ହୋଇ ତିନି ଜଣ ଚାଲି ଗଲେଣି । ତେଣୁ ମୁଁ ଆଉ ରହିବି କାହାକୁ ଆଶ୍ରୟ କରି ? ସେମାନେ ଯୁଆଡ଼େ ମୁଁ ତାଙ୍କ ପଛେ ପଛେ ସିଆଡ଼େ ।

ରାଜା କହିଲେ ଆପଣମାନେ ସମସ୍ତେ ମୋତେ ଅନୁଗ୍ରହ କରିଥିଲେ । ତେଣୁ ମୋ ଉଆସରେ ରହିଥିଲେ । ଯଦି ଆପଣମାନେ ରହିବାକୁ ଚାହୁଁ ନାହାନ୍ତି ତେବେ ଆପଣଙ୍କୁ ମୁଁ କ'ଣ ଅଟକାଇ ରଖି ପାରିବି ? ତେଣୁ ଆପଣ ଯାଇ ପାରନ୍ତି ।

ଉଆସ ଭିତରୁ ଚାଲିଗଲେ ଯଶ ଲକ୍ଷ୍ମୀ । ସେ ମଧ୍ୟ ଅନ୍ୟ ତିନି ଜଣଙ୍କ ସହିତ ଯୋଗଦେଲେ ।

ସତ୍ୟବ୍ରତ ମହାରାଜା ଅପେକ୍ଷା କଲେ ତାଙ୍କ ଉଆସ ଛାଡ଼ି ପ୍ରତ୍ୟେକ ଲକ୍ଷ୍ମୀ ଓ ସଦାଗ୍ରହ ତ ଚାଲିଗଲେଣି ଦେଖିବା ଏଥର କାହାର ପାଳି ପଡ଼ୁଛି ? ଯଦି ଏଥର ଆଉ କେହି ନ ଯାଆନ୍ତି ତେବେ ସେ ଗଙ୍ଗାରେ ସ୍ନାନ କରିବାକୁ ଯିବେ ।

କିଛି ସମୟ ପରେ ରାଜା ଦେଖିଲେ ଏକ ସୁଦର୍ଶନ ଯୁବକ ଉଆସ ଭିତରୁ ବାହାରି ଆସୁଛନ୍ତି । ତାଙ୍କ ମୁହଁରୁ ଏକ ଉଜ୍ଜଳ ଜ୍ୟୋତି ବାହାରୁଛି । ସେହି ଆଲୁଅରେ ଚାରିଆଡ଼ ଆଲୋକିତ ହୋଇ ଉଠୁଛି ।

ରାଜା ଆଶ୍ଚର୍ଯ୍ୟ ହୋଇ ପଡ଼ିଲେ । ଏହି ଯୁବକଙ୍କ ପୂର୍ବରୁ ଯେଉଁମାନେ ବାହାରି ଗଲେ ସେମାନଙ୍କଠାରେ ତ ଏଭଳି ତେଜ ନଥିଲା ।

ରାଜା ପ୍ରଶ୍ନ କଲେ : ମହାଶୟ, ଆପଣ ମୋର ସନ୍ଦେହ ମୋଚନ କରନ୍ତୁ । ଆପଣ କିଏ ମୋତେ ଆଗ କୁହନ୍ତୁ ।

ସୁଦର୍ଶନ ଯୁବକ ଜଣକ ଅଳପ ହସିଲେ । ସତେ କି ତାଙ୍କ ହସରୁ ଅମୃତ ଝରୁଥାଏ । ସେ ଅତି ମଧୁର ଏବଂ କୋମଳ କଣ୍ଠରେ କହିଲେ ମୋ ନାଁ ହେଉଛି "ସତ୍ୟ" ।

ରାଜା ଏତିକି ଶୁଣି 'ସତ୍ୟ'ଙ୍କ ପାଦ ତଳେ ଲମ୍ବ ହୋଇ ପଡ଼ିଗଲେ । କାନ୍ଦି କାନ୍ଦି କହିଲେ ଆପଣଙ୍କର ଯଦି ମୁଁ କିଛି କ୍ଷତି କରିଥାଏ ତେବେ ମୋତେ କ୍ଷମା ଦିଅନ୍ତୁ । କିନ୍ତୁ ମୋ ଉଆସ ଛାଡ଼ି ବାହାରିକୁ ଚାଲି ଯାଆନ୍ତୁ ନାହିଁ । ମୁଁ କୌଣସି ମତେ ଆପଣଙ୍କୁ ଯିବାକୁ ଦେଇ ପାରିବି ନାହିଁ । ଆପଣ ଚାଲିଗଲା ପରେ ମୋ ରାଜ୍ୟ ନାମ ଆଉ ସତ୍ୟପୁରୀ ହୋଇ ରହିବ ନାହିଁ । ଏହା ମିଥ୍ୟାପୁରୀ ହୋଇଯିବ । ପ୍ରଜାମାନଙ୍କ ଭିତରେ ବିଶୃଙ୍ଖଳା ଦେଖାଯିବ । ଚୋରି, ଡକାୟତି, ମିଥ୍ୟା, ଜାଲ୍, ଜୁଆଚୋରି ଏତେ ବଢ଼ିଯିବ ଯେ ପ୍ରଜା-ମାନଙ୍କର ସାଧାରଣ ଜୀବନ ବଡ଼ କଳଙ୍କମୟ ହୋଇଉଠିବ । ଆପଣ ମୋର ସର୍ବସ୍ୱ । ତେଣୁ ଆପଣଙ୍କୁ ମୁଁ ପାଦ ଧରି ବିନୀତ ଭାବରେ ପ୍ରାର୍ଥନା କରୁଛି ଆପଣ ରହନ୍ତୁ । ଆପଣଙ୍କ ପୂର୍ବରୁ ଯେଉଁ ଚାରିଜଣ ଦେବା

ଦେଖି ଚାଲିଗଲେ ସେମାନଙ୍କୁ ମୁଁ ବାଧା ଦେଲି ନାହିଁ କମ୍ବା ରହିବା ପାଇଁ ଅନୁରୋଧ କଲି ନାହିଁ । ତାହାର କାରଣ ମୋର ଧନ କ ଯଶର ଆବଶ୍ୟକ ନାହିଁ । କିନ୍ତୁ ଆପଣ ନ ରହିଲେ ମୁଁ ବଞ୍ଚିପାରିବ ନାହିଁ । ଆପଣଙ୍କ ବିନା ମୁଁ ଏ ରାଜ୍ୟ ଶାସନ ମଧ୍ୟ କରିପାରିବ ନାହିଁ । ଆପଣଙ୍କର ମୁଁ ପୁଅଭଳି । ବାପ କ'ଣ ପୁଅର ଅମଙ୍ଗଳ କାମନା କରେ ? ଆପଣ କ'ଣ ଚାହାନ୍ତି ଏ ଦେଶଟା ଛାରଖାର ନଷ୍ଟଭ୍ରଷ୍ଟ ହୋଇଯାଉ ?

ସାରିଆ ହଠାତ୍ କହି ଉଠିଲା ତମେ ସାନ୍ତେ ଲୁହ, ଲୁହ, ତେଣିକ କ'ଣ ହେଲା ? ସତ୍ୟ ରହିଲେ ନାଁ ଚାଲିଗଲେ ?

ରାଜାଙ୍କ ଆଖିର ଲୁହ ସତ୍ୟଙ୍କ କୋମଳ ହୃଦୟରେ ବଡ଼ କଷ୍ଟ ଦେଲା । ସେ ଆଉ ଆଗକୁ ଯିବେ କ'ଣ ପଛକୁ ଫେରିଲେ । ପୁଣି ଉଆସ ଭିତରେ ପଶିଲେ ।

କୁନ୍ତଳା ପ୍ରଶ୍ନ କଲା ତେଣିକି ?

ସିଂହଦ୍ୱାର ବାହାରେ ଅପେକ୍ଷା କରି ରହିଥିଲେ ଧନଲକ୍ଷ୍ମୀ, ଯଶ ଲକ୍ଷ୍ମୀ, ଦାନ ଲକ୍ଷ୍ମୀ ଏବଂ ସଦାଚାର । ସତ୍ୟଙ୍କର ଆସିବାର ବିଳମ୍ବ ଦେଖି ସେମାନେ ଘଟଣା କ'ଣ ଜାଣିବା ପାଇଁ ଆଗପଛ ହୋଇ ଜଣ ଜଣ କରି ଉଆସ ଭିତରେ ଆପଣା ଛାଏଁ ପଶିଲେ ।

ସାରିଆ ପଚାରିଲା—ତମେ ସାନ୍ତେ ସେମାନେ ତ ଚାଲିଯାଇଥିଲେ । ପୁଣି ଫେରିଲେ କାହିଁକି ? ସତ୍ୟ ଦେବତା ନ ଗଲେ ତାଙ୍କର କ'ଣ ଗଲା ?

ହସି ଉଠି ଲୋଚନ ମାଷ୍ଟ୍ରେ କହିଲେ କଥାର ମଞ୍ଜି ତ ସେହିଠାରେ । ସତ୍ୟ ଯେଉଁଠି ଧନ ଯଶ, ସଦାଚାର ସେହିଠାରେ । ସତ୍ୟ ଯଦି ଶରୀର ଭିତରେ ପ୍ରାଣ ହୁଏ, ତେବେ ଏମାନେ ଗୋଡ଼ ହାତ । ପ୍ରାଣ ଚାଲିଗଲା ପରେ ଆଉ ଗୋଡ଼ ହାତଙ୍କର କି କାମ ଥାଏ କହିଲୁ ?

ସାରଥୀ କହିଲା : ତମେ ସାନ୍ତେ ପ୍ରାଣ ଗୃଲଗଲା ପରେ ଗୋଡ଼ ଟୋଡ଼ିଟି, ହାତ ହାତଟି ରହିବ । ହଲ ନାହିଁକି ଚଲ୍ ନାହିଁ । ସମସ୍ତେ କହନ୍ତି ମଡ଼ା ।

ହସି ଉଠିଲେ ଲୋଚନ ମାଷ୍ଟ୍ରେ ।

ସାରଥୀ ମୁହଁରେ ତୃପ୍ତିର ଗୋଟାଏ ଝଲକ ଖେଳି ଉଠିଲା । ସେ ହାତ ଉପରେ ଗାଲଟି ରଖି ଲୋଚନ ମାଷ୍ଟ୍ରଙ୍କ ମୁହଁକୁ ଏକା ଲୟରେ ଗୃହିଁ ରହିଥିଲା । ତାର ଧାରଣା ଏ ଗପ ବୋଧହୁଏ ସରିନାହିଁ । ଲୋଚନ ମାଷ୍ଟ୍ରେ କଥା ବନ୍ଦ କରିବାର ଦେଖି ସେ କହିଲା : ତମେ ସାନ୍ତେ କଥାରେ ଅଛୁ ବସିବ ତ ପଣ୍ଡିତ ଲୋକଙ୍କ ପାଖରେ । ସଙ୍ଗ କରିବ ତ ସାଧୁ ସନ୍ଥଙ୍କ ମେଳରେ । ଏଗୁଡ଼ାକ କ'ଣ ଯିଏ କହିଥିଲେ ସେମାନେ କ'ଣ ଆମ ଭଳି ମୁରୁଖ ଥିଲେ ?

ଲୋଚନ ମାଷ୍ଟ୍ରେ ସାମାନ୍ୟ ଦମ୍ ଦେଇ, କଥାର ମୋଡ଼ ବଦଳାଇ କୁନ୍ତଳାକୁ ଉଦ୍ଦେଶ୍ୟ କରି କହିଲେ ତୁ ତ ଜାଣିଛୁ ଏକଲବ୍ୟ ଜାତିରେ ଅଛବ । ଗୁରୁ ବୋଲି ଗ୍ରହଣ କରି ନେଇ ଥିଲା ଦ୍ରୋଣାଚାର୍ଯ୍ୟଙ୍କୁ । ଦ୍ରୋଣ କିନ୍ତୁ ଏକଲବ୍ୟକୁ କ୍ଷତ୍ରିୟ ପିଲା ଅର୍ଜୁନ, ଦୁର୍ଯ୍ୟୋଧନଙ୍କ ସହ ଏକାଠି ତାକୁ ଶିକ୍ଷା ଦେଇ ନଥିଲେ । ବରଂ କାଳେ ଏକଲବ୍ୟ ବଡ଼ ହେଲେ ଅର୍ଜୁନଙ୍କୁ ଯୁଦ୍ଧରେ ଟପି ଯିବ ସେଥିପାଇଁ ସେ ଗୁରୁ ଦକ୍ଷିଣା ମାଗିଥିଲେ । ଏକଲବ୍ୟର ଯଦିଓ 'ଗୁରୁ ଦକ୍ଷିଣା' ଦେବାର ଦାବୁ ନଥିଲା କିନ୍ତୁ ସେ ଯେତେବେଳେ ଦ୍ରୋଣଙ୍କୁ ଗୁରୁ ରୂପେ ମନରେ ଗ୍ରହଣ କରି ସାରିଥାଏ ତେଣୁ ବାମ ହାତର ବୁଢ଼ା ଆଙ୍ଗୁଠି କାଟି ଗୁରୁଙ୍କ କହିବା ଅନୁସାରେ ଦକ୍ଷିଣା ସ୍ୱରୂପ ଭେଟି ଦେଇଥିଲା ।

ମୁଁ କିନ୍ତୁ ତୋତେ ସବୁ ପିଲାଙ୍କ ସହ ବସାଇ ପାଠ ପଢ଼ାଇଛୁ, ପାଠ ନଆସିଲେ ତୋର କାନ ମୋଡ଼ି ଦେଇଛୁ । ପଇଚା ମାରି ହେବ ବୋଲି କେବେ ଭାବ ନାହିଁ କିମ୍ବା ଘରେ ଆସି ଗାଧୋଇ ନାହିଁ ।

ମୁଁ ତ ଆଉ ସେ କାଳର ଗୁରୁ ନୁହେଁ ଯେ ତୋତେ ତୋର ବୁଢା ଆଙ୍ଗୁଠିଟା କାଟି ଦେଇ ଦେବା ପାଇଁ କହିବି ? ମୁଁ କିନ୍ତୁ ତୋତେ ଗୋଟିଏ କଥା ମାଗିବି, ସେତକ ତୋତେ ଦେବାକୁ ହେବ । ତୁ ଯଦି ହି ବାର ସତ୍ୟ କରିବୁ ତେବେ ମୁଁ କହିବି ।

ଏତିକି କଥା ଲୋଚନ ମାଷ୍ଟ୍ରଙ୍କ ତୁଣ୍ଡରୁ ଶୁଣି କୁନ୍ତଳା ଚମକି ପଡ଼ିଲା । ସେ ତ ଅଛୁବ । ସେଥିରେ ପୁଣି ଅସହା । କଳଙ୍କିନୀ । ଏଣେ ପାଖରେ ବି କାଣି କଉଡ଼ି ନାହିଁ । କି ଗୁରୁ ଦକ୍ଷିଣା ଅବା ସେ ଦେଇ ମାଷ୍ଟ୍ରଙ୍କୁ ତୋଷି ପାରିବ ? ସେ କୂଳ କିନାରା ପାଇ ପାରିଲା ନାହିଁ । ସେଥିପାଇଁ ହିଁ, କି ନାହିଁ କିଛି ତା ପାଟିରୁ ବାହାରି ପାରୁ ନଥାଏ ।

କୁନ୍ତଳାକୁ ନୀରବ ରହିବାର ଦେଖି ଲୋଚନ ମାଷ୍ଟ୍ରେ ପୁଣି କହିଲେ ମନରେ କ'ଣ ଏଣୁ ତେଣୁ ଭାବୁଛୁ କୁନ୍ତି ? ମୁଁ ଧନ ମାଗୁନାହିଁ । ତୁ ଅଛୁବ ଜାତିରେ ଜନ୍ମ ହୋଇଛୁ ସତ, କିନ୍ତୁ ତୋତେ ପାଠ ପଢାଇଲା ଦିନରୁ ତୁ ମୋର ଗୋଟିଏ ଝିଅ ଗୁରୁ ଏବଂ ପିତା ଭିତରେ ତଫାତ୍ ନଥାଏ । ତେଣୁ ତୁ ତୋର ବୁଢା ବାପର ଗୋଟିଏ ଅଳି ପୂରଣ କରି ପାରିବାକୁ ଏତେ ପଛଘୁଞ୍ଚା ଦେଉଛୁ ?

ଏତିକି କଥାରେ କୁନ୍ତଳାର ଶରୀର କମ୍ପି ଉଠିଲା । କଣ୍ଠ ଥରି ଉଠିଲା । ସେ କହିଲା ମୋର କ'ଣ ଅବା ଅଛି ଯେ ଆପଣଙ୍କୁ ଦେଇ ପାରିବି ? ସନ୍ତୁଷ୍ଟ କରି ପାରିବି ? ଆପଣ ଯାହା ମାଗିବେ ଏପରିକି ମୋର ଜୀବନ, ପ୍ରାଣଠାରୁ ଅଧିକ ପୁଅ ଭରତକୁ ମଧ୍ୟ ଦେବା ପାଇଁ ମୁଁ ପ୍ରସ୍ତୁତ । ମୁଁ ସତ୍ୟ କରୁଛି । ଥରେ ନୁହେଁ ତିନିଥର । ଆପଣ ଯାହା ପାଇଲେ ସନ୍ତୁଷ୍ଟ ହେବେ ତାହା କରିବା ପାଇଁ ମୁଁ ପ୍ରସ୍ତୁତ ।

ହୋ, ହୋ ହୋଇ ଏକ୍ଷେ ପାଟିରେ ହସି ଉଠିଲେ ଲୋଚନ ମାଷ୍ଟ୍ରେ ।

ସାରିଆ ଆଶ୍ଚର୍ଯ୍ୟରେ ଚାହିଁ ରହିଥାଏ ମାଷ୍ଟ୍ରଙ୍କ ମୁହଁକୁ । ସେ ଏ କଥାରେ ଅର୍ଥ କି ମୂଳ କିଛି ବୁଝି ପାରୁ ନଥାଏ

ହସୁ ହସୁ ଲୋଚନ ମାଷ୍ଟ୍ରେ କହିଲେ ପାଗଳୀଟା କେଉଁଠି ? ମୁଁ ତୋ ପୁଅଟାକୁ ନେଇ କ'ଣ କରିବ ? ଆଉ କ'ଣ ଜଞ୍ଜାଳି ହେବାକୁ ଭଲ ଲାଗୁଛି ? ତୋ ମାଉସୀର କ'ଣ ବଳ ବୟସ ଆଉ ମାଡ଼ି ଆସୁଛି ? ମୁଁ ତୋତେ ଏତିକି ମାଗୁଛି, ତୁ ଭରତକୁ ଏପରି ଭାବରେ ଗଢ଼ିବୁ ଯେପରି ସେ 'ସତ୍ୟ'କୁ ଭଲ ପାଇବ । ଦରକାର ପଡ଼ିଲେ 'ସତ୍ୟ' ପାଇଁ ସେ ଜୀବନ ଦେବାକୁ ମଧ୍ୟ ପଛାଇବ ନାହିଁ ।

ସାରିଆ ପିଣ୍ଡରେ ଯେପରି ପ୍ରାଣ ପଶିଲା । ସେ ଫେଁ କରି ହସି ଉଠି କହିଲା : ତମେ ସାନ୍ତେ ଏତେ ନବଜାଅ । ମୋ ମୁଣ୍ଡଟା କେପରି ଗୋଳମାଳ ହୋଇ ଯାଇଥିଲା । ତମେ ସାନ୍ତଙ୍କ କଥା ଶୁଣି ମୁଁ କେତେ ଆଉ କେତେ ଅଘଟଣ କଥା ସବୁ ଭାବି ବସିଥିଲି । ଏ କ'ଣ ଗୋଟାଏ କଥାରେ ନେଖା ?

ଲୋଚନ ମାଷ୍ଟ୍ରେ କହିଲେ ବଢ଼ୁରିଲେ କିଛି ନୁହେଁ ଆଉ ଭାବି ବସିଲେ ବଡ଼ କଷ୍ଟକର କଥା । ତୁ ତ ସନ୍ଧ୍ୟାବେଳେ ଆକାଶକୁ ଚାହିଁ ଦେଖିଥିବୁ । କହିଲୁ ଦେଖି, ହଜାର ତାରା ଥିଲେ କ'ଣ ହେବ ଯଦି ଜହ୍ନମାମୁଁ ନଥାଏ ତେବେ ପୃଥିବୀଟା କ'ଣ ଜ୍ୟୋଛନା ଆଲୋକରେ ହାଲୋଳ ହୋଇ ପାରେ ? ଗୋଟିଏ ଚନ୍ଦ୍ରମାକୁ ଦେଖି ଅନ୍ଧାର ଲୁଚି ପଳାଏ । ମୋର କହିବାର କଥା ହେଲା ସମଗ୍ର ଭାରତବର୍ଷରେ ଯଦି ଗୋଟିଏ ସତ୍ୟବାଦୀ ଭରତ ବଞ୍ଚିରହେ ତେବେ ଦେଖିବୁ ଏ ଦେଶର ଭାଗ୍ୟ ବଦଳିଯିବ । ଏ ଦେଶ କେବଳ କଥାରେ ସୁନାର ଭାରତ ହେବ ନାହିଁ । ଧନ, ମାନ ସମ୍ମାନ ସବୁଥିରେ ଏ ଦେଶର ଗର୍ବ ପୃଥିବୀରେ ଫିଟି ପଡ଼ିବ ।

କୁନ୍ତଳା ଲୋଚନ ମାଷ୍ଟ୍ରଙ୍କ ପାଦ ଛୁଇଁ କାଇଁ କାଇଁ ହୋଇ କେବଳ କୋହରି ହୋଇ କାନ୍ଦୁଥିଲା ।

ସାରିଆ ମାଷ୍ଟ୍ରଙ୍କ ପାଦତଳେ ଭରତର ମୁଣ୍ଡଟା ଲଗାଇ ଦେଇ କହିଲା ଆରେ, ମୁଣ୍ଡିଆଟାଏ ମାରି ଦେଇ ଥାଆ, ବଡ଼ ହେଲେ

ପଇସା ଖର୍ଚ୍ଚ କରି ପୁରୁଷୋତ୍ତମ ବଡ଼ ଦାଣ୍ଡରେ ରଥ ଉପରେ ଜଗନ୍ନାଥଙ୍କୁ ସିନା ଦେଖି ପାରିବୁ କିନ୍ତୁ ଏ ବୁଢା ଅଜାକୁ ତୋର ଆଉ ଦେଖି ପାରିବୁ ନାହିଁ ।

ଲୋଚନ ମାଷ୍ଟ୍ରେ ପାଚିଲା ଗାମୁଛାରେ ଆଖିରୁ ଲୁହ ପୋଛୁ ଥିଲେ । ତାଙ୍କର ମନେ ପଡ଼ୁଥିଲା ନିଜର ଝିଅ ଶୋଭା ଆଉ ବାସନ୍ତୀଙ୍କୁ ଶାଶୁ ଘରକୁ ପଠାଇବା ବେଳେ ସେ ଜୀବନରେ ଏମିତି ଭଳି କାନ୍ଦି ଥିଲେ ।

ସାରିଆ କାଖରୁ ଭରତକୁ ନିଜ ଗୁଣ୍ଡକୁ ଟେକି ନେଇ, ତ୍ରିଲୋଚନ ମିଶ୍ରେ ମାତୃ ମମତାରେ ତାକୁ ଜାବୁଡ଼ି ଧରିଲେ , ସତେ କି ସେଇଟି ତାଙ୍କର ରକ୍ତର ଗୋଟାଏ ଅଂଶ ।






ସମସ୍ତ ଦିନ ଦୁଇଟା ହେବ ।

ମାଧବ ପୁରର ଅପ୍ରତିଦ୍ୱନ୍ଦୀ ଜନ ପ୍ରତିନିଧି ଯୁବ ସରପଞ୍ଚ ଯୁବ ଆଡ଼ଭୋକେଟ ସେହିଦିନ ଯେତେବେଳେ କମଲପୁର ଡାକ-ବଙ୍ଗଳାରେ ସାଇକେଲରୁ ଓହ୍ଲାଇ ପଡ଼ିଲେ ସେତେବେଳେ ଆକାଶରୁ ସୂର୍ଯ୍ୟ ନିଆଁ ପିଣ୍ଡୁଳା ସତେ ପୃଥିବୀ ଉପରକୁ ଫିଙ୍ଗୁଥାନ୍ତି ।

ବୈଶାଖ ମାସର ଉଦୁଉଦିଆ ଦିପହର !

ଡାକବଙ୍ଗଳା ଭିତରକୁ ପଶି ଯାଇ ଭରତ ଦେଖିଲେ ମନ୍ତ୍ରୀ ଦୁଷ୍ମନ୍ତ ପଟ୍ଟନାୟକ କେତେବେଳୁ ପହଞ୍ଚି ଯାଇଛନ୍ତି । ସଙ୍ଗରେ ଅନେକ ଅମଲା ଅଫିସରଙ୍କୁ ଆଣିଛନ୍ତି । ତାଙ୍କ ଗୃହପାଖରେ ଚେୟାରମେନ ପ୍ରହ୍ଲାଦ ବାବୁ ଓ ଅନ୍ୟାନ୍ୟ ଅଞ୍ଚଳର ସରପଞ୍ଚମାନେ ହସ ଖୁସିରେ ମସଗୁଲ ଥାନ୍ତି ।

ଭରତକୁ ଦେଖିବା ପରେ ସମସ୍ତେ ନୀରବ ହୋଇଗଲେ । କାହା ତୁଣ୍ଡରେ ଭାଷା ନଥିଲା । ଭରତକୁ ବସିବାକୁ ନିର୍ଦ୍ଦେଶ ଦେଇ ଦୁଷ୍ମନ୍ତ ବାବୁ ହସି ହସି କହିଲେ ମୋର ଧାରଣା ଥିଲା ଆପଣ ବୋଧ ହୁଏ ମୋ ଚିଠି ପାଇ ନଥିବେ

ଠିକଣା ଭୁଲ୍ ନଥିଲେ ଆମ ମଫସଲ ଅଞ୍ଚଳରେ ଚିଠି ପ୍ରାୟ ଠିକ୍ ସମୟରେ ପହଞ୍ଚି ଥାଏ । ଅଳ୍ପ ହସି ଭରତ ଏତିକି କହି ତାହାର ଆଖି ଘର ସାରା ଆଉ ଥରେ ବୁଲାଇ ଆଣିଲା । ସ୍ଥାନୀୟ ଏସ୍. ଡ଼ି. ଓ., ବି. ଡ଼ି. ଓ. ଓ ଅନ୍ୟାନ୍ୟ ସରକାରୀ କର୍ମଚାରୀଙ୍କ ଆଖିରେ ଯେପରି ଏକ କୌତୁହଳର ଭାଷା ସେ ଦେଖିବାକୁ ପାଇଲା ।

ସାମାନ୍ୟ ଗମ୍ଭୀର ହୋଇ ଦୁଷ୍ମନ୍ତ ବାବୁ କହିଲେ ମୋର ଧାରଣା ଥିଲା ଆଜିକାଲି ଯେଉଁ ଯୁବକମାନେ ଦେଶ ସେବା କରିବାକୁ ଆଗେଇ ଆସିବେ ସେମାନେ ନିହାତି ସଚ୍ଚୋଟ ଏବଂ ସାଧୁ ହେବେ । କାରଣ ସେମାନେ ଉଚ୍ଚ ଶିକ୍ଷିତ । ନିଜକୁ ଦଳିତ, ପତିତ, ଅବହେଳିତ ଜାତିର ପ୍ରତିନିଧି ବୋଲି ପ୍ରତିପାଦିତ କରିବା ସମୟରେ ସେମାନଙ୍କ ଉନ୍ନତି କଳ୍ପେ ଯେଉଁ ଟଙ୍କା ସରକାର ରାଜକୋଷରୁ ଦିଆଯାଇଥାଏ ତାହା ଆତ୍ମସାତ କରୁଥିବାର ଦେଖିଲେ ମନରେ ଯେତିକି ଦୁଃଖ ହୁଏ ତହିଁ ସଙ୍ଗେ ସଙ୍ଗେ ସେମାନଙ୍କ ପ୍ରତି ଭିନ୍ନ ଭାବ ମନରେ ଆସେ ।

ଭରତ ଏହି ଭଳି ଏକ ଅହେତୁକ ଆକ୍ରମଣ ପାଇଁ ଆଦୌ ପ୍ରସ୍ତୁତ ନଥିଲା । ତେଣୁ ସାମାନ୍ୟ ଉତ୍ତେଜିତ ହୋଇ ପ୍ରଶ୍ନ କଲା ମାନ୍ୟବର ମନ୍ତ୍ରୀ କଥାଟାକୁ ଏପରି ବୁଲାଇ କରି ନକହି ସେହି ନୀଚ ମନୋବୃତ୍ତିର ସରପଞ୍ଚଙ୍କ ନାମ ଏହି ଗୃହରେ ପ୍ରକାଶ କରି ତାଙ୍କର ସତ୍ ସାହାସର ପରିଚୟ ଦିଅନ୍ତୁ ।

ଦୁଷ୍ମନ୍ତ ବାବୁ ସତେ ଯେପରି ଶ୍ରେଷ୍ଠ ମାରିବାକୁ ଫଣା ଟେକିଲେ । କହିଲେ ମୁଁ ଯଦି କହେ - ସେହି ସରପଞ୍ଚ ହେଉଛ ତୁମେ ଯିଏକି ଜନସାଧାରଣଙ୍କ ପାଣିକୁ ଆପଣା ସ୍ୱାର୍ଥ ପାଇଁ ଆତ୍ମସାତ୍ କରିଛ ?

ଭରତ ଉତ୍ତେଜିତ ନହୋଇ ନମ୍ର ହୋଇ କହିଲା ସ୍ୱର୍ଗକୁ ନିଶୁଣୀ ନାହିଁ, କି ବଡ଼ ଲୋକକୁ ଉତ୍ତର ନାହିଁ । ତାହାପରେ ମୋର ଦୃଢ଼ ବିଶ୍ୱାସ ଜଣେ ଜନ ପ୍ରତିନିଧି କଦାପି ମିଥ୍ୟା ଅଭିଯୋଗ ଆଣି

ନଥିବେ ଏହି ସଭାରେ ଉପସ୍ଥିତ ଥିବା ମାଜିଷ୍ଟ୍ରେଟଙ୍କ ଆଗରେ ଜଣେ ଆଇନ ବ୍ୟବସାୟୀ ଭାବରେ ମୁଁ ଶପଥ କରି କହୁଛି ଯେ ମୁଁ ଜନସାଧାରଣଙ୍କ ଉନ୍ନତି ପାଇଁ ଉଦ୍ଦିଷ୍ଟ ଟଙ୍କାକୁ ତୋଷରପାତ କରିଛି ଏବଂ ସେହି ଟଙ୍କାକୁ ଏଠାରେ ଉପସ୍ଥିତ ଥିବା ମାନ୍ୟବର ମନ୍ତ୍ରୀ ମହାଶୟଙ୍କୁ ଦେଇଛି । ତେଣୁ କେବଳ ସରପଞ୍ଚ ଭରତ ନାଏକ ନୁହଁନ୍ତି, ମାନ୍ୟବର ମନ୍ତ୍ରୀ ମଧ୍ୟ ଦୁର୍ନୀତି ଗ୍ରସ୍ତ ।

ସମସ୍ତ ସରକାରୀ ବେସରକାରୀ ଜନ ସମାବେଶ ସମ୍ମୁଖରେ ମନ୍ତ୍ରୀ ଦୁଷ୍ମନ୍ତ ପଟ୍ଟନାୟକ ଏକ ଅର୍ବାଚୀନ ଯୁବକ ଠାରୁ ପ୍ରଥମ କରି ଏହି ଭଳି ଦମ୍ଭୋକ୍ତି ଶୁଣି ସ୍ତମ୍ଭୀଭୂତ ହୋଇଗଲେ । ଉତ୍ତେଜିତ ହୋଇ କହିଲେ ମିଛ କହିବାର ଗୋଟିଏ ସୀମା ଅଛି । ଜାଣି ବର୍ତ୍ତମାନ ମୁଁ ତୁମର କାର୍ଯ୍ୟକୁ ମୋ ସହିତ ଆସିଥିବା ଭିଜିଲାନ୍ସ ବିଭାଗୀୟ ଇଞ୍ଜିନିୟରଙ୍କ ଦ୍ୱାରା ମାପ କରାଇ ସତ୍ୟ ଓ ମିଥ୍ୟା ପ୍ରତିପାଦନ କରାଇ ପାରିବ ? ତୁମ ନାମରେ ଆସିଥିବା ଅଭିଯୋଗ ଯଦି ସତ୍ୟ ବୋଲି ପ୍ରମାଣିତ ହୁଏ ଜାଣ ଏହାର ପରିଣତି କ'ଣ ହେବ ?

ମାନ୍ୟବର ମନ୍ତ୍ରୀଙ୍କର ବୁଦ୍ଧି ରଖିବା ଉଚିତ୍ ମାଧବପୁରର ସରପଞ୍ଚ ଆଇନକୁ ବ୍ୟବସାୟ କରିଛି । ପ୍ରତିଦିନ ଆଇନ ସହିତ ସେ ଯୁଦ୍ଧ କରେ ।

ଦୁଷ୍ମନ୍ତ ପଟ୍ଟନାୟକ ରାଗରେ ରକ୍ତଉଜ୍ଜଳ ହୋଇ ସଙ୍ଗରେ ଆସିଥିବା ଭିଜିଲାନ୍ସ ବିଭାଗୀୟ ଇଂଜିନିୟର ଓ କର୍ମଚାରୀଙ୍କୁ କାର୍ଯ୍ୟର ମାପ କରିବା ପାଇଁ ନିର୍ଦ୍ଦେଶ ଦେଲେ ।

ବି. ଡ଼ି. ଓ ବ୍ଲକ ଓଭରସିଅର ଏବଂ ସମ୍ପୃକ୍ତ କର୍ମଚାରୀମାନେ ମାଧବପୁର ଗ୍ରାମର କାର୍ଯ୍ୟ ତଦନ୍ତ କରିବା ପାଇଁ ଚାଲିଗଲେ ।

ଭରତ ଦୁଷ୍ମନ୍ତ ବାବୁଙ୍କ ଆଗରୁ ଘୃଣାରେ ଉଠି ଆସିଲା । ସେହି ପ୍ରକୋଷ୍ଠ ସଂଲଗ୍ନ ଅନ୍ୟ କୋଠରୀରେ ଅଫିସରମାନଙ୍କର ଫେରିବା ସମୟକୁ ଅପେକ୍ଷା କରିବାକୁ ଲାଗିଲା । ମନେ ମନେ ଭାବୁଥିଲା ସତ୍ୟ ନିଶ୍ଚୟ ଉଦ୍‌ଘାଟିତ ହେବ ।

ପ୍ରହ୍ଲାଦ ବାବୁ କହୁଥିଲେ  ଆଜ୍ଞା, ଏ ଅଞ୍ଚଳରେ ଆପଣଙ୍କ ଆଗରେ ଆଜ ପର୍ଯ୍ୟନ୍ତ କେହି କଥା କହିବାକୁ ସାହାସ କରି ପାରୁ ନଥିଲାବେଳେ ଏହି ଉଦ୍ଧତ ଯୁବକର ଆସ୍ପର୍ଦ୍ଧା ଦେଖିପାରିଲେ ତ ? ଯେଉଁ ବ୍ୟକ୍ତି ସମସ୍ତଙ୍କ ସମ୍ମୁଖରେ ଆପଣଙ୍କର ଚରିତ୍ର ଉପରେ ଆଞ୍ଚ ଆଣିବାକୁ ପଛୁଉ ନାହିଁ…ସେ ପରୋକ୍ଷରେ କ'ଣ କହି ପାରୁ ନଥିବ…

ଲୋକ ସେବକ ଦୁଷ୍ମନ୍ତ ପଟ୍ଟନାୟକ କହିଲେ  ଆପଣମାନେ ସମସ୍ତେ ସାକ୍ଷୀ, ମୁଁ ତାହା ନାମରେ ମାନହାନି ମକଦ୍ଦମା ନକରି ଛାଡ଼ୁ ନାହିଁ । କେବଳ ଅଫିସରମାନେ ଫେରି ଆସନ୍ତୁ । ତାହାର ପିଲାଳିଆ ଭାବ ଛୁଡ଼ିଯିବ ଯେ…

ସେପାଖ ପ୍ରକୋଷ୍ଠରେ ଭରତ ସବୁ ଶୁଣି ପାରୁଥିଲା, ଭରତର ମନେ ପଡ଼ିଲା : ମାଟି କାହିଁକି ଖାଉଛୁ କହି ମାତା ଯଶୋଦା ଦିନେ ଶିଶୁ ଶ୍ରୀକୃଷ୍ଣଙ୍କୁ ଛାଟି ଉଞ୍ଚାଇଥିଲେ । ଶ୍ରୀକୃଷ୍ଣ ଯଶୋଦାଙ୍କୁ ପାଟି ଆଁ କରି ବିଶ୍ୱରୂପ ଦର୍ଶନ କରାଇଥିଲେ । ତେଣୁ ଶିଶୁମାନେ ସଦାବେଳେ ନିଷ୍ପାପ । ମନେ ମନେ ହସିଲା : ଭାବିଲା—ରାଜନୀତିରେ ଯେଉଁମାନେ ଯେତିକି ପୋଖତ, ଦୁର୍ନୀତି ବିଷୟରେ ସେମାନଙ୍କର ସେତିକି ପାରଦର୍ଶିତା ।

କିଛି ସମୟ ପରେ ଝାଳନାଳ ହୋଇ ଅଫିସରମାନେ ପହଞ୍ଚିଲେ ।

ମନ୍ତ୍ରୀଙ୍କ ପ୍ରକୋଷ୍ଠରେ ପୁଣି ଦରବାର ଆରମ୍ଭ ହେଲା । ଅଭିଯୁକ୍ତ ଆସାମୀ ଭରତ ନାଏକ ନିଜ ଆସନ ଅଧିକାର କରି ତଦନ୍ତର ଫଳା-ଫଳକୁ ଅପେକ୍ଷା କରି ରହିଲା ।

ଅଫିସରମାନେ ପ୍ରକାଶ କଲେ ଯେ : ମାଧବପୁର ଗ୍ରାମପଞ୍ଚାୟତକୁ ଯେତିକି ଟଙ୍କା ରାସ୍ତା, ବନ୍ଧ ବାଡ଼ ସଂଷାନ୍ତରେ ଦିଆ ଯାଇଥିଲା, ତାହା ତୁଳନାରେ କାମ ଅଧିକ ହୋଇଛି । ତେଣୁ ତୋଷରପାତର ପ୍ରଶ୍ନ ଉଠୁ ନାହିଁ ।

ଚମକି ପଡ଼ିଲେ ଦୁଷ୍ମନ୍ତ ବାବୁ ।

ଫେର ଚାହିଁଲେ ପ୍ରହ୍ଲାଦ ବାବୁଙ୍କ ମୁହଁକୁ ।

ଚୁପିଚୁପି ହସୁଥିଲା ଭରତ ।

ଦୁଷ୍ମନ୍ତ ବାବୁ ଭରତ ମୁହଁକୁ ଚାହିଁବା କ୍ଷଣି ସଙ୍ଗେ ସଙ୍ଗେ ତାହାର ମୁହଁର ଭଙ୍ଗୀ ବଦଳି ଗଲା । ଏହିଭଳି ଏକ ମୁହଁ ହୁଏତ ଦୁଷ୍ମନ୍ତ ବାବୁ ଆଗରୁ ଦେଖି ନଥିଲେ । ତଥାପି ମୁହଁରେ ହସ ଉକୁଟାଇ କହିଲେ : ମୁଁ ଦେଖି ଖୁସି ହେଲି ଯାହା ହେଉ ତୁମେ ଗରିବ ହରିଜନଙ୍କ ପାଇଁ ପ୍ରାଣପାତ କାର୍ଯ୍ୟ କରିଛ । ତୁମ ନାମରେ ଏ ଅଞ୍ଚଳର କେତେକ ବାସିନ୍ଦା ଯେଉଁ ଅଭିଯୋଗ କରିଥିଲେ ତାହା ମିଥ୍ୟା ବୋଲି ପ୍ରମାଣିତ ହୋଇ ଯାଇଛି ।

ଦୁଷ୍ମନ୍ତ ବାବୁଙ୍କ ପାଟିରୁ କଥା ଛଡ଼ାଇ ନେଇ ଭରତ କହିଲା ଜଣେ ଆଇନଜ୍ଞ ଯାହା କହେ ତାହା କଦାପି ଭୁଲ୍ ନୁହେଁ । ଆପଣ ଆଣିଥିବା ଅଭିଯୋଗ ଆପଣ ନିଜେ ଭୁଲ୍ ବୋଲି ସ୍ୱୀକାର କଲେ । କିନ୍ତୁ ମୋର ସ୍ୱୀକାରୋକ୍ତିକୁ ମୁଁ ପ୍ରମାଣ କରିବ । ନଚେତ୍ ଏକ ସମ୍ମାନ ହାନି ମକଦ୍ଦମାର ସମ୍ମୁଖୀନ ହେବାକୁ ମୋତେ ପଡ଼ିପାରେ ?

ଫେର ଚାହିଁଲେ : ଦୁଷ୍ମନ୍ତ ପଟ୍ଟନାୟକ ।

ଭରତ ଦମ୍ଭର ସହିତ କହିଲା : ମୁଁ ଏବେ ମଧ୍ୟ କହୁଛି ମାଧବପୁର ଗ୍ରାମପଞ୍ଚାୟତର ଉନ୍ନୟନ ପାଇଁ ଦିଆଯାଇଥିବା ପାଣ୍ଠିର ସଦ୍‌ବ୍ୟବହାର ମୁଁ କରିନାହିଁ; ଏଥି ପାଇଁ ନୈତିକତା ଦୃଷ୍ଟିରୁ ମୁଁ ନିଜକୁ ଅପରାଧୀ ବୋଲି ସ୍ୱୀକାର କରୁଛି; ଏବଂ ତତ୍ ସହ ଅନୁରୋଧ କରିବି ଏହି ଅପବ୍ୟବହୃତ ଅର୍ଥକୁ ଆତ୍ମସାତ୍ କରିଥିବା ମନ୍ତ୍ରୀ ଦୁଷ୍ମନ୍ତ ପଟ୍ଟନାୟକ ତାଙ୍କର ଭୁଲ ସ୍ୱୀକାର କରିବେ ।

ଅପମାନ ଓ କ୍ରୋଧରେ ଦୁଷ୍ମନ୍ତ ପଟ୍ଟନାୟକଙ୍କର କର୍ଣ୍ଣମୂଳ ଲାଲ ପଡ଼ିଗଲା । ସେ ହଠାତ୍ କହି ଉଠିଲେ : ଆପଣ ଏପରି ବାତୁଳଙ୍କ ଘର କ'ଣ ଗପି ଚାଲିଛନ୍ତି ?

ନିଜକୁ ଯଥାସମ୍ଭବ ସଂଯତ କରି ଭରତ କହିଲା ଆଜି ପର୍ଯ୍ୟନ୍ତ ଆପଣ କହି ଆସୁଥିଲେ ଏବଂ ନୀରବରେ ଆମେମାନେ ଶୁଣି ଆସୁଥିଲୁ । ବର୍ତ୍ତମାନ କିନ୍ତୁ ମୋତେ କହିବାକୁ ଦିଅନ୍ତୁ । ଧୈର୍ଯ୍ୟ ଧରି ଆପଣମାନେ ଶୁଣନ୍ତୁ ।

: ଧନର ପ୍ରଭାବ ଥିବା ପର୍ଯ୍ୟନ୍ତ ଏ ଦେଶରେ ସୁସ୍ଥ ରାଜନୈତିକ ପରମ୍ପରା ସୃଷ୍ଟି ହୋଇ ପାରିବ ନାହିଁ, ଏହା ଏକ ନିଶ୍ଚିତ ସତ୍ୟ । ପ୍ରଜାମାନଙ୍କ ହିତ ପାଇଁ ଯେଉଁ କାର୍ଯ୍ୟ କରାଯାଏ ତହିଁରେ ଯଦି ଆପଣାର ସ୍ୱାର୍ଥକୁ ଦେଖିବାକୁ ହୁଏ ତେବେ ଏ ଦେଶର ନୀତି କଦାପି ବହୁ ଜନହିତାୟ ହୋଇ ପାରିବ ନାହିଁ । ସ୍ୱାଧୀନତା ପୂର୍ବରୁ ଏ ଦେଶକୁ ଧନୀକମାନେ ନିୟନ୍ତ୍ରିତ କରୁଥିଲେ । ସେମାନେ ଜମିଦାର ହୁଅନ୍ତୁ କିମ୍ବା ରାଜା ହୁଅନ୍ତୁ । ବ୍ରିଟିଶ ସରକାରଙ୍କର ଅନୁଗତ ଭାବରେ ସେମାନେ ମଧ୍ୟ 'ରାୟବାହାଦୂର" ଉପାଧି ପାଉଥିଲେ । ସେ କାଳ କଥାକୁ ବାଦ୍ ଦେଲେ ଏ କାଳରେ ମଧ୍ୟ କେବଳ ବୋତଲ ସିନା ବଦଳିଛି କିନ୍ତୁ ମଦ ଠିକ୍ ଅଛି । ଅର୍ଥର ପ୍ରାଚୁର୍ଯ୍ୟ ଯେଉଁମାନଙ୍କ ପାଖରେ ଅଛି ସେମାନେ ନିରୀହ ଭୋଟରମାନଙ୍କୁ କିଣି ନିର୍ବାଚନ ଜିଣି ପାରୁଛନ୍ତି । କ୍ଷମତାରେ ରହି ନିଜର ପୈତୃକ ସମ୍ପତ୍ତିକୁ ଦୁଇଗୁଣ, ଚାରିଗୁଣ କରି ପାରୁଛନ୍ତି। ଏକାଳରେ ମଧ୍ୟ ଅନୁଗତ ଲୋକମାନଙ୍କୁ ଉପାଧିରେ ଭୂଷିତ କରା ଯାଉଛି । କିନ୍ତୁ ଆଉ ଅଧିକ ଦିନ ଏହା ଚାଲି ପାରିବ ନାହିଁ । ଗାଁ ଗହଳରେ ଶିକ୍ଷାର ପ୍ରସାର ଦ୍ରୁତ ଗତିରେ ହେଲାଣି । ଜନସାଧାରଣ ସବୁ ବିଷୟରେ ଆସ୍ତେ ଆସ୍ତେ ବୁଝିବାକୁ ଚେଷ୍ଟା କଲେଣି । ଅନ୍ୟ କାଳରେ ଅର୍ଥାତ୍ ଆଗାମୀ ଯୁଗରେ ଯେଉଁମାନେ ନେତୃତ୍ୱ ନେବେ, ଜେଲ ଯିବା, ଖଦଡ଼ ପିନ୍ଧିବା କେବଳ ସେମାନଙ୍କର ରାଜନୀତି କରିବାର ମାନଦଣ୍ଡ ହୋଇ ପାରିବ ନାହିଁ ବର୍ତ୍ତମାନ ରାଜନୀତି କରିବାକୁ ହେଲେ ତୁମକୁ ସଚ୍ଚୋଟ ହେବା ସଙ୍ଗେ ସଙ୍ଗେ ନିଜକରେ ଯଥେଷ୍ଟ ବୁଦ୍ଧି ସହିତ ବିଶ୍ୱବିଦ୍ୟାଳୟର ଉଚ୍ଚ ଶିକ୍ଷା ଲାଭ କରିବାକୁ ପଡ଼ିବ ।

ଆମ ନିର୍ବାଚନ ମଣ୍ଡଳର ଜନ ପ୍ରତିନିଧି ଭାବରେ ଦୁଷ୍ମନ୍ତ ବାବୁ ସାଧାରଣ ଜନତାଙ୍କ ସହିତ ସମ୍ପର୍କ ରଖନ୍ତି କେତେବେଳେ ? ଏଇ

ପ୍ରଶ୍ନର ଉତ୍ତର ଦେବା ସମ୍ପର୍କରେ ମୋତେ କହିବାକୁ ହେବ ମୁଁ ଯେଉଁ ଗୋଷ୍ଠୀର ପ୍ରତିନିଧିତ୍ୱ କରୁଛି, ସେହି ହରିଜନ ଓ ଆଦିବାସୀମାନେ ଦୁଷ୍ମନ୍ତ ବାବୁଙ୍କ ମଟର ଗାଡ଼ିକୁ ନିର୍ବାଚନ ବେଳେ କେବଳ ଦେଖିବାକୁ ପାଉଥାନ୍ତି । ଅନ୍ୟ ସମୟରେ ସେମାନେ କେବଳ ତାଙ୍କର ଭାଷଣରେ ସେମାନଙ୍କର ଅବସ୍ଥାର ପରିବର୍ତ୍ତନ ପାଇଁ ଶସ୍ତା ପ୍ରତିଶ୍ରୁତିମାନ ଶୁଣିଥାନ୍ତି କିମ୍ବା ପଢ଼ିପାରିଥାନ୍ତି । ଉଦ୍‌ଘାଟନ, ଉନ୍ମୋଚନ, ଏବଂ ନିର୍ବାଚନ ଏହିଭଳି କେତେକ କାର୍ଯ୍ୟକ୍ରମ ବ୍ୟତୀତ ଏ ଅଞ୍ଚଳର ସାଧାରଣ ଜନତା ତାହାଙ୍କ ଠାରୁ ଦୂରରେ ରହେ । ତେଣୁ ଆଜି ଯେଉଁ ପ୍ରହସନ ଘଟିଗଲା ସେଥିପାଇଁ ମାନ୍ୟବର ମନ୍ତ୍ରୀ ଏବଂ ଅଞ୍ଚଳ ଜନପ୍ରତିନିଧିଙ୍କୁ କେବଳ କାନକୁହାବାଲାଙ୍କ ଚୁଗୁଲି ଉପରେ ନିର୍ଭର କରିବାକୁ ହୋଇଥିଲା । କିନ୍ତୁ ଏଣିକି ଏହା ବେଶୀ ଦିନ ଚାଲିବ ନାହିଁ । ଯିଏ ଜନସମ୍ପର୍କ ରଖି ପାରିବ ସେହି ହିଁ କେବଳ ଜନ ପ୍ରତିନିଧି ହୋଇ ପାରିବାର ଅଧିକାର ପାଇ ପାରିବ ।

କେଉଁ ପରିସ୍ଥିତିରେ ଏବଂ କି ଭଳି ଅସହାୟ ଭାବରେ ମୁଁ ଉନ୍ନୟନ ପାଣ୍ଠିରୁ ଟଙ୍କା ତୋଷରପାତ କରି ତାହାକୁ ମନ୍ତ୍ରୀ ଦୁଷ୍ମନ୍ତ ବାବୁଙ୍କୁ ଭେଟି ଦେଲି ତାହା କହୁଛି । ଆପଣମାନେ କେତେ ଦିନ ତଳେ ଏହି ଅଞ୍ଚଳରେ ଏକ ବିରାଟ ମହୋତ୍ସବ ଅନୁଷ୍ଠିତ ହେବାର ଦେଖିଥିବେ । ସେହି ମହୋତ୍ସବରେ ଆମ ଅଞ୍ଚଳର ଜନ ପ୍ରତିନିଧି ଲୋକ ସେବକ ଉପାଧି ପାଇ ଥିବାରୁ ତାହାଙ୍କୁ ଏହି ପଞ୍ଚାୟତ ସମିତି ପକ୍ଷରୁ ବିପୁଳ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଆଉ କିଏ ଜାଣି ପାରି ନଥିଲେ ମାନନୀୟ ପଞ୍ଚାୟତ ସମିତି ଚେୟାରମେନ୍ ଶ୍ରୀଯୁକ୍ତ ପ୍ରହ୍ଲାଦ ବାବୁଙ୍କୁ ଖର୍ଚ୍ଚର ପରିମାଣଟା ନିଶ୍ଚୟ ଜଣାଥିବ; ଯେହେତୁ ସେ ପ୍ରତ୍ୟେକ ପଞ୍ଚାୟତର ସରପଞ୍ଚଙ୍କଠାରୁ ଏକ ହଜାର କରି ଟଙ୍କା ଚାନ୍ଦା ଏହି ଉତ୍ସବ ପାଇଁ ଗ୍ରହଣ କରିଥିଲେ । ପ୍ରତିଭାର ସମ୍ମାନ କରା ହେବା ଉଚିତ୍, ଏବଂ ଯେଉଁ ଜାତି ପ୍ରତିଭାକୁ ଉପଯୁକ୍ତ ସମ୍ମାନ ଦର୍ଶନ କରିବାକୁ କୁଣ୍ଠାବୋଧ କରେ ମୋ ମତରେ ସେ ଜାତିର ଅଗ୍ରଗତି ଅସମ୍ଭବ । କିନ୍ତୁ ପ୍ରତିଭା ପୂଜା ନାମରେ ଖୋସାମତି ଅର୍ଥାତ୍

ବ୍ୟକ୍ତି ପୂଜାକୁ ମୁଁ ଘୃଣା କରେ । ସେଥିପାଇଁ ମୁଁ ପ୍ରହ୍ଲାଦ ବାବୁଙ୍କୁ ପ୍ରଶ୍ନ କରିଥିଲି ଆପଣଙ୍କୁ ଯେଉଁ ଶ୍ରଦ୍ଧା ମିଳିଆସିବ ତାହା କେଉଁ ପାଣ୍ଠିରୁ ଦେବି ?

ଖଳଙ୍କ ସଙ୍ଗରେ ସଙ୍ଗୀ ହେଲେ ବୁଦ୍ଧିର ଅଭାବ ହୁଏ ନାହିଁ । କାରଣ ଯେବେ ପ୍ରହ୍ଲାଦ ବାବୁ କହିଥିଲେ ରାଜନୀତି ତାଙ୍କର ଜୀବିକା, ଠିକ୍ ମୁଁ ଯେପରି ବଞ୍ଚିବା ପାଇଁ ଆଇନ ବ୍ୟବସାୟକୁ ଗ୍ରହଣ କରିଛି । ସରକାରୀ ପାଣ୍ଠିକୁ ହେରଫେର କରି ପୈତୃକ ସମ୍ପତ୍ତିକୁ ବୃଦ୍ଧି କରିବାର ତରିକା ପ୍ରହ୍ଲାଦ ବାବୁଙ୍କୁ ଜଣାଥିଲା । ମାର୍ଗ ସେ ଦେଖାଇ ଦେଲେ । ତାଙ୍କର ଖଳ ବୁଦ୍ଧିର ଶିକାର ମୁଁ ହେଲି । ଶ୍ରଦ୍ଧା ତାଙ୍କୁ ଦେଲି ।

ହଠାତ୍ ଭରତର କଣ୍ଠ ଥରି ଉଠିଲା । ଆଖି ତାର ଛଳଛଳ ହୋଇ ଉଠିଲା । ସେ କହିବାକୁ ଆରମ୍ଭ କଲା : ଜୀବନରେ ମୋର ମାଆ ବ୍ୟତୀତ ମୁଁ କାହାକୁ ଭୟ କରେ ନାହିଁ କିମ୍ବା ଭକ୍ତି କରେ ନାହିଁ । ଭକ୍ତିର ସିଂହାସନ ହେଉଛି ଭୟ । ଭୟ ନ ଥିଲେ ଭକ୍ତି କରି ହୁଏ ନାହିଁ । ରାଜନୀତିରେ ପ୍ରବେଶ କଲା ଦିନ ମୁଁ ମୋ ମାଆଙ୍କର ପାଦ ଛୁଇଁ ଶପଥ କରିଥିଲି ଯେ ସତ୍ୟ ଅପ୍ରିୟ ହେଲେ ମଧ୍ୟ ତାହାକୁ ପାଳନ କରିବି । ଦୁର୍ନୀତିଠାରୁ ଦୂରରେ ରହିବି । ସଙ୍ଗ ଦୋଷରେ ପାପ କରିବା ପରେ ମୋର ଅନୁତାପ ଯଥେଷ୍ଟ ବଢି ଯାଇଥିଲା । ମୁଁ ଶାନ୍ତିରେ ଦୁଇଦିନ ଶୋଇ ପାରି ନାହିଁ । ଏକ ହଜାର୍ କାମର ପୂର୍ଣ୍ଣତା ଆଣିବା ପାଇଁ ମୁଁ ମୋ ଗାଆଁର ଭାଇମାନଙ୍କର ସରଳ ବିଶ୍ୱାସର ଅସଦ ବ୍ୟବହାର କରିଛି । ସେମାନଙ୍କୁ କହିଲି ଭାଇମାନେ ସରକାର ଯେତିକି ଟଙ୍କା ଦେବା କଥା ଦେଲେ । ସେତିକି ଟଙ୍କାରେ ଯେତିକି କାମ ହେବାର ହେଲା । ଏଣିକି ଆଉ ଯାହା ଅବଶିଷ୍ଟ ରହିଗଲା ତାହାକୁ ଆମେମାନେ ପୂରଣ କରିବାକୁ ହେଲେ ଦୁଇ ଦିନ ପ୍ରତ୍ୟେକ ପରିବାରକୁ ଶ୍ରମ ଦାନ କରିବାକୁ ହେବ ।

ମୋ କଥାରେ ଲୋକଙ୍କର ବିଶ୍ୱାସ ଥିଲା । ସେମାନେ ମୋର ଛଳନାକୁ ଗ୍ରହଣ କଲେ । ମୁଁ ମିଛ କହିଲି କାମ ସାରିଲି । ଏତିକିରେ

ମୁଁ କହିବ ଏ ଦେଶରେ ଲୋକମାନେ ବ୍ରିଟିଶ ଶାସନ ସମୟରେ ବେଠି ଖଟୁଥିଲେ, ଅତ୍ୟାଚରିତ ହେଉଥିଲେ ଏବଂ ଏ କାଳରେ ତଥାକଥିତ ନେତୃବୃନ୍ଦ ସେମାନଙ୍କର ଟଙ୍କାକୁ ଅପହରଣ କରି ସେମାନଙ୍କୁ ଏହିପରି ଶ୍ରମ ଦାନ ନାଁରେ ବେଠି ଖଟାଉଛନ୍ତି । ତେଣୁ ସେ କାଳ ଏବଂ ଏକାଳ ଭିତରେ ତଫାତ୍ କେଉଁଠି ?

ଆମେ ସ୍ୱାଧୀନତା ପାଇପାରିଛୁ ବୋଲି ଗର୍ବ କରି କହି ପାରିବାର ଅହଂକାର ଆମର ଅଛି କି ?

ଅନ୍ୟ କାଳରେ ଲୋକଙ୍କର ଆଖି ଫିଟିଲେ ସେମାନେ କ'ଣ ଏ କାଳର ନେତୃବୃନ୍ଦଙ୍କୁ କ୍ଷମା ଦେଇ ପାରିବେ ?

ଲୋକମାନଙ୍କର ଆଦୌ ସେବା କରି ନଥିବା ମନ୍ତ୍ରୀ ଦୁଷ୍ମନ୍ତ ବାବୁ ଯେଉଁ ଲୋକ ସେବକ ଉପାଧି ପାଇଲେ ମୋର ତାଙ୍କୁ ଏତିକି ପଚାରିବାର କଥା ସେହିଦିନ ମହୋତ୍ସବରେ ଯେଉଁ ବାଣ ଫୁଟିଲା ତାହା କ'ଣ ଦୋକାନୀ ମାଗଣା ଦେଇଥିଲା ? ଯେଉଁ ମାଳୀ ଫୁଲ ଗୁନ୍ଥିଥିଲା ସେ କ'ଣ ମଜୁରୀ ନେଇ ନଥିଲା ? ଯେଉଁ ଖାସିଗୁଡ଼ିକ ହଣା ହେଲେ ଏ ଅଞ୍ଚଳର ଫକୀର ମିଆଁ ସେଗୁଡ଼ାକ କ'ଣ ଭକ୍ତିରେ ଦାନ କରିଥିଲା ?

ଗୁନ୍ଦୁଆ ବାନ୍ଧିବା ମୂଲିଆମାନେ ମୂଲ ନେଇ ଥିଲେ । ଦୋକାନୀ ଚାଉଳ ଏବଂ ଅନ୍ୟାନ୍ୟ ଭୋଜି ସରଞ୍ଜାମ ପାଇଁ ଦାମ୍ ନେଇଥିଲା । ବାଜା ବଜାଇ ଥିବା ହରିଜନ ଭାଇମାନେ ସେମାନଙ୍କର ମଜୁରୀ ନେଇଥିଲେ ।

ସେହି ଖର୍ଚ୍ଚ ପାଇଁ ଆମେ ସରପଞ୍ଚମାନେ ଚାନ୍ଦା ଦେଇଥିଲୁ ।

ଦୁଃଖ କଥା ଲାଗିଲା ସେ ମନ୍ତ୍ରୀ ଏକଥା ଆଦୌ ବୁଝିପାରିଲେ ନାହିଁ । ଦିନକ ପାଇଁ ପ୍ରଶ୍ନ ମଧ୍ୟ କଲେ ନାହିଁ ତାଙ୍କର ପୂଜାପାଇଁ ଏତେ ଟଙ୍କା ଯେଉଁ ଖର୍ଚ୍ଚ ହେଲା ତାହା ଆସିଲା କେଉଁଠାରୁ ?

ତେଣୁ ମୁଁ କହୁଛି ଯେଉଁ ଟଙ୍କା ତାହାଙ୍କର ସଂବର୍ଦ୍ଧନା ଉତ୍ସବରେ ଖର୍ଚ୍ଚ ହୋଇଛି ସେ ସବୁ ପଞ୍ଚାୟତ ସମିତିର ଟଙ୍କା । ନିରୀହ ଲୋକମାନଙ୍କୁ ସରଳ କଥାରେ ଭୁଲାଇ ଆମେ ସେ ଟଙ୍କା ଦୁଷ୍ମନ୍ତ ବାବୁଙ୍କୁ

ଦେଇଛନ୍ତି । ତେଣୁ ମୋର କହିବାର କଥା ମୁଁ ଯେଉଁ ଟଙ୍କା ଆତ୍ମସାତ କରିଥିଲି ତାହା ମାନ୍ୟବର ମନ୍ତ୍ରୀ ପ୍ରକାରାନ୍ତରେ ମୋ ଠାରୁ ଗ୍ରହଣ କରିଛନ୍ତି ।

ବର୍ତ୍ତମାନ ମୁଁ ଏତିକି କହିବି ମାନ୍ୟବର ମନ୍ତ୍ରୀ ଆପଣମାନଙ୍କୁ ମୋ ବିରୁଦ୍ଧରେ ସାକ୍ଷୀ ମାନି ଥିଲେ । ଏଣିକି ତାଙ୍କର ଅଭିଯୋଗ ଯେତେବେଳେ ପ୍ରମାଣିତ ହୋଇ ପାରିଲା ନାହିଁ ଏବଂ ସେ ମୋର ଚରିତ୍ର ସଂହାର କରି ଥିବାରୁ ମୁଁ ଯଦି ତାଙ୍କ ନାମରେ ଏକ ମକଦ୍ଦମା କରେ ଆପଣମାନେ ସାକ୍ଷ୍ୟ ଦେବାକୁ ବୋଧହୁଏ ପଶ୍ଚାତପଦ ହେବେ ନାହିଁ ।

ସେ କାଳ, ଏକାଳ ହୁଏତ ଫରକ୍ ନହୋଇ ପାରେ କିନ୍ତୁ ଅନ୍ୟକାଳ ସଂପୂର୍ଣ୍ଣ ପୃଥକ୍ ହେବ ।

ହରିଜନମାନେ ବର୍ତ୍ତମାନ ଜାଗ୍ରତ ହେଲେଣି । ସେମାନଙ୍କ ପିଲାମାନେ ବର୍ତ୍ତମାନ ସ୍ଲେଟ ଖଡ଼ି ଧରି ସ୍କୁଲକୁ ଆସିଲେଣି । ବହିରେ ପଢ଼ିଲେଣି :

ଜମି ନ ରଖ ପଡ଼ିଆ
ଲଗା ପଣସ ନଡ଼ିଆ ।

କେବଳ ଯେ ପଢ଼ିଲେଣି ନୁହେଁ, ବାପ ମାଆମାନେ ବାଡ଼ିରେ ନଡ଼ିଆ ଗଛ ଲଗାଇ ଏହା ପରେ ଦେଖିଲେଣି ଗଛ ବଞ୍ଚୁଛି । ବଢ଼ୁଛି । ଚଅଁର ପକାଉଛି । ପଇଡ଼, ନଡ଼ିଆ ହେଉଛି । କାହାର ମୂର୍ଚ୍ଛନା ଫାଟି ଯାଉନାହିଁ କମ୍ବା କାହାକୁ ଅନ୍ଧନର୍କରେ ପଡ଼ିଥିବାର ଦେଖିଆସି ଏ ପର୍ଯ୍ୟନ୍ତ କେହି ସନ୍ଦେଶ ଦେଇ ପାରି ନାହାନ୍ତି ।

ଏଣିକି ଯେଉଁ ଯୁଗ ଆସୁଛି ସେହି ଯୁଗ ହେବ କାମର ଯୁଗ । କଥାର ଯୁଗ ଭୁଲିଗଲା । ରାଜନୀତିକୁ ସଂପୂର୍ଣ୍ଣ ଦେଶ ସେବା ଦୃଷ୍ଟିରୁ ଗ୍ରହଣ କରିବାକୁ ହେବ ।

ଭରତ ଏତିକ କହି ଦମ୍ ନେଲା । ଭୀଷଣ ଉତ୍ତେଜିତ ସେ ହୋଇ ଉଠିଥିଲା । ରାଗରେ ଥର ଥର ସେ ଦୁଷ୍ମନ୍ତ ବାବୁଙ୍କୁ ନମସ୍କାର କରି ହଠାତ୍ ଡାକ ବଙ୍ଗଳାର ପ୍ରକୋଷ୍ଠ ଛାଡ଼ି ଚାଲିଗଲା ।

ଝିଅ ଭଳି ଭରତ ଚାଲିଗଲା ପରେ ତାର ଯିବା ପଥକୁ ଭକୁଆ ଭଳି ଦୁଷ୍ମନ୍ତ ବାବୁ ଓ ଚେୟାରମେନ୍ ପ୍ରହ୍ଲାଦବାବୁ ଚାହିଁ ରହିଥିଲେ ।





କମଳପୁର ଡାକବଙ୍ଗଳାରୁ ଏକ ପରାଜିତ ସୈନିକର ଆତ୍ମଗ୍ଳାନି ଧରି ଦୁଷ୍ମନ୍ତ ପଟ୍ଟନାୟକ ନିଜ କାରରେ ରାଜଧାନୀକୁ ଫେରୁଥିଲେ ।

ମନେ ମନେ ଦୁଷ୍ମନ୍ତ ବାବୁ ଭାବୁଥିଲେ ଜୀବନରେ ପ୍ରଥମ କରି ଏକ ଯୁବକକୁ ଦେଖି ପାରିଲେ ଯେ କି ନିର୍ଭୟରେ ତାଙ୍କୁ ସାମ୍ନା କରି ପାରିଲା । ଜାତିରେ ହରିଜନ ହୋଇପାରେ କିନ୍ତୁ ଆଚରଣରେ ସେ ଜଣେ ବ୍ରାହ୍ମଣ ଠାରୁ ଶ୍ରେଷ୍ଠ । ସେ କେବଳ ହସ୍ତାକ୍ଷର ଖାତାରେ ସଦାବେଳେ ସତ କହିବ ବରଂ ଲେଖି ନାହିଁ ତାହାକୁ ନିଜର ଜୀବନରେ ନିଧି ଆଚରଣ କରି ପାରିଛି ।

ରାଜନୀତିରେ ରହିବାକୁ ହେଲେ ବର୍ତ୍ତମାନ ତାଙ୍କୁ ଯୁବକ ମାନଙ୍କର ରୁଚି ଓ ଚାଲିଚଳଣି ସହିତ ଖାପ୍ ଖୁଆଇ ଚାଲିବାକୁ ହେବ । ସେମାନଙ୍କୁ ନିଜର ନକରି ପାରିଲେ ତାଙ୍କର ସ୍ଥିତି ଅସମ୍ଭବ ।

ମନେ ପଡ଼ିଲା ଅନେକ ଦିନ ତଳେ ସେ ଏକ ପୁସ୍ତକରେ ପଢିଥିଲେ : ଧ୍ୱଂସ ହେବା ନିମିତ୍ତ, ମେଘ ସୃଷ୍ଟି ହୁଏ କିନ୍ତୁ ସୂର୍ଯ୍ୟ ?

ଶହ ଶହ କୋଟି ଦିନ ଠାରୁ ସୂର୍ଯ୍ୟ କିନ୍ତୁ ତାହାର ଅସ୍ତିତ୍ୱ ବଜାୟ ରଖି ପାରିଛି । ସ୍ୱାଭାବିକ ନିୟମ ଅନୁସାରେ ତାହାର ଧ୍ୱଂସ ହେଲା ନାହିଁ କାହିଁକି ? ବିଶ୍ୱ ସୃଷ୍ଟିରୁ ଏ ଯାବତ୍ ସେ କିପରି ଏକ ରକମର ଆଲୋକ ଏବଂ ଉତ୍ତାପ ଦେଇ ଚାଲିଛି ? ତାହାର କାରଣ ସୂର୍ଯ୍ୟ ଭିତରେ ସୃଷ୍ଟି ଓ ସଂହାର ଏକାଦିକ୍ରମେ କାର୍ଯ୍ୟ କରି ଚାଲିଛି । ଏକ ଦିଗରେ ତିଆରି ହେଉଛି ହିଲିୟମ ଏବଂ ଅପର ଦିଗରେ ବାହାରି ପଡ଼ୁଛି ଇଲେକ୍‌ଟ୍ରନ୍ ଏବଂ ନିଉଟ୍ରନ । ସେହିପରି ମଣିଷ ଚରିତ୍ର ଭିତରେ ଯାହାକୁ ଗ୍ରହଣ କରିବାର କଥା ତାହାକୁ ଗ୍ରହଣ କରି ଏବଂ ଯାହାକୁ ବର୍ଜନ କରିବାର ବିଷୟ ତାହାକୁ ବର୍ଜନ କରି । ଏହି ଗ୍ରହଣ ଏବଂ ବର୍ଜନର ସମନ୍ୱୟ ନେଇ ଯେଉଁ ଜୀବନ ତାହାକୁ ତ ମହା ଜୀବନ କହନ୍ତି ।

ଦୁଷ୍ମନ୍ତ ବାବୁ ଭାବିଲେ ସେ ଯଦି ମନ୍ତ୍ରୀତ୍ୱର ଖୋଳପା ଭିତରୁ ବାହାରି କେବଳ ଦୁଷ୍ମନ୍ତ ପଟ୍ଟନାୟକ ହୁଅନ୍ତେ ଏବଂ ସେହି ସତ୍ୟବାଦୀ ବାଳକଟିର ହାତ ଧରି ନିଜ ଗୃହରେ ଆଉଜାଇ ଆଣି କହନ୍ତେ ପ୍ରକୃତରେ ତୁମମାନଙ୍କୁ ନେଇ ଆଗାମୀ ଭାରତ ବର୍ଷ ଗର୍ବ କରିବ; ତେବେ କ୍ଷତି କ'ଣ ହୁଅନ୍ତା ? କେତେ ଦିନ ଆଉ ତାଙ୍କର ଅବା ଆୟୁଷ ? ସୂର୍ଯ୍ୟଙ୍କ ଭଳି ସତ୍ୟ ଚିରଦିନ ଭାସ୍ୱର । ଛଳନା ଆଉ ମିଥ୍ୟା ଦ୍ୱାରା ସତ୍ୟକୁ କିଛିଦିନ ପାଇଁ ଢାଙ୍କି ଦିଆଯାଇପାରେ କିନ୍ତୁ ସବୁ ଦିନ ପାଇଁ ଆଦୌ ନୁହେଁ ।

ମାଧବପୁର ହରିଜନ ବସ୍ତିକୁ ଗାଡ଼ି ଫେରାଇବାକୁ ଡ୍ରାଇଭରକୁ ନିର୍ଦ୍ଦେଶ ଦେଲେ ଦୁଷ୍ମନ୍ତ ପଟ୍ଟନାୟକ ।

ଡ୍ରାଇଭର ଗାଡ଼ି ଫେରାଇଲା ।

କମଳପୁର ଆକାଶରେ ସେତେବେଳେ ଅନ୍ଧାର ଜମାଟ ବାନ୍ଧି ଗଲାଣି । କମଳପୁର ନିର୍ବାଚନ ମଣ୍ଡଳୀରେ ମାଧବପୁର ଦୂରତ୍ୱ ଦଶ କିଲୋମିଟର । ହଠାତ୍ ଅତୀତର ସ୍ମୃତି ଦୁଷ୍ମନ୍ତ ବାବୁଙ୍କ ମନରେ ଚେଇଁ ଉଠିଲା । ପ୍ରାକ୍‌ରାଜନୈତିକ ଜୀବନରେ ଦିନେ ସେ ମାଧବପୁରରେ ବ୍ରିଟିଶ

ସରକାର ଆଖିରେ ଧୂଳି ଦେବା ପାଇଁ ଆତ୍ମଗୋପନ କରିଥିଲେ । ସେ ଆଜକୁ ଅନେକ ଦିନ ତଳର କଥା । କିନ୍ତୁ ସେତେବେଳର ଆଉ ଆଜିର ଅବସ୍ଥା ଭିତରେ ଆକାଶ ପାତାଳ ଫରକ । ମାଧବପୁର ହରିଜନ ବସ୍ତି କମଳପୁର ଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ଥିଲା । ଘୋର ଜଙ୍ଗଲଟି ଭିତରେ ନିଜ ଜୀବନକୁ ବିପଦାପନ୍ନ କଲେ ଲୋକ କମଳପୁର ଆସୁଥିଲେ । ଯଦିଓ ସେ ଦଶରଥ ପଟ୍ଟନାୟକଙ୍କର ପୁଅ କିନ୍ତୁ ପାଠ ପଢିବା ଦିନରୁ ସେ କଟକରେ ରହୁଥିଲେ । ତେଣୁ ଏ ଅଞ୍ଚଳର ସାଧାରଣ ଲୋକେ ତାଙ୍କୁ ଚିହ୍ନିବାର ଅବକାଶ ଆଦୌ ନଥିଲା ।

ଜନ ପ୍ରତିନିଧି ଭାବରେ ଠିଆ ହୋଇ ଜୟଯୁକ୍ତ ହେବା ପାଇଁ ଦୁଷ୍ମନ୍ତ ବାବୁ ଯେ ମାଧବପୁର ଭୋଟରଙ୍କର ଭୋଟ ଆବଶ୍ୟକ ମନେ କରି ନାହାନ୍ତି ତାହା ନୁହେଁ । କିନ୍ତୁ ସେହି ଭୋଟ ଭିକ୍ଷା କରିବା ପାଇଁ ତାହାଙ୍କୁ କେବେ ମାଧବ ପୁର ଆସିବାକୁ ହୋଇନାହିଁ । ମାଧବପୁର ଭଳି ଅନ୍ୟ କେତେ ଖଣ୍ଡି ଗ୍ରାମର ଦାୟିତ୍ୱ ତାଙ୍କର କର୍ମୀମାନେ ନେଇଛନ୍ତି ।

ଯେଉଁ କର୍ମୀମାନଙ୍କ ପିଠିରେ ଚଢ଼ି ଦୁଷ୍ମନ୍ତ ବାବୁ ନେତା; ସେମାନଙ୍କର ପେଟକୁ ସେ ମଧ୍ୟ ଚିହ୍ନନ୍ତି । ପେଟ ନ ପୂରିଲେ ସେମାନେ କ'ଣ ଭୋକରେ ସ୍ତୁତି କରିବେ ? ସେମାନଙ୍କର ତ ପୁଣି ପିଲାକବିଲା ଅଛନ୍ତି ? ବାତ୍ୟା ମରୁଡ଼ି ଆଉ ବନ୍ୟା ଏହି ତିନି ଭଉଣୀଙ୍କ ଭିତରୁ ଜଣେ କେହି ନା କେହି ବର୍ଷକୁ ଥରେ ଓଡ଼ିଶାକୁ ଆସନ୍ତି । ସେମାନଙ୍କର ଆଗମନ ସମୟରେ କର୍ମୀମାନଙ୍କ ତୁଣ୍ଡରୁ ହସ ଫିଟିପଡ଼େ । ମନରେ ସାହାସର ସଞ୍ଚାର ହୁଏ । ଭଲ ଫସଲ ହୋଇଥାଉ, ବାତ୍ୟା ନ ହୋଇପାରେ, ନଈରେ ପାଣି ଦୁଇକୂଳ ଉଚ୍ଛୁଳି ନ ବହୁ ତଥାପି ତାଙ୍କ କର୍ମୀମାନେ ତାଙ୍କର ନିର୍ବାଚନ ମଣ୍ଡଳୀକୁ ବାତ୍ୟା, ବଢ଼ି, ମରୁଡ଼ି ଅଞ୍ଚଳ ରୂପେ ଘୋଷଣା କରିବାକୁ ଚିତ୍କାର କରନ୍ତି । ଦୁଷ୍ମନ୍ତ ବାବୁ ସେମାନଙ୍କର ଅନୁରୋଧ ରକ୍ଷା କରନ୍ତି । ତାହା ପରେ ସରକାରୀ ସାହାଯ୍ୟର ସୁଅ ଛୁଟେ । କର୍ମୀ ସନ୍ତୋଷ ଲଭନ୍ତି । ଜନତା ମଧ୍ୟ କିଛିଅଂଶ ପାଆନ୍ତି ।

ଅନେକ ଦିନ ପରେ ସେ ପୁଣି ମାଧବପୁର ହରିଜନ ବସ୍ତିକୁ ଯାଉଛନ୍ତି । ଦିନେ ସକାଳର ସ୍ପଷ୍ଟ ଆଲୋକରେ ପରାଧୀନ ଭାରତକୁ ଇଂରେଜ ହାତରୁ ମୁକ୍ତ କରିବା ପାଇଁ କର୍ମୀ ହୋଇ ଆସିଥିଲେ; ଅଥଚ ଆଜ ସ୍ୱାଧୀନ ଭାରତର ମନ୍ତ୍ରୀ ହେବା ପରେ ସଂଧ୍ୟାର ପାତଳ ପରିତ ତଳେ ଲୁଚି ଛପି ସେ ଏ ଗାଆଁକୁ ଯାଉଛନ୍ତି । ଯଦିଓ ସେ ହେଉଛନ୍ତି ଏ ଅଞ୍ଚଳର ମୂକ ଜନତାର ପ୍ରତିନିଧି, ପୁଣି ସର୍ବୋପରି ଶାସନ କ୍ଷେତ୍ରରେ ଜଣେ ସର୍ବମୟ କର୍ତ୍ତା ।

ମନ ଭିତରୁ ଦୁଷ୍ମନ୍ତ ବାବୁଙ୍କୁ କିଏ ଯେପରି ପ୍ରଶ୍ନ କଲା ଏ ଭୀରୁତା କାହିଁକି ? କାହା ପାଇଁ ମନରେ ଏତେ ଦୁର୍ବଳତା ?

ହସି ଉଠିଲେ ଦୁଷ୍ମନ୍ତ ବାବୁ । ମନେ ମନେ କହିଲେ ଏଇ ମଣିଷମାନଙ୍କୁ ମୁଁ ସରକାରୀ ସାହାଯ୍ୟ ଦେଇ ଭିକାରୀ କରି ଦେଇ ଥିଲେ ମଧ୍ୟ ଏମାନେ ନ ଥିଲେ ମୁଁ ଜନ ପ୍ରତିନିଧି ହୋଇ ପାରିବି ନାହିଁ । ଭୋଟ କାଗଜରେ ମୋ ପାର୍ଟିର ସିମ୍ବଲ ଉପରେ ସେମାନଙ୍କର ଗୋଟିଏ ଗୋଟିଏ ମୋହର ମୋ ପାଇଁ ଅମୂଲ୍ୟ । ଜଣ ଜଣ ମିଶିଲେ ସିନା ଗଣ । ସେଇ ଗଣଙ୍କୁ ନେଇ ମୁଁ ଜନ ପ୍ରତିନିଧି । ତେଣୁ ସେହି ଗଣ ଦେବତାମାନଙ୍କ ଭିତରୁ ଯେଉଁ ସିଂହ ଶିଶୁଟି ମୋର ବ୍ୟକ୍ତିତ୍ୱକୁ ଛିନ୍ ଭିନ୍ କରି ପଦାରେ ପକାଇ ଦେଲା, ମୁଁ ଯାଉଛି ସେହି ଶିଶୁଟିର ନରମ ବୁକୁର ଅହମିକାକୁ ସ୍ପର୍ଶ କରିବା ପାଇଁ । ସ୍ୱାଗତ ଜଣାଇବି ତାହାର ଜନନୀଜନମୀଙ୍କୁ । କିନ୍ତୁ ଆସିବ ପଙ୍କରୁ ମଧ୍ୟ ପଙ୍କଜର ସଂଭବ ହୁଏ । ମାଧବ ପୁର ହରିଜନ ବସ୍ତି ହୋଇ ପାରେ, ଏଠାକାର ଲୋକମାନେ ମୂର୍ଖ, ଅଶିକ୍ଷିତ, ମୂଲିଆ, ମଦୁଆ ହୋଇ ପାରନ୍ତି କିନ୍ତୁ ଦିନେ ମୋର ରାଜନୈତିକ ଜୀବନର ଅପୂର୍ବ ଆରମ୍ଭ ଏହି ଭୂମିରୁ ହୋଇଥିଲା । ସେହି ପବିତ୍ର ଭୂମିରେ ଆଜ ଯେଉଁ ଅଙ୍କୁରୋଦ୍‌ଗମ ହୋଇଛି ଦିନେ ସେ ନିଶ୍ଚୟ ଏକ ମହୀରୁହରେ ପରିଣତ ହେବ । ତାହାର ପ୍ରସାରିତ ଛାୟାତଳେ ଏ ଦେଶର ଅସଂଖ୍ୟ, ଦୀନ, ଦଳିତ, ମଥିତ, ଅଧା ଲଙ୍ଗଳା, ଅପାଠୁଆ ପ୍ରତି ମୁହୂର୍ତ୍ତରେ ବଞ୍ଚିବା ପାଇଁ ମୃତ୍ୟୁ ସହିତ ସଂଗ୍ରାମ କରୁଥିବା ଜନତା ନିର୍ଭୟ ଆଶ୍ରୟ ପାଇ ପାରିବେ ।

ସେ କାଳର କଥା ଦୁଷ୍ମନ୍ତ ବାବୁଙ୍କର ଗୋଟି ଗୋଟି ହୋଇ ମନେ ପଡ଼ିଲା । ସ୍କୁଲ ଫାଟକରେ ଠିଆ ହେଲେ ଲୋଚନ ମାଷ୍ଟ୍ରେ । ଗୋରା ତକ୍ ତକ୍ ଚଉଡ଼ାହାଡ଼ିଆ ମରଦ । କାନ୍ଧରେ ରୂପା ସୂତା ଭଳି ପଇତା ଜକ୍‌ଜକ୍ କରୁଛି । ମୁଣ୍ଡରେ ସୁନ୍ଦର ଭଳି ଚନ୍ଦନ ଟିପା । ଗମ୍ଭୀର, ପ୍ରଶାନ୍ତ, ନିରହଂକାରୀ ବ୍ୟକ୍ତିତ୍ୱ । କୁସଂସ୍କାର, ଅଶିକ୍ଷା ଆଉ ଦାରିଦ୍ର୍ୟକୁ ଦୂର କରିବା ପାଇଁ ମନରେ ତାଙ୍କର କି ପ୍ରକାର ବ୍ୟାକୁଳତା ଆଉ କାର୍ଯ୍ୟରେ କିଭଳି ନିଷ୍ଠା ! ନିଜ ଢଗ୍ନରରେ ସେ ଅଟଳ ହିମାଳୟ । ସେ ଦିନେ ତାଙ୍କୁ କହିଥିଲେ ବୁଝିଲ ବାବା, ମଣିଷକୁ ମଣିଷ ଭଳି ବିଗ୍ଭର କରୁ ନ ଥିଲା ବେଳେ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତରୁ "ସକଳ ଘଟେ ନାରାୟଣ" ମୁଖସ୍ଥ କରିବାରେ ପୁଣ୍ୟ ହୁଏ ନାହିଁ, ବରଂ ନିଜର ସମୟ ନଷ୍ଟ ହୁଏ । ତାହା ସହିତ ପାପ ମଧ୍ୟ ହୁଏ । ଗୁରୁବଚନ, ଶାସ୍ତ୍ରବାଣୀ, ଯିଏ ଶୁଣେ ଆଉ ପାଳନ ନ କରେ ତାହାଠାରୁ ପାପୀ ଦୁନିଆଁରେ କେହି ନଥାନ୍ତି । ଭଗବାନ ନର୍କ ବୋଲି କୌଣସି ଜିନିଷ ସୃଷ୍ଟି କରି ନାହାନ୍ତି କିମ୍ବା ଏଇ ଯେଉଁ ଆକାଶ ପୃଥିବୀ ଉପରେ ଛାତ ଭଳି ଅଛି ତାହା ଉପରେ ବୈକୁଣ୍ଠ ବୋଲି କୌଣସି ସହର ନାହିଁ । ମଣିଷ ନିଜର କଲା କର୍ମ ଏଇ ଦେହରେ ଏହିଠାରେ ଭୋଗ କରେ । ସ୍ୱର୍ଗ ଆଉ ନର୍କ ଏହି ପୃଥିବୀରେ ଅଛି ।

ଆଖି ଆଗରେ ନାଚି ଉଠିଲା ସାଇଆ ପାଲୁଣୀର ଝିଅ କୁନ୍ତଳାର ସେହି ଆଉଟା ସୁନା ରଙ୍ଗର ଦେହ । ପାନ ପତ୍ର ଭଳି ମୁହଁ । ଭସାଣିଆ ଟଣା ଟଣା ଆଖିର ସରଳ ନିରୀହ ଚାହାଣି । ଆଉ କାନରେ ବାଜି ଉଠୁଛି ସେହି ମଧୁମୟ ମୁହୂର୍ତ୍ତର କେଇ ପଦ ଅବୋଧ ପ୍ରଶ୍ନ ବାବୁ, ଆମେ ଅଛୁଆ ଲୋକ, ଆମର ଧନ ନାହିଁ, ସମ୍ମାନ ନାହିଁ । ସମ୍ବଳ କହିଲେ ଅଛି ଏଇ ଇଜ୍ଜତ ଟିକକ । ସେତକ ଯଦି ତୁମେ ଲୁଟି ନେବ ତେବେ ଆମର ହୋଇ ରହିଲା କ'ଣ ? କେଉଁ ପାପ ଫଳରୁ ଚ୍ଛୋଟ କୂଳରେ ଜାତ ହୋଇଛୁ ! ତୁମେ ଏତିକ ନେଇ ଗଲା ପରେ ଆମେ ଆହୁରି ଛୋଟ ହୋଇଯିବୁ.........

କୁନ୍ତଳାର ସରଳ ବିଶ୍ୱାସରେ ସେ ଗରଳ ଭରି ଦେଇଥିଲେ । କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ସେ ତାର ଜୀବନର ମଧୁକୁ ଲୁଣ୍ଠନ କରି ଭଅଁର ପରି ଏ ଗାଆଁରୁ ଉଡ଼ି ଚାଲିଗଲେ । ପୋଲିସ ଆଖିରେ ଧୂଳି ଦେବା ପାଇଁ ସେ ସିନା ଏ ଗାଆଁ ଛାଡ଼ି ପଳାତକ ସାଜିଲେ; କିନ୍ତୁ ଯେଉଁ ଦିନ ପୋଲିସ ଅଫିସରମାନେ ତାଙ୍କୁ ସାଲ୍ୟୁଟ କଲେ ସେତେବେଳେ କ'ଣ କୁନ୍ତଳା କଥା ତାଙ୍କର ମନେ ପଡ଼ୁଛି ? ସରଳା କିଶୋରୀ କୁନ୍ତଳା । କିଅବା ତାର ଶିକ୍ଷା ? କେତେ ଧୈର୍ଯ୍ୟ ଅବା ତାର ଥିବ ? ନିଶ୍ଚୟ ତାଙ୍କର ଲାଗି ସେ କଳଙ୍କର ଅପବାଦ ସହି ନପାରି କେଉଁ ବଡ଼ିଲି ନଈର କୋଳକୁ ଝାମ୍ପି ପଡ଼ିଥିବ କିମ୍ବା ଗୁଡ଼ି ସହିତ କନିଅର ମଞ୍ଜି ବାଟି ପିଇ ଦେଇଥିବ······

ଦୁଷ୍ମନ୍ତ ପଟ୍ଟନାୟକଙ୍କ ମନ ଭିତରୁ ଚେତନା ପୁରୁଷ ଚିତ୍କାର କରି ପ୍ରଶ୍ନ କରି ଉଠିଲା ମାନ୍ୟବର ମନ୍ତ୍ରୀ କହି ପାରିବେକି, ମଣିଷକୁ ଜୀବନରେ ମାରିଦେଲେ ଯଦି ତାହାକୁ ଆତତାୟୀ କୁହାଯାଏ ତେବେ ମଣିଷର ଆତ୍ମହତ୍ୟା ପାଇଁ ଯିଏ କାରଣ ହୁଏ ତାହାକୁ ତୁମ ଆଇନର ଭାଷାରେ କ'ଣ କୁହାଯିବ ?

ଦୁଷ୍ମନ୍ତ ପଟ୍ଟନାୟକ ଏହି ପ୍ରଶ୍ନରେ ଆତଙ୍କରେ ଶିହରି ଉଠିଲେ । ସତେ ଯେପରି ସେ ଏକ ଭୂତ ଦେଖିଲେ ।

ଦୁଷ୍ମନ୍ତ ବାବୁଙ୍କ ଚିନ୍ତାରେ ପୂର୍ଣ୍ଣଚ୍ଛେଦ ପକାଇ ହଠାତ୍ ମାଧବପୁର ଗାଆଁ ଦାଣ୍ଡ ମଝିରେ ଡ୍ରାଇଭର ଗାଡ଼ିର ବ୍ରେକ୍ କଷିଲା ।

ଗାଡ଼ିରୁ ଓହ୍ଲାଇ ପଡ଼ି ଦୁଷ୍ମନ୍ତ ବାବୁ ନିଜ ଆଖିଙ୍କୁ ବିଶ୍ୱାସ କରି ପାରିଲେ ନାହିଁ । କ'ଣ ଥିଲା ଦିନେ ଏଇ ମାଧବପୁର ଗାଆଁ ଆଉ ଆଜି କ'ଣ ହୋଇଛି ? ଗାଆଁ ଦାଣ୍ଡ ସଫା ସୁତୁରା, ପରିଷ୍କାର ପରିଛନ୍ନ । ଗାଆଁ ମୁଣ୍ଡରେ ମାତୃମଙ୍ଗଳ କେନ୍ଦ୍ରର ସବ୍ ସେଣ୍ଟର, ତାହା ପାଖକୁ ଲାଗି ପଶୁ ପାଳନ କେନ୍ଦ୍ର, ଟିକିଏ ଦୂରରେ ହାଇସ୍କୁଲ । ଜଣେ ଯୁବକ ସରପଞ୍ଚ କେତେ ସଚ୍ଚୋଟ ଓ ନିଷ୍ଠାପର ହୋଇପାରେ ତାହାର ଏସବୁ ଜ୍ୱଳନ୍ତ ନମୁନା । ମନେ ମନେ ଭାବିଲେ

ପଞ୍ଚବାର୍ଷିକ ଯୋଜନା ଅନୁଯାୟୀ ଯେତେ ଟଙ୍କା ଗାଆଁ ଗଣ୍ଡାର ଉନ୍ନତି ପାଇଁ ଦିଆ ଯାଉଛି ତାହା ଯଦି ଏହିପରି ସତ୍ ଭାବରେ ବ୍ୟୟିତ ହେଉଥାନ୍ତା ତେବେ ଏ ବର୍ଷ ଯେଉଁ ରାସ୍ତା ତିଆରି ହୁଏ ଆର ବର୍ଷକୁ ତାହା ଉପରେ ଆଣ୍ଠୁଏ ଗାତ ହୁଅନ୍ତା ନାହିଁ ।

ଗାଁଆର ଅନ୍ଧାର ଦୂର ହୋଇଛି । ରାସ୍ତାରେ ଜଳୁଛି ବିଜୁଳି ବତି । ଆଡ଼ଭୋକେଟ ଭରତ ବାବୁଙ୍କ ଘର ଚିହ୍ନିବାକୁ ବିଳମ୍ବ ହେଲାନାହିଁ । ଘର ଆଗରେ ଝୁଲୁଛି ନେମ୍‌ପ୍ଲେଟ । ରାଣୀଗଞ୍ଜ ଟାଇଲରେ ତିଆରି ସୁନ୍ଦର ଗୋଟିଏ ପରିଷ୍କାର ପରିଚ୍ଛନ ଖଞ୍ଜା ଘର ।

ଘର ନିକଟରେ ପହଞ୍ଚି ଦୁଷ୍ମନ୍ତ ବାବୁ ଦଣ୍ଡେ ଅଟକି ଠିଆ ହୋଇଗଲେ । ମନେ ପଡ଼ିଲା ଦିନେ ଏଇ ଯାଗାରେ ଟ୍ରେଟ ଦୁଇ ବଖରା ଚାଳ ଘରେ କୁନ୍ତଳା ତାହାର ମାଆ ସହିତ ରହୁଥିଲା । ଚାହିଁ ଦେଖିଲେ ଘର ପଛରେ ମୂକ ସାକ୍ଷୀ ଭଳି ବରକୋଳି ଗଛଟି ଠିଆ ହୋଇଛି । ଅବଶ୍ୟ ବୟସରେ ଟିକିଏ ବୁଢ଼ୀ ହୋଇ ଯାଇଛି । ସେହି କୋଳି ଗଛରେ ମାଘ ମାସରେ ପାଚିଲା ବର କୋଳି ନଇଁ ହୋଇଯାଏ । ସେ ଯେତେବେଳେ ଏହି ଘରକୁ ଆସନ୍ତି, ଘରେ ସାରିଆ ନଥିଲେ କୁନ୍ତଳା ଟୋପିଏ ପାଚିଲା ବରକୋଳି ଧରି ଅଗଣାରେ ବସି ପଡ଼େ । ବୁଢ଼ୀ ମାଆ ଠାରୁ କାହାଣୀ ଶୁଣିଲା ଭଳି ତା'ର ବାବୁଙ୍କଠାରୁ ଗପ ଶୁଣୁଥାଏ ଆଉ କୋଳିଖିଆ ଚାଲିଥାଏ ।

ଛାତି ଭିତରୁ ଗୋଟାଏ ଅବଶୋଷର ଦୀର୍ଘ ଶ୍ୱାସ ପଞ୍ଜରା ଥରାଇ ବାହାରି ଆସିଲା ଦୁଷ୍ମନ୍ତ ବାବୁଙ୍କର । ମନେ ମନେ ଭାବିଲେ ; ଝିଅଟା ମରିଗଲା ପରେ ବିଚାରୀ ରାଣ୍ଡ ମାଆ ଆଉ କ'ଣ କରିଥିବ ? ହୁଏତ ଏଇ ଗାଆଁ ବାଲାଙ୍କର ଅଦଉତି ସହି ନପାରି ଉଦର ଖଣ୍ଡ ବିକ୍ରି କରି ଦେଇ ଗାଆଁ ଛାଡ଼ି ଚାଲି ଯାଇଥିବ......

କୁନ୍ତଳା କଥା ମନେ ପଡ଼ିବାରୁ ଦୁଷ୍ମନ୍ତ ବାବୁଙ୍କର ମନଟା ଓଦା ହୋଇ ଉଠିଲା । ନିଜକୁ ଅପରାଧୀ ବୋଲି ମନେ କଲେ । ଭାବିଲେ

ବସୁଗଣ ନଗଣିା ପଲ୍ଲୀ କଣୋଗଣିଟି ତାଙ୍କର ପାଇଁ ସିନା ଏ ସଂସାରରୁ ଅସଗ୍ଗର ଟିକା ନେଇ ବଦାସ୍ୱ ନେଇ ଗଲା !

ପରକ୍ଷଣରେ ଯେପର କିଏ କହ୍ଣ ଉଠିଲା ସେତେବେଳେ ଅବା ତୁମର କର୍ତ୍ତବ୍ୟ କଣ ଥିଲା ? ତୁମେ ତ ଏକ ଛୁନ୍ନ ପଥ ଭଳି ଘୂରି ବୁଲୁଥିଲ ? କି ଅବା ନିର୍ଭର ଜବାବ ତୁମେ ଦେଇ ପାରଥାନ୍ତ ?

ଘର ଭିତରୁ ଜଣେ ଶିଶୁ ପଦାକୁ ବାହାର ଆସିଲା । ଦାଣ୍ଡ ଦୁଆରେ ଦୁଷ୍ମନ୍ତ ବାବୁଙ୍କୁ ଦେଖି ବୈଠକ ଘରେ ବସିବାକୁ କହି ପୁଣି ଭିତରକୁ ଗୁଲ ଗଲା । ବୋଧ ହୁଏ ଆଡ଼ଭୋକେଟ ଭରତ ବାବୁଙ୍କୁ ଖବର ଦେବ ............

ଦୁଷ୍ମନ୍ତ ବାବୁ ବୈଠକଖାନାରେ ପାଦ ଦେଉ ଦେଉ ତାଙ୍କ କାନରେ ଏକ ସମବେତ ପ୍ରାର୍ଥନାର ମଧୁର ମୂର୍ଚ୍ଛନା ପଡ଼ିଲା—

ବାଲ୍ୟ କାଳୁ ଧର୍ମ ଧନ ମୁଁ ସଞ୍ଚିବ
ଏ ଜୀବନ ଅନିଶ୍ଚିତ
କେ ଜାଣେ କାହାର ଆଜି ମୃତ୍ୟୁ କାଳ
ହୋଇଯିବ ଉପସ୍ଥିତ ॥

କ୍ଷୁଦ୍ର କୀଟ ଉଇ ଅଳ୍ପ ଅଳ୍ପ କରି
ରଚଇ ବଲ୍ମୀକ ଘର
ମୁହିଁ ସେହିପରି ସଞ୍ଚିବ ଯତନେ
ପୁଣ୍ୟ ଧନ ନିରନ୍ତର ॥

ବାକ୍ୟରେ, ମନରେ କିଅବା କର୍ମରେ
ନ କରିବ ପାପାଚାର
ତେଜିବ ଅସତ୍ୟ, ହିଂସା, କପଟତା
ଲୋଭ, କ୍ରୋଧ, ଅହଂକାର ॥

ସତ୍ୟେ ମନେ ରଖି, ସତ୍ୟଟି ବୁଝିବ
ଗାଇବ ସତ୍ୟର ଜୟ
ମଙ୍ଗଳ କାର୍ଯ୍ୟରେ ଲଗିଥିବ ସଦା
ତେଜଣ ସକଳ ଭୟ ॥

ସମ୍ମିଳିତ କଣ୍ଠରେ ଉଚ୍ଚାରିତ ହୋଇ ଉଠୁଥିବା ପ୍ରାର୍ଥନା ସଙ୍ଗୀତଟିର ଭଗ୍ନାଂଶ କାନରେ ପଡ଼ିବା କ୍ଷଣି ଦୁଷ୍ମନ୍ତ ବାବୁ ସ୍ତବ୍ଧ ହୋଇଗଲେ । ଅନେକ ଦିନ ତଳେ ଏଇ ଗାଆଁରେ ଥିଲାବେଳେ କୁନ୍ତଳାକୁ ସେ ଏହି ଗୀତଟି ଶିଖାଇ ଥିଲେ । ଭକ୍ତକବି ମଧୁସୂଦନ ରାଓଙ୍କ ଲିଖିତ ସ୍ତବଟିକୁ କୁନ୍ତଳା ଠିକ୍ ଅବିକଳ ଆଜି ଭଳି ବୋଲୁଥିଲା । ଯେଉଁ କଣ୍ଠରୁ ଠିକ୍ ବୀଣାର ଏକ ସୁମଧୁର ସ୍ୱର ଭଳି ଝଙ୍କାର ତୋଳି ଏ ପ୍ରାର୍ଥନା ସଙ୍ଗୀତ ଛୁଟି ଆସୁଛି ତାହା ଯେ କୁନ୍ତଳା ବ୍ୟତୀତ ଆଉ କାହାର ନୁହେଁ ତାହା ତାଙ୍କ ପକ୍ଷରେ ଆଉ ଅବୁଝା ରହିଲା ନାହିଁ ।

ଦୁଷ୍ମନ୍ତ ପଟ୍ଟନାୟକଙ୍କର ଓଦା ମନରୁ ଦୁଇ ଟୋପା ପାଣି ଆଖି ବାଟେ ଖସି ପଡ଼ିଲା । କୁନ୍ତଳା ଏବେ ମଧ୍ୟ ବଞ୍ଚିଛି, ସେ ଶିଖାଇ ଥିବା ପ୍ରାର୍ଥନା ସଙ୍ଗୀତକୁ ଏବେ ମଧ୍ୟ କଣ୍ଠସ୍ଥ କରି ଆବୃତ୍ତି କରି ଚାଲିଛି । ମନ ଭିତରୁ ତାଙ୍କର ଯେପରି କିଏ କହି ଉଠିଲା : ସେ କେବଳ ସଦାବେଳେ ସତ କହିବ ହସ୍ତାକ୍ଷର ଲେଖି ଖାତା ଭର୍ତ୍ତିକରୁଥିବା ତୁମ ମିଛ କହିଲ ପରି ନିଛକ ମିଛ କହି ନାହିଁ । ଯାହା କହୁଛି ତାହାକୁ ଜୀବନ ସାରା କାର୍ଯ୍ୟରେ ଫୁଟାଇ ପାରିଛି । ନମୁନା ତାହାର ଭରତ ନାଏକ ସରପଞ୍ଚ । ସେଥିପାଇଁ ତାହାରି ଘରେ ଚାଲିଛି ବାଲ୍ୟଲୀଳା । ପରର ଦୁଃଖ ଦେଖି ପ୍ରକୃତରେ ତାହାର ଆଖିରୁ ଲୋତକ ବହିଛି । ନଚେତ୍ ଏହି ମାଧବ ପୁର ଗାଆଁର କ'ଣ ଏହିଭଳି ପରିବର୍ତ୍ତନ ସମ୍ଭବ ହୋଇ ପାରିଥାନ୍ତା ?

ପରକ୍ଷଣରେ ତାଙ୍କ ମନ ଭିତରୁ କିଏ ଯେପରି ପ୍ରଶ୍ନ କଲା : ତୁମେ କୁନ୍ତଳାକୁ ଶିଖାଇଥିବା ସଙ୍ଗୀତରେ, 'ବାକ୍ୟରେ, ମନରେ କିଅବା କାର୍ଯ୍ୟରେ ନକରିବ ପାପାଚାର" ଏହି ପଦକର ମର୍ଯ୍ୟାଦା ରଖି ପାରିଛ କି ? ତୁମର ତୁଣ୍ଡର କଥା ଆଉ କାର୍ଯ୍ୟ କଣ ସମାନ ?

ଢାଅଁ ପୂଜା କରିବାକୁ ଯାଇ ଗୋଟିଏ ଘଣ୍ଟା ଯେଉଁ ଠାକୁରଙ୍କ ଆଗରେ ବସ ସେହିଠାରେ କ'ଣ ପ୍ରକୃତରେ ପାଞ୍ଚ ମିନଟ୍ ପାଇଁ ପ୍ରାର୍ଥନା କର ? ନା, ସେହି ଘରୁ ଫୋନରେ ଗୁପ୍ତ ଆଦେଶ ଏବଂ ନିର୍ଦ୍ଦେଶ ଦିଅ ?

ଗୋଟାଏ ଆହତ ମନ ନେଇ ଦୁଷ୍ମନ୍ତ ପଟ୍ଟନାୟକ ବୈଠକ ଘରର ଚଉକି ଉପରେ ଲଥ୍ କରି ବସି ପଡ଼ିଲେ । ଆଖି ତାଙ୍କର ବୈଠକ ଘର ସାରା ଖେଳି ବୁଲିଲା । ଘରଟିର ସାଜସଜ୍ଜାରୁ ଏକ ପୋଖତ ହାତର ପରିଚୟ ଜଣାପଡ଼େ । ହଠାତ୍ ତାଙ୍କର ଆଖି ଦୁଇଟା ଆଲମିରା ଉପରେ ଥୁଆ ହୋଇଥିବା ଗୋଟିଏ କଣ୍ଢେଇ ଉପରେ ଅଟକି ଗଲା ।

ନିରୀକ୍ଷଣ କରି ଦୁଷ୍ମନ୍ତ ବାବୁ ଜାଣି ପାରିଲେ ଏଇ କଣ୍ଢେଇଟିକୁ ସେ ଦିନେ ପାଖ ଗାଆଁକୁ ଯାତ୍ରା ଦେଖିବାକୁ ଯାଇ ଆଣି କୁନ୍ତଳାକୁ ଉପହାର ଦେଇଥିଲେ ।

କୁନ୍ତଳା ସେ ଦିନ ଏଇ କଣ୍ଢେଇଟି ଦେଖି ହସି ଉଠି କହିଲା : ବାବୁ, ତୁମକୁ ଆଉ କିଛି ମିଳିଲା ନାହିଁ, ଏତେ ବଡ଼ ଯାତ୍ରାରୁ ମୋ ପାଇଁ ତିନୋଟି ମାଙ୍କଡ଼ କିଣି ଆଣିଲ ?

ହସି ହସି ସେ କହିଲେ—ଏହି ତିନୋଟି ମାଙ୍କଡ଼ଙ୍କୁ ଏପରି ବସିଥିବାର ଦେଖି ତୁ କ'ଣ ଭାବୁଛୁ କହିଲୁ ?

କଥାକୁ ହସରେ ଉଡ଼ାଇ ଦେଇ କୁନ୍ତଳା କହିଲା ମାଙ୍କଡ଼ ତିନିଟା ତ ବସିଛନ୍ତି ଦେଖୁଛି । ଆଉ ଭାବିବି କ'ଣ ?

ସେ କୁନ୍ତଳାକୁ ବୁଝାଇବାକୁ ଯାଇ କହିଲେ ମୁଁ କଣ ପିଲା ହୋଇଛି ନା ତୁ ଗୋଟିଏ ଅଝଟିଆ ବାଳିକା ହୋଇଛୁ ? ସେଥିପାଇଁ ମୁଁ ପଇସା ଖର୍ଚ୍ଚ କରି ତୋ ପାଇଁ ବା ମୋ ପଢ଼ିବା ପାଇଁ ଏ ମାଟି କଣ୍ଢେଇଟି କିଣି ଆଣିଲି ?

ନିହାତି ସରଳା ବାଳିକା କୁନ୍ତଳା ସେ ଦିନ ନିର୍ବୋଧ ଦୃଷ୍ଟିରେ ତାଙ୍କ ମୁହଁକୁ ପ୍ରଶ୍ନିଳ ଦୃଷ୍ଟିରେ ଚାହିଁ ରହିଥିଲା ।

ଉତ୍ତର ଦେବାକୁ ଯାଇ ସେ ନିଜେ କହିଥିଲେ ଏହି ତିନୋଟି ମାଙ୍କଡ଼ ହେଉଛନ୍ତି ଗାନ୍ଧିଜୀଙ୍କର ପ୍ରିୟ କଣ୍ଢେଇ । ଜାତିର ପିତା ଗାନ୍ଧିଜୀ ଏଇ ତିନୋଟି ମାଙ୍କଡ଼ ଜରିଆରେ ତିନୋଟି ଉପଦେଶ ପ୍ରତ୍ୟେକଙ୍କୁ ଦେଇଛନ୍ତି । ଏମାନଙ୍କ ଭିତରୁ ଯିଏ କାନରେ ହାତ ଦେଇଛି ତାହାର ଦ୍ୱାରା ଗାନ୍ଧିଜୀ କହୁଛନ୍ତି : ଖରାପ କଥା ଶୁଣିବ ନାହିଁ ।

ଯିଏ ପାଟିରେ ହାତ ଦେଇଛି; ସେ କହୁଛି ଖରାପ କଥା କହିବ ନାହିଁ ।

ଆଉ ଯିଏ ଆଖିରେ ହାତ ଦେଇଛି, ସେ କହୁଛି ଖରାପ କଥା ଦେଖିବ ନାହିଁ ।

ସେଦିନ ଏତିକ ଶୁଣିବା ପରେ କୁନ୍ତଳାର ଆଖି ଡ଼ୋଳା ଯୋଡ଼ାକ ବଡ଼ ବଡ଼ ହୋଇ ଯାଇଥିଲା । ସେ କହିଲା ବାବୁ ! ସତେ ଗାନ୍ଧିଜୀ ତୁମ ଠାରୁ ଆମଠାରୁ ଯଥେଷ୍ଟ ବଡ଼ ।

ଡାରୁଇନଙ୍କ ବିବର୍ତ୍ତନବାଦ ତତ୍ତ୍ୱ ଅନୁସାରେ ମାଙ୍କଡ଼ ଯଦି ମନୁଷ୍ୟର ପୂର୍ବ ବଂଶଧର ହୋଇପାରିଥାଏ ତେବେ ସେ କ'ଣ ? ସେ କ'ଣ ନିଜକୁ ନର, ବାନର, କିମ୍ବା ରୂପରେ ଆକାରରେ ମନୁଷ୍ୟ ହୋଇଥିଲେ ମଧ୍ୟ କାର୍ଯ୍ୟ କଳାପରେ ବାନର ଠାରୁ ବି ହୀନ ବୋଲି ମନେ କରି ପାରିବେ ?

ତାଙ୍କ କାନ କ'ଣ ସଦାବେଳେ ଭଲ କଥା ଶୁଣୁଛି ?

ତାଙ୍କ ତୁଣ୍ଡ କ'ଣ ସଦାବେଳେ ଭଲ କଥା କହୁଛି ?

ସେ କ'ଣ ସଦାବେଳେ ଭଲ କଥା ଦେଖୁଛନ୍ତି ।

ଦୁଷ୍ମନ୍ତ ପଟ୍ଟନାୟକଙ୍କର ଆଖିରୁ ଲୁହର ଝରଣା ବାଧା ବନ୍ଧନ ନ ମାନି ଛୁଟି ଚାଲିଥାଏ । ସତେ ଯେପରି ଆଜି ତାଙ୍କ ଆଖିରୁ ଝରି ଚାଲିଥିବା ଲୁହକୁ ପୋଛିବାକୁ ମିଠିର ମିଠିର କନାର ରୁମାଲ ମଧ୍ୟ ନଅଣ୍ଟ ହେବ ।

ମନ୍ତ୍ରୀ ଦୁଷ୍ମନ୍ତ ପଟ୍ଟନାୟକ ନିଜର ଆତ୍ମ ବିଶ୍ଳେଷଣ କରୁ କରୁ ଆକାଶ ପାତାଳ କେତେ କ'ଣ ଭାବି ଚାଲିଥିଲେ । କେତେବେଳେ ଯେ ପ୍ରାର୍ଥନା ସଙ୍ଗୀତ ବନ୍ଦ ହୋଇ ଯାଇଛି ଏବଂ ପିଲାମାନେ ଯିଏ ଯାହା ଘରକୁ ଚାଲି ଯାଇଛନ୍ତି ସେଥିପ୍ରତି ତାଙ୍କର ମଧ୍ୟ ଖିଆଲ ନଥିଲା ।

ହଠାତ୍ କାହାର କର ସ୍ପର୍ଶରେ ସେ ଯେପରି ଚମକି ଉଠିଲେ । ସଂବିତ ଫେରି ପାଇ ସେ ଦେଖିଲେ କୁନ୍ତଳା ତାଙ୍କର ପାଦ ତଳେ ପ୍ରଣିପାତ କରି ପାଦ ଧୂଳି ନେଇ ତାର ମସ୍ତକରେ ମାରୁଛି ।

ଲୁହ ଛଳ ଛଳ ଆଖିରେ ଦୁଷ୍ମନ୍ତପଟ୍ଟନାୟକ ଦେଖିଲେ କୁନ୍ତଳାର ଆଖିରେ ଲୁହ ଝଲ ଝଲ ହେଉଛି । ଓଠ ଦୁଇଟା ଥରୁଛି । କୁନ୍ତଳା କ'ଣ କହିବ କହିବ ହେଉଛି କିନ୍ତୁ କହି ପାରୁନି । ତାର ଶରୀରଟା ସମଗ୍ର ଭାବରେ କମ୍ପୁଛି············

ଦୁଷ୍ମନ୍ତ ପଟ୍ଟନାୟକ କୁନ୍ତଳାକୁ ଧରିବାକୁ ଚେଷ୍ଟା କଲେ । ହାତ ବଢ଼ାଇଲେ ।

ଅପସରି ଗଲା କୁନ୍ତଳା । କାନ୍ଦୁ କାନ୍ଦୁ କେବଳ ଏତିକି କହିଲା : ଆଉ ବାବୁ, ଆଉ ମତେ ଛୁଅଁ ନାହିଁ । ଏ ଜୀବନରେ ଯେତିକି ସ୍ପର୍ଶ ପାଇଛି ସେତିକରେ ପ୍ରତି ମୁହୂର୍ତ୍ତରେ ଜଳିପୋଡ଼ି ମରୁଛି । ଆଉ କାହିଁକି ? ତମେ ତ ବାବୁ ମନ୍ତ୍ରୀ ହୋଇଛ । ମୂଲକ ଯାକର ହାରଗୁହାରି ଶୁଣୁଛ । ମୁଁ ହୀନ ଅଛିଆ ଜାତିର ସ୍ତ୍ରୀ ଟାଏ । ଜୀବନରେ କେବେ ତୁମକୁ କିଛି ମାଗି ନ ଥିଲି । କିନ୍ତୁ ଆଜି ମୋର ଗୋଟିଏ ଅଳି ପୂର୍ଣ୍ଣ କରିବ । ଟଙ୍କା ସୁନା ମାଗୁ ନାହିଁ । କେବଳ ଦୁଇଟି ଅକ୍ଷର ମାଗୁଛି । ତୁମେ ମୋ ପୁଅକୁ ନାୟକରୁ ପଟ୍ଟନାୟକ କରିଦିଅ । ସେ ଜାଣୁ ତା ମାଆ ଅସତୀ ନୁହେଁ, କଳଙ୍କିନୀ ନୁହେଁ । ସେ ଅଣବାବୁଆ ନୁହେଁ ।

ଏତିକି ଶୁଣି ଚମକିଲା ପରି ଦୁଷ୍ମନ୍ତ ବାବୁ ଦୁଇ ପାଦ ପଛକୁ ଫେରିଗଲେ ।



ଆଖିରୁ ତାଙ୍କର ଲୁହର ଝରଣା ସିମିତ ବହି ଚାଲିଥାଏ । ମନ ଭିତରୁ ଯେପରି କିଏ ପ୍ରଶ୍ନ କଲା କିଛି କ୍ଷଣ ପୂର୍ବେ କୁନ୍ତଳା ବଡ଼ସ୍ୱରେ ସଫେଇ ଦେଇ କହୁଥିଲ ତୁମେ ସେତେବେଳେ କ'ଣ ଅବା ଥିଲ ? କ'ଣ ଅବା କରିପାରିଥାନ୍ତ ?

କିନ୍ତୁ ଏବେ ତୁମେ କ'ଣ ନୁହଁ ? କ'ଣ ଅବା ତୁମର ଅଭାବ ଅଛି ? ପ୍ରାର୍ଥନା ପୂରଣ କରି ପାରିବ ସେହି ନଷ୍ଟ.ପ ତରୁଣୀଟିର ?

ପାଖ ଗାଆଁରେ ଗୋଟିଏ ପାରିବାରିକ ଅଶାନ୍ତିକୁ ଶାନ୍ତ କରି ଭରତ ନିଜ ଘରକୁ ଆସୁ ଆସୁ ତା ମାଆର କରୁଣ କଣ୍ଠର ଭଗ୍ନାଂଶ କଥା କେତେ ପଦ ତାର କାନରେ ପଡ଼ିଲା ତୁମେ ବାବୁ ମୋ ପୁଅ ଭରତକୁ ନାୟକରୁ ପଟ୍ଟନାୟକ କରି ଦିଅ ।

ଭରତ ଠିଆ ହୋଇ ରହିଲା । ତାକୁ ଜଣା ପଡୁଥିଲା ସତେ ଯେପରି ତା ପାଦ ତଳର ମାଟି ତଳକୁ ତଳକୁ ଦବି ଯାଉଛି ।



ସେଦିନ ଭରତ ଖୁବ୍ ହସୁଥିଲା,

ଏପରି ହସ କୁନ୍ତଳା ଆଗରୁ ପୁଅ ମୁହଁରେ କେବେ ଦେଖି ନଥିଲା । ଆଖି ଦୁଇଟା ତାର ବିସ୍ମୟରେ ଏଡ଼େ ଏଡ଼େ ହୋଇ ଯାଇଥିଲା । ମନରେ ତାର କେତେ ଅଘଟଣି ଚିନ୍ତା ଦେଖା ଦେଉଥିଲା ।

ମନେ ମନେ କୁନ୍ତଳା ଭଗବାନଙ୍କୁ ପ୍ରଣତି ଜଣାଇ ନିବେଦନ କରୁଥାଏ ହେ ମହାବାହୁ, ମୋତେ ତ ସବୁଥିରୁ ବଞ୍ଚିତ କରିଛ, ଆଜି ଏଇ କିଞ୍ଚିତ ସୁଖରୁ ବଞ୍ଚିତ କର ନାହିଁ ।

ହସି ହସି ଭରତ ପ୍ରଶ୍ନ କଲା ପୁଅକୁ ବାପ ବୋଲି ମାଆମାନେ କାହିଁକି କହନ୍ତି କହି ପାରିବୁ ?

ମନର ଭାବନାକୁ ଏଡ଼ାଇ ଦେବା ପାଇଁ କୁନ୍ତଳା କହିଲା ସ୍ନେହରେ ।

ଭରତ କହିଲା ଆଉ କହୁ ନାହିଁ ?

ଆଉ ତ ଅଧିକା ମୁଁ କହୁ ଜାଣେ ନାହିଁ ।

ହସି ହସି ଭରତ କହିଲା : ମାଆ ବୁଢ଼ୀ ହେଲା ପରେ ପୁଅ ତାର ବାପ ହୁଏ । ବାଳ ବୃଦ୍ଧ ସମାନ ହୁଅନ୍ତି । ସେମାନଙ୍କ ମନରେ ସରଳତା ବ୍ୟତୀତ ଆଉ କିଛି ନଥାଏ । ଶିଶୁକୁ ଲାଳନପାଳନର ଦାୟିତ୍ୱ ତାର ପିତାକୁ ନେବାକୁ ହୋଇଥାଏ । ବାପା ମାଆ ବୁଢ଼ା ବୁଢ଼ୀ ହେବା ପରେ ପାଇଲାର ପୁଅ ସେମାନଙ୍କର ସେବା ଶୁଶ୍ରୂଷାକୁ ଜୀବନର ପରମ କର୍ତ୍ତବ୍ୟ ବୋଲି ମନେ କରେ । ସେତେବେଳେ ମାଆ ମନେକରେ ନାତି ନାତୁଣୀଙ୍କ ସହିତ ତା ପୁଅର ସେ ଆଉ ଗୋଟିଏ ବୁଢ଼ୀ ଝିଅ ।

ହସି ଦେଲା କୁନ୍ତଳା ।

ସେ ଜାଣି ପାରିଲା ଏ ଗୌରଚନ୍ଦ୍ରିକା ମୂଳରେ ନିଶ୍ଚୟ କିଛି ଗୁମର ଅଛି ।

ଭରତ କହିଲା : ଆଜି ଏଇ କେତେ ସମୟ ପାଇଁ ତୁ ମୋର ବୁଢ଼ୀ ଝିଅ ଆଉ ମୁଁ ତୋର ସ୍ନେହର ବାପ ହେଉଛି । ତୁ ସବୁବେଳେ ମୋତେ ଗପ କହି ଆସିଛୁ । ଏଣିକି ମୁଁ ଗପ କହିବି, ତୁ ଶୁଣିବୁ ।

କୁନ୍ତଳା ହସୁ ହସୁ କହିଲା ଏ'ତ ମୋର ପରମ ସୌଭାଗ୍ୟ ।

ଭରତ କହିଲା ' ମହାଭାରତ ପଢ଼ିବାକୁ ତୁ ମତେ କହିଥିଲୁ । ଯେତେବେଳେ ମହାଭାରତ ଯୁଦ୍ଧ ହେବାର ପ୍ରାୟ ନିଶ୍ଚିତ ହୋଇଗଲା ସେତେବେଳେ କୁନ୍ତୀ ଜାଣି ପାରିଲେ ଯେ କର୍ଣ୍ଣ ଯଦି ଯୁଦ୍ଧରେ ଯୋଗ ଦଅନ୍ତି ତେବେ ପାଣ୍ଡବମାନେ ଯେ ପରାଜିତ ହେବେ ଏଥିରେ ସନ୍ଦେହ ନାହିଁ । କର୍ଣ୍ଣକୁ ଯୁଦ୍ଧରେ ଯୋଗ ଦେବାରୁ ନିବୃତ୍ତ କରିବା ପାଇଁ କୁନ୍ତୀ ଦିନେ ତାଙ୍କ ନିକଟରେ ପହଞ୍ଚିଲେ । ନିଜକୁ କର୍ଣ୍ଣଙ୍କର ମାତା ବୋଲି ପରିଚୟ ଦେଇ ଯୁଦ୍ଧରୁ ନିବୃତ୍ତ ହେବା ପାଇଁ ଅନୁରୋଧ କରି କହିଲେ ଆଜି ସମସ୍ତ ଜଗତ କର୍ଣ୍ଣ-ଅର୍ଜ୍ଜୁନଙ୍କର ଭ୍ରାତୃତ୍ୱ ସଂପର୍କ ଦେଖି ସ୍ତମ୍ଭୀଭୂତ ହେଉ । ଯୁଧିଷ୍ଠିର ମୋର ଜ୍ୟେଷ୍ଠ ପୁତ୍ର ନ ହୋଇ କର୍ଣ୍ଣ ସେ ଗୌରବର

ଅସ୍ୱୀକାର ହେଉ । କିନ୍ତୁ କୁନ୍ତୀଙ୍କ ଅନୁରୋଧ ଶୁଣି କର୍ଣ୍ଣ କହିଲେ କ'ଣ ଜାଣୁ ?

କୁନ୍ତଳା କହିଲା ତୁ କହିଲେ ସିନା ମୁଁ ଜାଣିବି । ମୁଁ ମହାଭାରତ ପଢ଼ିଛି । ଏତେ ବଡ଼ ବିଶାଳ ଗ୍ରନ୍ଥ କ'ଣ ମନରେ ରଖି ହେବ ?

କର୍ଣ୍ଣ କୁନ୍ତୀଙ୍କୁ କହିଲେ ମାଆ, ଆପଣଙ୍କର ଅନୁରୋଧ ରକ୍ଷା କରି ନ ପାରି ମୁଁ ବଡ଼ ଦୁଃଖିତ । ଏପରି କଲେ ମୋର ଧର୍ମ ନଷ୍ଟ ହେବ । ମୁଁ ମୋର ପ୍ରଜାମାନଙ୍କ ଆଗରେ ନିନ୍ଦିତ ହେବି । ମୁଁ କ୍ଷତ୍ରିୟ କୁଳରେ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ମୋତେ ସେଥିରୁ ବଞ୍ଚିତ କରି ଯେ କୌଣସି ଶତ୍ରୁ ଅପେକ୍ଷା ଆପଣ ମୋର ଅଧିକ ଅପକାର କରିଛନ୍ତି । ଜନ୍ମଦାତ୍ରୀ ହୋଇ ସୁଦ୍ଧା ମୋର ଦୀର୍ଘାୟୁ କାମନା ନକରି ବରଂ ମୋର ମୃତ୍ୟୁ ଇଚ୍ଛା କରି ନଦୀରେ ଫିଙ୍ଗି ଦେଇଛନ୍ତି । ବର୍ତ୍ତମାନ ନିଜର ପୁତ୍ରମାନଙ୍କର ସ୍ୱାର୍ଥ ସିଦ୍ଧି କରିବା ପାଇଁ ମୋତେ ପୁତ୍ର ବୋଲି ସମ୍ବୋଧନ କରିବା ଆପଣଙ୍କ ମୁହଁରେ ଶୋଭା ପାଏ ନାହିଁ । ଜନ୍ମ ମୋର ଦୈବର ଅଧୀନ; କିନ୍ତୁ ପୁରୁଷକାର ମୋର ଅଧୀନ । ଅଧିରଥଙ୍କର ପାଳିତ ପୁତ୍ର ହୋଇ ସୁଦ୍ଧା ମୁଁ ସୂତପୁତ୍ର ଅଙ୍ଗରାଜା କର୍ଣ୍ଣ ବୋଲି ପରିଚିତ ହେବାରେ ଯେଉଁ ଗୌରବ ପାଉଛି ତାହା ସ୍ୱାର୍ଥ ପାଇଁ ଯୁଧିଷ୍ଠିରଙ୍କ ଜ୍ୟେଷ୍ଠ ହେବା ତୁଳନାରେ ବିରାଟ ଏବଂ ମହାନ୍ । ତେଣୁ ଆପଣଙ୍କୁ ନିରାଶରେ ଫେରି ଯିବାକୁ ହେବ........

କୁନ୍ତଳା ହସି ଦେଇ କହିଲା ଠିକ୍ କହୁଛୁ । ସେଇମିତି ମାଆକୁ ସେଇ ଉତ୍ତର । ଜନମ କଲା ପୁଅକୁ ଯିଏ ନାହି ନାଡ଼ ଗୁଡ଼ାଇ ପେଡ଼ି ଭିତରେ ପୂରାଇ ନଈ ମୁହାଁକୁ ପେଲି ଦିଏ ସେ ମାଆ ନୁହେଁ ରାକ୍ଷସୀ ।

ଭରତ ପ୍ରଶ୍ନ କଲା ସେହିପରି ଯେଉଁ ପିତା ତାର ଜନ୍ମ କଲା ପୁଅକୁ ଛାଡ଼ି ପଳାଏ ଏବଂ ଯେ ହରିଜନ ବସ୍ତି ମାଧପୁରର ସରପଞ୍ଚ ହୁଏ, ଏବଂ ତାହାର ନିର୍ଭୀକତାକୁ ହତ୍ୟା କରି ସ୍ୱାର୍ଥ ସିଦ୍ଧି ପାଇଁ ପୁଣି ସେହି ପିତା ଆସି ନିଜର ପରିଚୟ ପ୍ରଦାନ କରେ ସେ ବାପା-ନା-ରାକ୍ଷସ ? ତୁ କହିଲୁ ?

କୁନ୍ତଳା ନୀରବ ରହିଲା । କ'ଣ ଅବା ଉତ୍ତର ଦେବ । ଜିଭ ତାର ଲେଉଟିଲା ନାହିଁ କହି ଦେବା ପାଇଁ ଯେ ବିଷୟ ନ ହୋଇ ଆଉ କ'ଣ ଅବା ହୋଇ ପାରିବ·

ତଥାପି ହସି ହସି ସେ କହିଲା ଏଇଥି ପାଇଁ କହନ୍ତି ଓକିଲ ହେଲେ ନ ହୋଇଲା କଥାକୁ ହୋଇଲା କରି ପାରନ୍ତି ।

ଭରତ ହସି କହିଲା : ଶାଗ ପଖାଳରେ ଯେଉଁ ସୁଆଦ ଥାଏ ତାହା କ'ଣ ପୁରି ପଲଉରେ ଥାଏ ମାଆ ? ଜନସାଧାରଣଙ୍କ ଭିତରେ ସେମାନଙ୍କ ସହିତ ନାୟକ ହେବାରେ ଯେଉଁ ଆନନ୍ଦ ଥାଏ ତାହା ଗଣଙ୍କ ଭିତରୁ ଭିନ୍ନ ହୋଇ ଶ୍ରେଷ୍ଠ ନାୟକ ବା ପଞ୍ଚନାୟକ ହେବାରେ ନଥାଏ ।

ତେଣୁ ବାପାଙ୍କୁ ଫେରାଇ ଦେଲି । ସେ କାଳର କର୍ଣ୍ଣ ଯେପରି କୁନ୍ତୀଙ୍କ ସ୍ନେହକୁ ଗ୍ରହଣ କରି ନ ଥିଲେ ଏ କାଳର ଭରତ ଅନ୍ୟ କାଳ ପାଇଁ, ଇତିହାସ ସୃଷ୍ଟି କରିବା ପାଇଁ ତାହାର ପିତା ମନ୍ତ୍ରୀ ଦୁଷ୍ମନ୍ତ ପଞ୍ଚନାୟକଙ୍କୁ ରିକ୍ତ ହସ୍ତରେ ଫେରାଇ ଦେଇ କହିଲା ମୋର ପାଲୁଣୀ ମାଆର ବନ୍ଧୁ କସ୍ତୁରୀର ପଣତ ତାହା ମୋ ନିକଟରେ ଅଧିକ ନିରାପଦ । ମୁଁ ସୁନା ପଞ୍ଜୁରୀ ଗୃହେଁ ନାହିଁ ମୁଁ ବନର ପକ୍ଷୀ । ଏଇ କଞ୍ଚା ଫଳମୂଳ, ଏଇ ମୁକ୍ତ ଗଗନ, ମନଖୋଲା ବିଚରଣରେ ମୋର ଅସୀମ ଆନନ୍ଦ । ଲୋଡ଼ା ନାହିଁ ମୋର ଶୀତତାପ ନିୟନ୍ତ୍ରିତ ପ୍ରାସାଦ କମ୍ବା ଦାମିକା ଯୋଗ୍ୟା ଯେଉଁ ।

ଭରତର ମଥାକୁ ନିଜ ଛାତିରେ ଚିପିଧରି କୁନ୍ତଳା କେବଳ କାନ୍ଦୁଥିଲା ।

କୁନ୍ତଳା ଭାବୁଥିଲା ଭଗବାନ ତାର ମିଳନ ସଙ୍ଗୀଳ ଭରତକୁ ଫିଙ୍ଗିନୁ କରିଥିଲେ ଲୋକେ ତ ଅନ୍ତତଃ ଏତିକି କହିବେ ଭଲ ଘରର ପାଣି ମିଠା ଆଉ ସୁଗୁଣବତୀ ମାଆର ପୁଅ ଦୁନିଆଁରେ ତାର ଟେକ ରଖେ ।

